# ଭାଗବତ କଥା

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ



ଓଁ ନମୋ ଭଗବତେ ବାସୁଦେବାୟ



ବ୍ୟାସଶାସ୍ତ୍ରୋପବନତଃ ସୁମନାଂସି ବିଚିନ୍ୱିତା ।
କୃତା ବୈ ପ୍ରଭୁଦତ୍ତେନ ମାଳା 'ଭଗବତୀ କଥା' ॥

: ଶ୍ରୀ ହରି :

# ଭାଗବତ କଥା

[ସପ୍ତପଞ୍ଚାଶତ୍ ଖଣ୍ଡ]


ଲେଖକ

ପୂଜ୍ୟପାଦ ପ୍ରଭୁଦତ୍ତ ବ୍ରହ୍ମଚାରୀ

ଅନୁବାଦ

ଶ୍ରୀ ନୃସିଂହ ପ୍ରସାଦ ମିଶ୍ର



ପ୍ରକାଶକ



କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍

# ଭାଗବତ କଥା—୫୭

ମୁଖ୍ୟ ଉପଦେଷ୍ଟା :
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରକାଶକ :
ଶ୍ରୀ ନୃସିଂହ ପ୍ରସାଦ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ—୧୯୯୭

ମୁଦ୍ରଣ :
ଟେକନ୍ ସର୍ଭିସେସ୍, ଏଣ୍ଡ ପ୍ରିଣ୍ଟୋଗ୍ରାଫିକ୍ସ, କଟକ

ମୂଲ୍ୟ : ଟ. ୩୦.୦୦

# BHAGABAT KATHA–57

Sri Prabhudatta Brahmachari

Principal Adviser:
Sri R.P. Misra

Publisher:
Sri N.P. Misra
Cuttack Students' Store
Balubazar, Cuttack-753002

First Edition–1997

Printers:
TEKON Services Bhubaneswar & Printographics, Cuttack

Price: Rs. 30.00



ଭାଗବତ କଥାର ପ୍ରକାଶକ ସ୍ୱର୍ଗତଃ ଅନନ୍ତ ମିଶ୍ର

# ସୂଚୀ

୧୫୬॥

# ତତ୍ତ୍ୱମାନଙ୍କରେ ମତଭେଦର କାରଣ

ପରସ୍ପରାନୁପ୍ରବେଶାତ୍ ତତ୍ତ୍ୱାନାଂ ପୁରୁଷର୍ଷଭ ।
ପୌର୍ବାପର୍ଯ୍ୟପ୍ରସଂଖ୍ୟାନଂ ଯଥା ବକ୍ତୁର୍ବିବକ୍ଷିତମ୍ ।। ★

[ଶ୍ରୀଭା.୧୧ସ୍କ.୨୨ଅ.୭ ଶ୍ଲୋକ]

### ଛପ୍‌ପୟ

ଅଠାଇସ ପ୍ରଭୁ କହେ ତତ୍ତ୍ୱ କଛୁ ଚାର ବତାବୈଁ ।
କଛୁ ନୌ, ଛୈ, ଛବ୍‌ବୀସ, ସାତ, ପଚ୍ଚୀସ ଗିନାବୈଁ ।
ଚ୍ୟୌଁ ଇତନୋ ମତଭେଦ, ରହସ କା ତାକେ ଭୀତର ।
ଉଦ୍ଧବ ଶଂକା ସୁନୀ ବିହଁସି କେ ବୋଲେ ଯଦୁବର ।।
ବିଜ୍ଞ ବିପ୍ର ଜୋ କଛୁ କହେଁ, ଯୁକ୍ତି ଯୁକ୍ତ ସବ ତାତ ହୈଁ ।
ମେରୀ ମାୟା ମହଁ କହୋ, କୌନ ଅସମ୍ଭବ ବାତ ହୈଁ ।।

ବାଦ-ବିବାଦ ସବୁ ଅଜ୍ଞାନରୁ ସୃଷ୍ଟି ହୋଇଥାଏ । ଲୋକମାନେ ଗୋଟିଏ କଥାକୁ ଅନ୍ୟ ପ୍ରକାର ବୁଝୁଥିବାରୁ ଏତେ କଳି ତକରାଳର ସୃଷ୍ଟି । କେହି ଯଦି କହେ, ସେ ତୋର ପିତାଙ୍କ ପତ୍ନୀ ତେବେ ସଂଗେ ସଂଗେ ଝଗଡ଼ା ଆରମ୍ଭ ହୋଇଯାଏ । ସେଇ କଥାକୁ ଯଦି କୁହାଯାଏ ଯେ ସେ ତୁମ ମାତା, ତେବେ ପ୍ରସନ୍ନ ହୋଇଯାଆନ୍ତି । ପ୍ରକୃତରେ ଉଭୟର ଅର୍ଥ ଏକ, କିନ୍ତୁ ଶବ୍ଦ ହେତୁ ଭ୍ରମ ବଶତଃ କ୍ଷୋଭ ହୋଇଯାଏ । ଆଉ ଛୋଟ ଛୋଟ ଭ୍ରମ ଯୋଗୁ ଲାଠି ଚାଲେ, କେତେ ନା କେତେ ମାରପିଟ୍ ହୋଇଯାଏ ।

ଗୋଟିଏ ଘରେ ଦଶଜଣ ଲୋକ ବିଶିଷ୍ଟ ପରିବାର ରହୁଥାନ୍ତି । କେହି ଜଣେ କହିଲା, "ଏତେ ଲୋକ ଗୋଟିଏ ଘରେ କାହିଁକି ରହିଛ ?"

ସେମାନଙ୍କ ଭିତରୁ ଜଣେ କହିଲା, "କାରଣ, ଆଉ କେହି ନାହାନ୍ତି ।"

ବାସ୍ତବରେ ସେଠାରେ ଗୋଟିଏ ମଣିଷ ହେଉଛି ଦଶ । ସେ ପୁଣି କହୁଛି ଅନ୍ୟ କେହି ନାହାନ୍ତି ବୋଲି । ଏବେ କଳି କଲାବାଲା କହେ, "ତୁମେ ମିଛ କହୁଛ । ଏଠାରେ

---

★ ସଂସାରେ ମୁନିଗଣ ଚିତ୍ତ । ମୋର ମାୟାରେ ବିମୋହିତ ।।
ନାନା ପ୍ରକାରେ ତର୍କ ବଳେ । ତତ୍ତ୍ୱ ବଖାଣନ୍ତି ଶୟଳେ ।।
କୁତର୍କ ବିବାଦ ପ୍ରକାରେ । ତତ୍ତ୍ୱ ବିଚାରନ୍ତି ସଂସାରେ ।।
ଏଣୁ ବଚନ ଏହାଙ୍କର । ବୁଝ ତୁ ଅନେକ ପ୍ରକାର ।।
ମୁଁ ଯାହା କହି ଅଛି ତୋତେ । ସଂସାର ତତ୍ତ୍ୱ ମାତ୍ର ଏତେ ।।
ମୁନିଏ ବିବାଦେ ଏମନ୍ତେ । ତର୍କ କରନ୍ତି ଯେଝା ମତେ ।।

[ଭାଗବତ : ଜଗନ୍ନାଥ ଦାସ : ୧୧ ସ୍କନ୍ଧ ୨୩ ଅ.]

ପରା ଦଶ ଲୋକ ରହୁଛନ୍ତି, ତୁମେ କହୁଛ କ'ଣ ନା ଅନ୍ୟ କେହି ନାହାନ୍ତି।'' ଏଠି ବୁଝାମଣାରେ ଭ୍ରମ ରହିଛି। ଏଠାରେ ଅନ୍ୟର ଅର୍ଥ ହେଉଛି ପରିବାର ବାହାରର ଅନ୍ୟ କେହି। ଆମେ ସମସ୍ତେ ଗୋଟିଏ ପରିବାରର ଲୋକ। ସେ ଦଶଜଣଙ୍କ ସମାବେଶ ଏକ (ପରିବାର)ରେ କରିଦେଲା। ଗୋଟିଏ ସ୍ଥାନରେ ଦୁଧ, ଦହି, ଗୁଆଘିଅ, ତଥା ଚହ୍ଲା ରଖାହୋଇଛି। ଜଣେ ପଚାରିଲା, ''ଏଠି କେତେ ପ୍ରକାର ଜିନିଷ ଅଛି ?''

ଦ୍ୱିତୀୟ ଲୋକ କହିଲା, ''ଏଠି ତ ଗବ୍ୟ ଅଛି।'' ଏହା ଶୁଣି ପ୍ରଶ୍ନକର୍ତ୍ତା କଳି କରିବାକୁ ବାହାରି ପଡ଼ିଲା। କହୁଛି କ'ଣ ନା ଗବ୍ୟ, ଗୋଟିଏ ବସ୍ତୁ। ଏଠି ପରା ଦୁଧ, ଦହି, ଘିଅ, ଚହ୍ଲା ଏମିତି ଚାରିଟି ଜିନିଷ ଅଛି। ତେଣୁ ଲୋକଟି ମିଥ୍ୟା କହିଲା। କିନ୍ତୁ ଉତ୍ତର ଦେଇଥିବା ଲୋକ କେବଳ ଗବ୍ୟ ବୋଲି କହି ଗୋ-ଜାତ ସମସ୍ତ ବସ୍ତୁକୁ କହିଦେଲା। ସେ ସେଇ କଥାକୁ ଚାରି କହିଦେଇଥିଲେ ଝଗଡ଼ାର ପ୍ରଶ୍ନ ଉଠି ନ ଥାନ୍ତା। ହେଲେ ଉଭୟ ଏକା କଥା କହିଛନ୍ତି। ଠିକ୍ ଏହିଭଳି ଯେତେ ବାଦ ବିବାଦ, ଝଗଡ଼ା ଝଂଝଟ କଳି ତକରାଳ ହେଉଛି, ସବୁ ଅବୁଝାମଣା, ଅଜ୍ଞାନବଶ ହିଁ ହୋଇଥାଏ। ଯଦି ସବୁଥିରେ ଏତେ ତତ୍ତ୍ୱର ବୋଧ ହୋଇଯାଏ, କେହି ବ୍ୟର୍ଥ କଥାରେ ନିଜ ନିଜର ସମୟ ନଷ୍ଟ କାହିଁକି କରନ୍ତେ !

ମହାପ୍ରାଜ୍ଞ ସୂତ କହୁଛନ୍ତି, ହେ ମୁନିଗଣ ! ଯେତେବେଳେ ଉଦ୍ଧବ ଭଗବାନଙ୍କୁ 'ତତ୍ତ୍ୱ ବିଷୟରେ ଏତେ ମତଭେଦ କାହିଁକି ଦେଖାଯାଉଛି' ବୋଲି ପ୍ରଶ୍ନ କଲେ ସେତେବେଳେ ଭଗବାନ ହସି ହସି କହିଲେ, ''ହେ ଉଦ୍ଧବ ! ତୁମକୁ ଯେଉଁ ମତଭେଦ ଦେଖାଯାଉଛି ତାହା ଉପରେ ଉପରେ ହିଁ ଦେଖାଯାଉଛି। ତୁମେ ଯଦି ଧ୍ୟାନପୂର୍ବକ ଦେଖନ୍ତ ତେବେ ମତଭେଦ ଆଦୌ ନ ଥିବା ଦେଖି ପାରନ୍ତ।''

ଉଦ୍ଧବ କହିଲେ, ''ପ୍ରଭୁ ! ମତଭେଦ ତ ଅତି ସ୍ପଷ୍ଟ ଦେଖାଯାଉଛି। କେତେକ ଅଠେଇଶ କହିବା ବେଳେ କେତେକ ଛବିଶ, ପଚିଶ, ନ, ଛ, ଚାରି ତଥା ଆଉ କେତେକ ଷୋହଳ, ସତର, ତେର କହିଥାନ୍ତି।''

ଭଗବାନ୍ ସେତେବେଳେ ଦୃଢ଼ ସ୍ୱରରେ କହିଲେ, ''ଭାଇ ! ଋଷିମାନେ ଯାହା ଯାହା କହନ୍ତି, ସବୁ ଯୁକ୍ତିଯୁକ୍ତ, ସବୁ ଯଥାର୍ଥ। ଯେତେ ତତ୍ତ୍ୱ ଅଛି, ସବୁଥିରେ ସର୍ବତ୍ର ଅନ୍ତର୍ଭୂତ— କିଏ କାହାକୁ କାହା ସହିତ ଯୋଡ଼ି ଦିଏ, ଆଉ କିଏ ଆଉ କାହାକୁ ଏକାଠି କରିଦେଲା। ଦେଖ, କୋଡ଼ିଏ ପ୍ରକାର ଶାଗ ଅଛି। କେହି ସବୁଯାକ ଏକାଠି କରିଦେଲା ତ ଲୋକମାନେ କୁହନ୍ତି ଶାଗ ଆଉ ରୁଟି ହୋଇଛି। ଅନ୍ୟ କେହି ଆଳୁ ବାଇଗଣ ଏକାଠି କରିଦେଲା, ଏହିଭଳି ଦୁଇ ଦୁଇଟି ପରିବା ଏକାଠି ମିଶାଇ କରିଦେଲା, ସେମାନଙ୍କ ପାଇଁ ଗୋଟିଏ ପ୍ରକାର ତରକାରି ହୋଇଗଲା। କେହି ଯଦି କୋଡ଼ିଏକୁ କୋଡ଼ିଏ ପ୍ରକାର କରେ ତେବେ ତରକାରି କୋଡ଼ିଏ ପ୍ରକାର ହୋଇଯାଏ। ଏହିଭଳି ସବୁ ତତ୍ତ୍ୱ ସର୍ବତ୍ର ଅନ୍ତର୍ଭୂତ। କିଏ କାହାକୁ କାହା ସହିତ ମିଶାଇ ଦିଏ— ତେବେ ପୃଥକ୍ ପୃଥକ୍ ଜଣାଯାଏ। ଭାଇ ! ମୋ ମାୟା ପାଇଁ କିଛି ବି ଦୁର୍ଘଟ ନୁହେଁ। ମୋ ମାୟାରେ ସବୁ ସମ୍ଭବ ହୋଇପାରେ। ମାୟାକୁ ଆଶ୍ରୟ କରି ଯାହାମାନେ ତାହା କରାଯାଇ ପାରେ। ଏହାହିଁ ତ ହେଉଛି ମାୟାର ଅର୍ଥ। ମୋର ସତ୍ତ୍ୱାଦି ଶକ୍ତି ଯୋଗୁ ଏତେ ସବୁ ଝମେଲା।

ଉଦ୍ଧବ କହିଲେ, ''ଜଗତର ହେତୁ ତ ଏକ, ତେବେ ଏତେ ବିବାଦ କାହିଁକି ?''

ଭଗବାନ କହିଲେ, ''ହେତୁ ହୁଏତ ଏକ ହୋଇପାରେ, ମାତ୍ର ତାକୁ ଗ୍ରହଣ କରୁଥିବା ଶକ୍ତି ତ ଭିନ୍ନ ଭିନ୍ନ। ବ୍ରହ୍ମାଙ୍କ ପାଖକୁ ଦେବତା, ଅସୁର, ରାକ୍ଷସ ତଥା ମନୁଷ୍ୟ ଉପଦେଶ ନେବାପାଇଁ ଗଲେ। ବ୍ରହ୍ମା 'ଦ, ଦ, ଦ' ଏପରି ତିନିଥର କରିଦେଲେ। ଗୋଟିଏ 'ଦ'କୁ ଜଣେ 'ଦମ' ବୋଲି ଅର୍ଥ କଲା। ଅନ୍ୟ ଜଣେ 'ଦ' କୁ ଦାନ କହିଲା ତ ଆଉ ଜଣେ ତାକୁ ଦୟା କହିଲା। ନିଜର ପ୍ରକୃତି ଅନୁସାରେ ଯିଏ ଯାହା ଠିକ୍ କରିଥାଏ ତାହା ଭିନ୍ନ ଭିନ୍ନ ପ୍ରକୃତି ସହିତ ଲଢ଼ାଇ କରେ। ଜଣେ କହେ— 'ମୁଁ ଯାହା କହିଛି ତାହାହିଁ ସତ୍ୟ।'

''ଦ୍ୱିତୀୟ ଜଣକ କହିଲା, 'ତୁମେ ଯାହା କହିଲ ତାହା ସତ୍ୟ କିପରି ହେଲା, ମୁଁ ଯାହା କହିଚି ତାହା ସତ୍ୟ। ତୁମ କଥା ସର୍ବଥା ମିଥ୍ୟା। ତୃତୀୟ ଜଣକ କହୁଥାଏ, 'ତୁମେ ଦୁହେଁ ମିଥ୍ୟା କହୁଛ। ମୋ କଥା ହିଁ ସତ୍ୟ। ତୁମେ ଦୁହେଁ ଭ୍ରମରେ ରହିଛ।' ଏହିଭଳି ଜଗତର ହେତୁ ସମ୍ବନ୍ଧରେ ପ୍ରକାର ପ୍ରକାରର ବାଦ-ବିବାଦ କହିଥାନ୍ତି। ଲଢ଼ାଇ ଝଗଡ଼ା କରନ୍ତି। ଏହାର କାରଣ ହୋଇଥାଏ ମୋର ସତ୍ୱାଦି ଶକ୍ତି। ସେହି ଶକ୍ତିର କ୍ଷୋଭରେ ଏପରି ବିକଳ୍ପରୂପ ପ୍ରପଞ୍ଚ ବାଦୀ-ପ୍ରତିବାଦୀ ଯୋଗୁ ଯୁଦ୍ଧଭୂମି ହୋଇଯାଏ। ସମସ୍ତେ ଆସି ନିଜ ନିଜର ବଳ ପୁରୁଷାର୍ଥ ଦେଖାଇବାରେ ଲାଗନ୍ତି।''

ଉଦ୍ଧବ ପଚାରିଲେ, ''ଏପରି ମତଭେଦ ବାଦ-ବିବାଦ କିପରି ଶାନ୍ତ ହୋଇପାରେ ?''

ଭଗବାନ କହିଲେ, ''ହୋଇ ପାରିବ ନାହିଁ କାହିଁକି, ଯଦି ବାଦ-ବିବାଦକାରୀମାନେ ଇନ୍ଦ୍ରିୟ ଦମନ କରିଦିଅନ୍ତି, ଚିତ୍ତକୁ ଶାନ୍ତ କରିଦିଅନ୍ତି, ଶମ ଦମର ଆଶ୍ରୟ ଗ୍ରହଣ କରନ୍ତି ତେବେ ବାଦ-ବିବାଦ ଆପଣା ଛାଏଁ ଶାନ୍ତ ହୋଇଯିବ। ମନ ଓ ଇନ୍ଦ୍ରିୟର ଚଞ୍ଚଳତା ହେତୁ ବାଦ-ବିବାଦ ତଥା ଲଢ଼େଇ-ଝଗଡ଼ା ହୋଇଥାଏ। ଏହି ବିକଳ୍ପରୂପ ପ୍ରପଞ୍ଚ ସେ ପର୍ଯ୍ୟନ୍ତ ଥାଏ, ଯେ ପର୍ଯ୍ୟନ୍ତ ଚିତ୍ତ ଚଞ୍ଚଳ ରହିଥାଏ। ଚିତ୍ତ ସ୍ଥିର ହୋଇଗଲେ ଏହା ଆଉ ରହେ ନାହିଁ— ଏହାପରେ ବାଦ-ବିବାଦ ଆଉ କାହାପାଇଁ ହେବ ?''

ଉଦ୍ଧବ ପଚାରିଲେ, ''ତେବେ ତତ୍ତ୍ୱର ବିବିଧତାର ମୁଖ୍ୟ କାରଣ କ'ଣ ହେଲା ?''

ଭଗବାନ୍ କହିଲେ, ''ମୁଖ୍ୟ କାରଣ ହେଉଛି— କହୁଥିବା ଲୋକର ଇଚ୍ଛା। ତତ୍ତ୍ୱ ତ ସବୁ ମିଶାମିଶି ରହିଛି, ଯେପରି ମାଟି ଆଉ ମାଠିଆ। ମାଠିଆରେ ବି ମାଟି ଅଛି ଆଉ ମାଟିରେ ମାଠିଆ ହୋଇଛି। କହିବା ଲୋକର ଅଭୀଷ୍ଟ ହେଲେ ସେ ତା' ଅନୁସାରେ ଗୋଟିକୁ ଅନ୍ୟଟି ସହିତ ମିଶାଇ ସଂଖ୍ୟା କହିବ, ଅଥବା ତାର ଇଚ୍ଛା ହେଲେ ଭିନ୍ନ ଭିନ୍ନ କରି କହିବ। ଭିନ୍ନ ଭିନ୍ନ କରି କହିଲେ ତତ୍ତ୍ୱର ସଂଖ୍ୟା ଅଧିକ ହୋଇଯିବ ଏବଂ ଗୋଟିଏକୁ ଆଉ ଗୋଟିଏ ସହିତ ମିଶାଇ କହିଲେ ସଂଖ୍ୟା କମିଯିବ। କାର୍ଯ୍ୟ କାରଣରେ ଅଭିନ୍ନତା ହୋଇଥାଏ। ସୂତା ହେଉଛି କାରଣ, ମାତ୍ର ବସ୍ତ୍ର ହେଉଛି କାର୍ଯ୍ୟ। ମାଟି ହେଉଛି କାରଣ; ମାଠିଆ, ସରା ଆଦି ମାଟିର ପାତ୍ର ହେଉଛି କାର୍ଯ୍ୟ। ବୀଜ ହେଉଛି କାରଣ, ବୃକ୍ଷ ତାହାର କାର୍ଯ୍ୟ। ପିତା ହେଉଛି କାରଣ, ପୁତ୍ର ତାହାର କାର୍ଯ୍ୟ। ଏହିଭଳି କାରଣ ତତ୍ତ୍ୱ ଅଥବା କାର୍ଯ୍ୟ ତତ୍ତ୍ୱରେ ଗୋଟିଏ ଗୋଟିଏରେ ଆଉ ଆଉ ତତ୍ତ୍ୱ ବି ମିଶିଯାଉଥିବା ଦେଖାଯାଏ। ଏଣୁ କାର୍ଯ୍ୟ-କାରଣ ରୂପ ଦ୍ୱାରା ତତ୍ତ୍ୱରେ କମ୍ ବା ଅଧିକ ପ୍ରତୀତ ହୁଏ। ପ୍ରବଳ ଯୁକ୍ତିର ସହିତ ଅନ୍ୟ କେତେକକୁ ଗୋଟିଏରେ ଅନ୍ତର୍ଭୁକ୍ତ କରିଦେଇ ତତ୍ତ୍ୱର ଯେତେ ସଂଖ୍ୟା ସ୍ଥିର କରିଦିଏ ତାହା ସେତେ ଯୁକ୍ତିସଂଗତ ଦେଖାଯାଏ। ଆଉ ତା' ଅନୁଯାୟୀ

ହିଁ ସ୍ୱୀକାର କରିନିଆଯାଏ। କେତେକ କାହା କାହାକୁ ସ୍ୱତନ୍ତ୍ର ବିବେଚନା କରିଥାନ୍ତି, ପୁଣି କେତେକ କାହା କାହାକୁ ଅନ୍ୟ ସହିତ ସମ୍ମିଳିତ କରିଦିଅନ୍ତି। ଯେପରି କେତେକ ପଚିଶ ତତ୍ତ୍ୱକୁ ସ୍ୱୀକାର କରନ୍ତି। ତାହା– ପ୍ରକୃତି, ପୁରୁଷ, ମହତତ୍ତ୍ୱ, ଅହଂତତ୍ତ୍ୱ ଓ ମନ– ଏହା ହେଉଛି ପାଞ୍ଚ, ପଞ୍ଚ ମହାଭୂତ, ପାଞ୍ଚ ଜ୍ଞାନେନ୍ଦ୍ରିୟ, ପାଞ୍ଚ କର୍ମେନ୍ଦ୍ରିୟ ଆଉ ପାଞ୍ଚ ତନ୍ମାତ୍ରା। ଏହିଭଳି ପାଞ୍ଚ ପାଞ୍ଚ ମିଶି ପଚିଶ ତତ୍ତ୍ୱ ହୁଏ। ଏହି ଲୋକମାନେ ସତ୍ତ୍ୱ, ରଜ, ତମ– ଏହି ତିନିଗୁଣକୁ ପ୍ରକୃତିର ଅନ୍ତର୍ଗତ କରିଥାନ୍ତି। କାରଣ ତିନିଗୁଣର ସାମ୍ୟାବସ୍ଥାର ନାମ ହେଉଛି ପ୍ରକୃତି। ସେଥିପାଇଁ ତା'କୁ ତତ୍ତ୍ୱରେ ଗଣନା କରନ୍ତି ନାହିଁ। କିନ୍ତୁ ଯେଉଁମାନେ ଏହି ଗୁଣଗୁଡ଼ିକୁ ପୃଥକ୍ ବୋଲି ଗ୍ରହଣ କରି ଥାଆନ୍ତି ସେମାନେ ଅଠେଇଶ ତତ୍ତ୍ୱ ବୋଲି କହିଥାନ୍ତି।

''ଯେଉଁମାନେ ପଚିଶ ତତ୍ତ୍ୱ କୁହନ୍ତି ସେମାନେ ଆତ୍ମା ଓ ପରମାତ୍ମା ମଧ୍ୟରେ ଅଣୁମାତ୍ର ପ୍ରଭେଦ ସ୍ୱୀକାର କରନ୍ତି ନାହିଁ। ଆଉ ଏଇଥିପାଇଁ ସେମାନେ କୌଣସି ପୁରୁଷର ବିଶେଷ କଳ୍ପନା କରନ୍ତି ନାହିଁ। **ପ୍ରକୃତିର ଯେଉଁ ସତ୍ତ୍ୱଗୁଣ ଅଛି, ତା' ବୃତ୍ତିର ନାମ ଜ୍ଞାନ। ରଜୋଗୁଣର ବୃତ୍ତିର ନାମ କର୍ମ ଏବଂ ତମୋଗୁଣର ବୃତ୍ତିର ନାମ ଅଜ୍ଞାନ। ଯେତେବେଳେ ଏମାନେ ସାମ୍ୟାବସ୍ଥାରେ ଥାଆନ୍ତି ତାହାର ନାମ ହୋଇଥାଏ ଶୁଦ୍ଧ ପ୍ରକୃତି।** ଏମାନଙ୍କର ଯେତେବେଳେ କ୍ଷୋଭ ହୁଏ, କିଛି ବିଷମତା ହେବା ଆରମ୍ଭ ହୁଏ, ସେତେବେଳେ ସେହି ବିଷମତାର ହେତୁର ନାମ ହିଁ ହେଉଛି କାଳ। କାରଣ କାଳ ପାଇଁ ତ ବିଷମତା ହୁଏ। ସମତାରୁ ବିଷମତା ହୋଇଯିବା ସ୍ୱଭାବକୁ ମହତତ୍ତ୍ୱ କୁହାଯାଏ। ମୋ ମତରେ, ସତ୍ତ୍ୱ, ରଜ ଆଉ ତମ, ଏହି ତିନିଗୁଣ ପୃଥକ୍ ଅଟେ। ଏଣୁ ପଚିଶରେ ଏହି ତିନ୍‌କୁ ମିଶାଇ ଦେଲେ ଅଠାଇଶ ତତ୍ତ୍ୱ ହୋଇଯିବ। ଏବେ ତୁମେ ଆଉ ଥରେ ସଂଖ୍ୟା ମିଶାଣ କର। ପୁରୁଷ, ପ୍ରକୃତି, ମହତ୍ତ୍ୱ, ପୃଥିବୀ, ଜଳ, ତେଜ, ବାୟୁ ଆଉ ଆକାଶ– ଏହିଭଳି ନ ତତ୍ତ୍ୱ ଏହା ହେଲା। ଏବେ ଜ୍ଞାନେନ୍ଦ୍ରିୟ– ଯେପରି ଆଖି, କାନ, ନାକ, ଜିଭ, ଚର୍ମ। ପାଞ୍ଚ କର୍ମେନ୍ଦ୍ରିୟ– ଯେପରି ହାତ, ଗୋଡ଼, ବାଣୀ, ଗୁହ୍ୟ ଓ ଉପସ୍ଥ। ଏହି ଦଶଟି ହେଲା ବାହ୍ୟ କାରଣ। ମନ ହେଉଛି ଅନ୍ତଃକରଣର ଏକ ବୃତ୍ତି, ଏହା ମଧ୍ୟ ଇନ୍ଦ୍ରିୟ– ଏହା ଉଭୟାତ୍ମକ। ଜ୍ଞାନ ସମୟରେ ଜ୍ଞାନେନ୍ଦ୍ରିୟ ସହିତ ମିଶିଯାଇ ମନନ କରେ; କର୍ମ ସମୟରେ କର୍ମେନ୍ଦ୍ରିୟ ସହିତ କର୍ମ କରେ। ପଞ୍ଚ ଜ୍ଞାନେନ୍ଦ୍ରିୟର ପାଞ୍ଚ ବିଷୟ ଅଛି। ଯେପରି ଶବ୍ଦ କର୍ଣ୍ଣେନ୍ଦ୍ରିୟର ବିଷୟ, ସ୍ପର୍ଶ ଚର୍ମର ବିଷୟ, ରୂପ ଦେଖିବା ଚକ୍ଷୁର ବିଷୟ, ରସ ସ୍ୱାଦ କରିବା ରସନେନ୍ଦ୍ରିୟର ବିଷୟ, ଆଉ ସୁଗନ୍ଧ, ଦୁର୍ଗନ୍ଧ ଶୁଙ୍ଘି ନିର୍ଣ୍ଣୟ କରିବା ଘ୍ରାଣେନ୍ଦ୍ରିୟର ବିଷୟ। ସେହିଭଳି ଶବ୍ଦ, ରସ, ଗନ୍ଧ ଆଉ ସ୍ପର୍ଶ– ଏହି ପଞ୍ଚ ଇନ୍ଦ୍ରିୟ ହେଉଛି ବିଷୟ, ଯାହାକୁ ତନ୍ମାତ୍ରା ବି କୁହାଯାଏ। କର୍ମେନ୍ଦ୍ରିୟର ବି ପାଞ୍ଚ କର୍ମ ଅଛି। ଯେପରି ନେବା, ଉଠାଇବା, ଧରିବା, ଶିଳ୍ପ ଆଦି କର୍ମ କରିବା ଆଦି ହାତର କାମ। ଚାଲିବା ଗୋଡ଼ର କାମ; କହିବା ବାଣୀର କାମ, ମୂତ୍ରାଦି ତ୍ୟାଗ କରିବା ମୂତ୍ରେନ୍ଦ୍ରିୟର, ମଳ ତ୍ୟାଗ କରିବା ମଳ-ଇନ୍ଦ୍ରିୟର କାମ। ଏହିଭଳି ମୂଳରେ ଅଠେଇଶ ତତ୍ତ୍ୱ ଅଛି। ଏହାକୁ ବଢ଼ାଇ, କମାଇ ଯିଏ ଯାହା କରିଥାଆନ୍ତି। ତିନିଗୁଣର ପ୍ରକୃତିରେ ସମାବେଶ କରିଦେଲେ ଅଠେଇଶ, ପଚିଶ ହୋଇଯାଏ ତ।''

ଉଦ୍ଧବ ପଚାରିଲେ, ''ପ୍ରଭୁ ଅଠେଇଶ ଆଉ ପଚିଶ କଥା ତ ବୁଝିଗଲି, ଏବେ ଛବିଶ ତତ୍ତ୍ୱ ବୋଲି କହୁଥିବା ଲୋକମାନେ କେଉଁ ତତ୍ତ୍ୱକୁ ବିଶେଷ କରି ଗ୍ରହଣ କରିଥାଆନ୍ତି ?''

ଭଗବାନ କହିଲେ, ''ପଚିଶ ତତ୍ତ୍ୱ କହୁଥିବା ଲୋକମାନେ ପ୍ରକୃତିକୁ ଜଡ଼ ମତ ଦିଅନ୍ତି। ଆଉ ପୁରୁଷକୁ ଚୈତନ୍ୟ କହି ସ୍ୱତଃ ତାହା କିଛି କରିବାକୁ ଅସମର୍ଥ ବୋଲି ନିଷ୍କ୍ରିୟ କହିଥାନ୍ତି। ପ୍ରକୃତି ବି ଏକାକୀ କିଛି କରିପାରେ ନାହିଁ। କାରଣ ସେଥିରେ ଚୈତନ୍ୟ ନ ଥାଏ। ଯେତେବେଳେ ଉଭୟଙ୍କର ସଂଯୋଗ ହୋଇଯାଏ, କାର୍ଯ୍ୟ ହେବା ଆରମ୍ଭ ହୋଇଯାଏ। ଯେପରି କୌଣସି ବଗିଚାରେ ସୁନ୍ଦର ସୁନ୍ଦର ଆମ୍ବ ହୋଇଛି। ଗୋଟିଏ ଅନ୍ଧ ସେଠାରେ ବସିଛି, ଆଉ ଜଣେ ଛୋଟା। ଅନ୍ଧକୁ ଆମ୍ବର ବାସନା ଜଣାପଡୁଛି, ମାତ୍ର ସେ ଆମ୍ବ ଦେଖିପାରୁ ନାହିଁ। ଛୋଟା ଦେଖିପାରୁଛି, ଅଥଚ ସେ ବସିଥିବା ସ୍ଥାନରୁ ଉଠି ତୋଳି ପାରୁନାହିଁ। ଦୈବଯୋଗରେ ଦୁହିଁଙ୍କର ସଂଯୋଗ ହୋଇଗଲା। ଛୋଟା କହିଲା– ''ହେ ସୁରଦାସ, ଜୟ ସୀଆରାମ। ଆଉ କେମିତି ଅଛ ? କ'ଣ ଭାବୁଛ ?''

ଅନ୍ଧ କହିଲା, ''ଭାଇ, ରାମ ରାମ ! ଅହୋଭାଗ୍ୟ, ଆଜି ଆପଣଙ୍କର ଦର୍ଶନ ପାଇଛି। ଆପଣ ମୋତେ ଦେଖି ପାରୁଛନ୍ତି ତ !''

ଛୋଟା ହସି ହସି କହିଲା, ''ସୁରଦାସ ଭାଇ ! ମୁଁ ଆପଣଙ୍କୁ ଦେଖୁଛି ଓ ପାଚିଲା ଆମ୍ବ ବି ଦେଖୁଛି। ଆମ୍ବର ବାସନାରେ ଆପଣଙ୍କର ଲାଳ ତ ବାହାରିଲାଣି।''

ଅନ୍ଧ ଦୀନ ସ୍ୱରରେ କହିଲା, ''ଭଗବାନ୍ କରନ୍ତୁ ଆପଣଙ୍କ ପୁଅ ଦୀର୍ଘାୟୁ ହେଉ। କୃପାକରି ମୋ ପାଇଁ ଆମ୍ବ ତୋଳି ଦିଅନ୍ତେ ନି !''

ଛୋଟା ହସି ହସି କହିଲା, ''ଆହେ ସୁରଦାସ ! ମୋର ପୁଅ ତ ନାହିଁ। ହଁ ଜିଭ ଅଛି, ଆଉ ଆମ୍ବ ପାଇଁ ଲାଳ ବି ବାହାରୁଛି। ମୁଁ ଯଦି ତୋଳି ପାରୁଥାଆନ୍ତି ତେବେ ଯା ଭିତରେ କେତେ ଖାଇ ସାରନ୍ତିଣି।''

ଅନ୍ଧ କହିଲା, ''କାଇଁ, କ'ଣ ହୋଇଛି କି ? ଆପଣଙ୍କର କ'ଣ ହାତ ନାହିଁ ?''

ଛୋଟା କହିଲା, ''ହାତ ଅଛି, ମାତ୍ର ମୋର ଗୋଡ଼ ଠିଆ ହେବାପାଇଁ ଅନୁପଯୁକ୍ତ।''

ଏପରି କଥା ଶୁଣି ଅନ୍ଧ ହସିବାରେ ଲାଗିଲା। ଆଉ କହିଲା, ''ରାମଙ୍କ ଦୟାରୁ ଭଲ ଯୋଡ଼ି ହେଲେ। କିଛି ଚିନ୍ତା ନାହିଁ। ଆପଣଙ୍କର ଗୋଡ଼ ନାହିଁ, ହେଲେ ଆଖି ଅଛି ତ ! ମୋର ଗୋଡ଼ ଅଛି, କିନ୍ତୁ ଆଖି ନାହିଁ। ଆପଣ ମୋ କାନ୍ଧରେ ବସନ୍ତୁ। ଆମ୍ବ ତୋଳନ୍ତୁ। ଦୁହେଁ ଖାଇବା।''

ଛୋଟାକୁ ଏକଥା ଖୁବ୍ ପସନ୍ଦ ହେଲା। ଆମ୍ବ ତୋଳା ହେଲା। ଦୁହେଁ ଆନନ୍ଦରେ ଖାଇଲେ।

କଥାର ତାତ୍ପର୍ଯ୍ୟ ହେଉଛି, ଦୁହେଁ ପୃଥକ୍ ପୃଥକ୍ ଥିବାପର୍ଯ୍ୟନ୍ତ ଆମ୍ବ ତୋଳା ହୋଇ ପାରି ନଥାନ୍ତା। ଦୁହେଁ ମିଶିଗଲେ, ଆଉ ଦୁହେଁ ପେଟ ପୂରା ଆମ୍ବ ଖାଇଲେ। ଠିକ୍ ଏହିଭଳି ପୁରୁଷ ଆଉ ପ୍ରକୃତି ଯେ ପର୍ଯ୍ୟନ୍ତ ପୃଥକ୍ ପୃଥକ୍ ରହିଥାନ୍ତି, ସେ ପର୍ଯ୍ୟନ୍ତ ସୃଷ୍ଟି ହୁଏ ନାହିଁ। ବୃତ୍ତି ବି ହୁଏ ନାହିଁ। ଦୁହିଁଙ୍କର ସଂଯୋଗ ହେବାମାତ୍ରେ ସେତେବେଳେ କାଳ ପାଇ ଗୁଣରେ କ୍ଷୋଭ ହୋଇଥାଏ— ସୃଷ୍ଟି ହେବାରେ ଲାଗେ। ଏହି ସକଳ ସୃଷ୍ଟିକର୍ମ ପ୍ରକୃତିର। ପୁରୁଷ ସାକ୍ଷୀରୂପରେ ରହିଥାଏ। ଏବେ ପ୍ରଶ୍ନ ଉଠୁଚି, ଏହା ହୁଏ କିପରି ? ଏ ସଂକ୍ରାନ୍ତରେ ସେମାନେ

କୁହନ୍ତି– ଏଥିରେ ମୁଖ୍ୟ କାରଣ ହେଉଛି କର୍ମ। କର୍ମ ଅନାଦି, ଆଉ କର୍ମ ଅନୁସାରେ ଜୀବ ଭୋଗ ଭୋଗେ। କର୍ମ ହେଉଛି ସବୁ। ଯେଉଁମାନଙ୍କର ପ୍ରକୃତି-ପୁରୁଷର ଜ୍ଞାନ ହୋଇଯାଏ ସେମାନେ ଏହି ସଂସାର ଚକ୍ରରୁ ମୁକ୍ତ ହୋଇ ଯାଆନ୍ତି। ପ୍ରକୃତି-ପୁରୁଷର ଜ୍ଞାନର ଭିନ୍ନ ନାମ ହେଉଛି ମୋକ୍ଷ।

''ଆଚ୍ଛା, ଏବେ ଯେଉଁମାନେ ଛବିଶ ତତ୍ତ୍ୱ କଥା କୁହନ୍ତି, ସେମାନଙ୍କର ଯୁକ୍ତି ହେଉଛି— ଅନାଦି କାଳରୁ ଅବିଦ୍ୟାଗ୍ରସ୍ତ ପୁରୁଷ ଆପଣା ଛାଏଁ ଆତ୍ମ-ଜ୍ଞାନୀ ହୋଇପାରେ କିପରି ? କର୍ମ ଯେତେବେଳେ ଅନାଦି, ଆଉ ପ୍ରବାହ ରୂପରେ ଏହି ଜଗତ ବି ଅନାଦି, ଯେତେବେଳେ କର୍ମରେ ପ୍ରବୃତ୍ତ ହେଲା, ତେବେ ତ ପ୍ରବୃତ୍ତ ହୋଇ ରହିଥିବ। ପ୍ରକୃତି ତ ଜଡ଼। ସେଥିରେ ଜ୍ଞାନ ସମ୍ଭବ ନୁହେଁ। ତୁମର ପୁରୁଷ ନିଷ୍କ୍ରିୟ। ସେ ସ୍ୱତଃ କିଛି କରିପାରେ ନାହିଁ। କର୍ମ ହେଉଛି ଜଡ଼। ତାର କେହି ନିୟାମକ ଥିବା ଦରକାର। ଏଥିଯୋଗୁ କର୍ମ-ବନ୍ଧନରେ ପ୍ରବୃତ୍ତ ପୁରୁଷଙ୍କୁ ଜ୍ଞାନୋପଦେଶ ଦେବାପାଇଁ କୌଣସି ତତ୍ତ୍ୱଜ୍ଞାନୀଙ୍କର ଆବଶ୍ୟକତା ଅଛି। ଏଥିଯୋଗୁ ସେ ଦୁଃଖାଦି ରହିତ ସ୍ୱତଃସିଦ୍ଧ ପରମେଶ୍ୱରଙ୍କୁ ଆଉ ଏକ ବୋଲି ସ୍ୱୀକାର କଲା। ଏହିଭଳି ଯେଉଁ ପଚିଶ ଥିଲା, ତହିଁରେ ପରମାତ୍ମାଙ୍କୁ ମିଶାଇ ଛବିଶ କଲା। ଆଉ ଏହିଭଳି ସେମାନେ ଛବିଶ ତତ୍ତ୍ୱ ବୁଝାଇ ଥାଆନ୍ତି।''

ଉଦ୍ଧବ ପଚାରିଲେ, ''ଭଗବନ୍! ଯେଉଁମାନେ ସତର ତତ୍ତ୍ୱ କୁହନ୍ତି, ସେମାନେ କେଉଁ କେଉଁ ତତ୍ତ୍ୱକୁ ଗ୍ରହଣ କରିଥାଆନ୍ତି ?''

ଭଗବାନ୍ କହିଲେ, ''ସେମାନେ ପଞ୍ଚଭୂତ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ ତନ୍ମାତ୍ରା, ଏକମନ ତଥା ଆତ୍ମାକୁ ନେଇ ସତର ତତ୍ତ୍ୱ କହିଥାନ୍ତି। ସେମାନଙ୍କ ମତରେ ପ୍ରକୃତି ପୁରୁଷ ଉଭୟଙ୍କର ଅଧିଷ୍ଠାନ ହେଉଛି ଆତ୍ମା। ଏଥିରୁ ହିଁ ମହତତ୍ତ୍ୱାଦିର ଉତ୍ପତ୍ତି ହୋଇଥାଏ। ପଞ୍ଚଜ୍ଞାନେନ୍ଦ୍ରିୟରେ ପଞ୍ଚ କର୍ମେନ୍ଦ୍ରିୟର ସମାବେଶ କରି ନିଅନ୍ତି। ଏହିଭଳି ସେମାନେ ସତର ତତ୍ତ୍ୱ କଥା କହିଥାଆନ୍ତି।''

ଉଦ୍ଧବ ପଚାରିଲେ, ''ଯେଉଁମାନେ ଷୋହଳ ତତ୍ତ୍ୱ କୁହନ୍ତି, ସେମାନେ କେଉଁ ତତ୍ତ୍ୱକୁ କମାନ୍ତି ?''

ଭଗବାନ୍ କହିଲେ, ''ସେମାନଙ୍କ ମନରେ ମନ ଆଉ ଆତ୍ମା ପୃଥକ୍ ପୃଥକ୍ ନ ଥାଏ। ଆତ୍ମା ଯେତେବେଳେ ଇନ୍ଦ୍ରିୟଙ୍କ ସହିତ କର୍ମରେ ପ୍ରବୃତ୍ତ ହୁଏ ସେତେବେଳେ ତା'ର ସଂଜ୍ଞା ମନ ହୁଏ ବୋଲି ସେମାନେ ମତ ଧାରଣ କରୁଥାନ୍ତି। ବିଚାର କଲେ ବୁଦ୍ଧି, ଆଉ ଅହଂକାର କରୁଥିଲେ ଅହଂତତ୍ତ୍ୱ। ସେମାନେ ଆତ୍ମାକୁ ହିଁ ମନ କହିଥାଆନ୍ତି।''

ଉଦ୍ଧବ କହିଲେ, ''ପ୍ରଭୁ! ତେର ତତ୍ତ୍ୱ ବୋଲି ଯେଉଁମାନେ ସ୍ୱୀକାର କରନ୍ତି ସେମାନେ କେଉଁ କେଉଁ ତତ୍ତ୍ୱକୁ ନେଇଥାନ୍ତି ?''

ଭଗବାନ୍ କହିଲେ, ''ସେମାନେ ପଞ୍ଚଭୂତକୁ ଓ ପଞ୍ଚଇନ୍ଦ୍ରିୟଙ୍କୁ ସ୍ୱୀକାର କରନ୍ତି। ତନ୍ମାତ୍ରା ଓ କର୍ମେନ୍ଦ୍ରିୟର ସମାବେଶ ସେମାନେ ଜ୍ଞାନେନ୍ଦ୍ରିୟରେ ହିଁ କରିଦିଅନ୍ତି। କାରଣ ତନ୍ମାତ୍ରାଗୁଡ଼ିକ ତ ଜ୍ଞାନେନ୍ଦ୍ରିୟର ବିଷୟ ହୋଇଥାଏ। କର୍ମେନ୍ଦ୍ରିୟଗୁଡ଼ିକ ଜ୍ଞାନେନ୍ଦ୍ରିୟ ତଥା ମନର ଅଧୀନ। ଏମାନେ ଏହି ଦଶ ଅତିରିକ୍ତ ଏକାଦଶ ମନକୁ ଗ୍ରହଣ କରିଥାଆନ୍ତି। ଏକ ପରମାତ୍ମା ଓ ଏକ ଜୀବାତ୍ମା, ଏହି ଭଳି ସେମାନଙ୍କ ମତରେ ତେର ହୋଇଥାଏ। ଜୀବାତ୍ମାରେ ସେମାନେ ପ୍ରକୃତି ଆଦିର ସମାବେଶ କରିଦେଇ ଥାଆନ୍ତି।''

ଉଦ୍ଧବ ପଚାରିଲେ, ''ଭଗବନ୍ ! ଏଗାର ତତ୍ତ୍ୱ ବୋଲି ଯେଉଁମାନେ କହିଥାନ୍ତି ସେମାନେ କେଉଁ କେଉଁ ତତ୍ତ୍ୱକୁ ନେଇ ଏପରି କହିଥାନ୍ତି ?''

ଭଗବାନ୍ କହିଲେ, ''ସେମାନେ ପଞ୍ଚଭୂତ ଆଉ ପଞ୍ଚ ଜ୍ଞାନେନ୍ଦ୍ରିୟରେ ତନ୍ମାତ୍ରା ଆଉ କର୍ମେନ୍ଦ୍ରିୟ ସମାବେଶ କରି ଦେଇଥାନ୍ତି । ପ୍ରକୃତି, ପୁରୁଷ, ମହତତ୍ତ୍ୱ, ଅହଂତତ୍ତ୍ୱ ତଥା ମନ– ଏ ସମସ୍ତଙ୍କୁ ଆତ୍ମାର ହିଁ ଅନ୍ତର୍ଗତ ବୋଲି କହିଥାନ୍ତି । ଏହିପରି ସେମାନଙ୍କ ମତରେ ପଞ୍ଚଭୂତ, ପଞ୍ଚ ଜ୍ଞାନେନ୍ଦ୍ରିୟ ଆଉ ଏକ ଆତ୍ମା– ଏହିପରି ଏଗାର ମୁଖ୍ୟ ତତ୍ତ୍ୱ ହୋଇଥାଏ ।''

ଉଦ୍ଧବ ପଚାରିଲେ, ''ପ୍ରଭୁ ! ଯେଉଁମାନେ ନ ତତ୍ତ୍ୱ ମାନନ୍ତି ସେମାନେ କେଉଁ ତତ୍ତ୍ୱକୁ ସ୍ୱୀକାର କରିଥାଆନ୍ତି ?''

ଭଗବାନ୍ କହିଲେ, ''ସେମାନଙ୍କର ମତରେ ମହତତ୍ତ୍ୱ, ଅହଂତତ୍ତ୍ୱ, ମନ ଆଉ ପୃଥିବୀ, ଜଳ, ତେଜ, ବାୟୁ, ତଥା ଆକାଶ ଏହିଭଳି ଏହି ଆଠ ତ ପ୍ରକୃତି, ଆଉ ଏକ ହେଲା ଆତ୍ମା । ଏହି ନ ତତ୍ତ୍ୱରେ ସେମାନେ ସମସ୍ତର ସମାବେଶ କରିଦେଇ ଥାଆନ୍ତି । ସେମାନଙ୍କ ମତରେ ଇନ୍ଦ୍ରିୟ ତନ୍ମାତ୍ରା ଏ ସବୁ ଭୂତରୁ ହିଁ ହୋଇଥାଏ ।''

ଉଦ୍ଧବ ପଚାରିଲେ, ''ପ୍ରଭୁ ! ଆଉ ଯେଉଁମାନେ ସାତ ତତ୍ତ୍ୱ ବୋଲି କୁହନ୍ତି– ସେମାନଙ୍କର ସାତ ତତ୍ତ୍ୱ କ'ଣ କ'ଣ ?''

ଭଗବାନ୍ କହିଲେ, ''ସାତ ତତ୍ତ୍ୱ ଯେଉଁମାନେ କୁହନ୍ତି, ସେମାନଙ୍କ ମତରେ, ଯେତେବେଳେ ସୃଷ୍ଟି ହେବାକୁ ଥାଏ, ସେତେବେଳେ କାର୍ଯ୍ୟ-କାରଣ ରୂପ ପ୍ରକୃତି ହିଁ ଗୁଣ ସହିତ ବିଷମ ହେବାଦ୍ୱାରା ସତ୍ତ୍ୱାଦି ଗୁଣଗୁଡ଼ିକ ଦ୍ୱାରା ଏହି ସମସ୍ତ ଅବସ୍ଥାକୁ ଧାରଣ କରନ୍ତି । ଏ ସମସ୍ତ ହେଉଛି ପ୍ରକୃତିର ପସରା । ଅବ୍ୟକ୍ତ ପୁରୁଷ କିଛି କରେ ନାହିଁ । ସେ କେବଳ ସାକ୍ଷୀ ହୋଇଥାଏ । ଏହି ପୁରୁଷର ଇକ୍ଷଣ ମାତ୍ରେ ହିଁ 'ସାକ୍ଷୀ ରୂପେ ରହୁଥିବା ହେତୁ ହିଁ– ପ୍ରକୃତିର ଯେଉଁ ମହତତ୍ତ୍ୱାଦି କାରଣ ତତ୍ତ୍ୱ ଅଛି– ସେ ସମସ୍ତ ପରସ୍ପର ମିଶି ପ୍ରକୃତିର ବଳରେ ଏହି ବିଶ୍ୱ ବ୍ରହ୍ମାଣ୍ଡର ରଚନା କରାଉ ଥାଆନ୍ତି । ଏହିଭଳି ଏକ ପୁରୁଷ ସାକ୍ଷୀ ହେଲା, ପ୍ରକୃତି ସାକ୍ଷ୍ୟ ହେଲା । ଏହି ଦୁହିଁଙ୍କର ଅଧିଷ୍ଠାନ ହେଉଛନ୍ତି ପରମାତ୍ମା । ଏମାନଙ୍କ ମତରେ ଏକ ପରମାତ୍ମା ତ ଅଛନ୍ତି, ଆଉ ଏକ ହେଉଛି ସେହି ପରମାତ୍ମାଙ୍କୁ ଜାଣୁଥିବା ବା ଜ୍ଞାନ କରୁଥିବା ଲୋକ, ଅର୍ଥାତ୍ ଜୀବ । ଏହି ଦୁଇ ଓ ପଞ୍ଚଭୂତ, ଏପରି ସାତ ତତ୍ତ୍ୱକୁ ସେମାନେ ସ୍ୱୀକାର କରନ୍ତି । ସେମାନଙ୍କର ମତ ହେଉଛି, ଦେହ, ଦଶ ଇନ୍ଦ୍ରିୟ, ଦଶପ୍ରାଣ, ଆଦି ଏହି ସମସ୍ତ ଭୂତ ଦ୍ୱାରା ନିର୍ମିତ । ଏଣୁ ଏ ସବୁ ଦଶ ଇନ୍ଦ୍ରିୟ, ତନ୍ମାତ୍ରା ତଥା ପ୍ରାଣାଦି ହେଉଛନ୍ତି ଭୂତର ଅନ୍ତର୍ଗତ । ଏହିଭଳି ପୃଥିବୀ, ଜଳ, ତେଜ, ବାୟୁ, ଆକାଶ, ଜୀବାତ୍ମା ଆଉ ପରମାତ୍ମା– ଏହି ସାତଟି ହିଁ ତତ୍ତ୍ୱ ବୋଲି ଗ୍ରହଣ କରିଥାଆନ୍ତି ।

ଉଦ୍ଧବ ପଚାରିଲେ, ''ଭଗବନ୍ ! ଯେଉଁମାନେ ଛ' ତତ୍ତ୍ୱକୁ ମାନନ୍ତି ସେମାନେ କେଉଁ ଗୋଟିକୁ ବାଦ ଦେଇଥାନ୍ତି !''

ଭଗବାନ୍ କହିଲେ, ''ସେମାନେ ଜୀବାତ୍ମା ପରମାତ୍ମାଙ୍କ ମଧ୍ୟରେ କୌଣସି ପ୍ରଭେଦ ଦେଖନ୍ତି ନାହିଁ । ଜୀବ ଏକ ପରମାତ୍ମା ତତ୍ତ୍ୱ ଆଉ ଏକ ପଞ୍ଚଭୂତ ଏହିଭଳି ଛ ତତ୍ତ୍ୱ ସୃଷ୍ଟି ନିମନ୍ତେ ପର୍ଯ୍ୟାପ୍ତ ବୋଲି ସେମାନଙ୍କର ମତ ।''

ଉଦ୍ଧବ ପଚାରିଲେ, ''ଭଗବନ୍ ! ଚାରି ତତ୍ତ୍ୱ ବଖାଣୁଥିବା ଲୋକମାନଙ୍କର ମତ କ'ଣ ? ସେମାନେ ଆଉ କ'ଣ ପଞ୍ଚଭୂତକୁ ମାନନ୍ତି ନାହିଁ।''

ଭଗବାନ୍ କହିଲେ, ''ସେମାନେ ଇନ୍ଦ୍ରିୟଙ୍କୁ, ତନ୍ମାତ୍ରାଙ୍କୁ ଦେହ ; ପ୍ରାଣ, ମନ ଆଦିଙ୍କୁ କାର୍ଯ୍ୟ ମାନିଥାନ୍ତି। ସେମାନଙ୍କ ମତରେ ଏକମାତ୍ର ଆତ୍ମାରୁ ତେଜ, ଜଳ ଆଉ ଅନ୍ନ ଏହି ତିନି ବସ୍ତୁ ଉତ୍ପନ୍ନ ହୋଇଛି। ଆତ୍ମାର ସର୍ବପ୍ରଥମ ତେଜ ଉତ୍ପନ୍ନ ହୋଇଛି। ସେହି ତେଜରୁ ଜଳ ଉତ୍ପତ୍ତି ହୋଇଛି, ଆଉ ଜଳରୁ ଅନ୍ନ। ଅନ୍ନରୁ ପୁଣି ଏହି ସମସ୍ତ ଦୃଶ୍ୟ ପ୍ରପଞ୍ଚ ହୋଇଛି।

''ହେ ଉଦ୍ଧବ ! ଏହିଭଳି ଭିନ୍ନ ଭିନ୍ନ ମୁନିମାନେ ନିଜ ନିଜର ବୁଦ୍ଧି ଚାତୁର୍ଯ୍ୟରେ ଅନେକ ପ୍ରକାର କଳ୍ପନା କରିଛନ୍ତି। ସେମାନେ ନିଜ ନିଜର ଯୁକ୍ତି ବି ଉପସ୍ଥାପନ କରିଛନ୍ତି। ନିଜ ମତକୁ ପ୍ରତିଷ୍ଠିତ କରିବା ପାଇଁ ଲମ୍ବା ଲମ୍ବା ପ୍ରମାଣ ଉପସ୍ଥାପନ ବି କରୁଛନ୍ତି। ପ୍ରତ୍ୟେକଙ୍କ ମତ ଯୁକ୍ତି ସଂଗତ ପ୍ରତୀତ ହେଉଛି। ମୋତେ ତ ଏହି ବିଭିନ୍ନତାରେ ଅଭିନ୍ନତା ହିଁ ଦୃଶ୍ୟ ହେଉଛି। ମୋ ମତରେ ଏ ସମସ୍ତ ସିଦ୍ଧାନ୍ତ ଯୁକ୍ତିଯୁକ୍ତ। ତେଣୁ ସମସ୍ତ ଉଚିତ ଓ ନ୍ୟାୟ ସଂଗତ। ସମସ୍ତ ମାନ୍ୟ। ବିଦ୍ୱାନଙ୍କ ପାଇଁ ମୋତେ ସେ ସବୁଥିରେ କୌଣସି ଅଶୋଭନ କଥା ଦେଖାଯାଉ ନାହିଁ। ମୋ ମତରେ ଏହି ବିଷୟରେ ବାକ୍ ବିତଣ୍ଡା ତଥା ଦୁରାଗ୍ରହ ଅଜ୍ଞାନ ଯୋଗୁଁ ହିଁ ହୋଇଥାଏ। ଯାହାଙ୍କୁ ଯେପରି ଅନୁଭୂତ ହୋଇଛି, ତାହା ସେମାନେ କହିଛନ୍ତି।''

ମହର୍ଷି ଶୌନକ ହସି ହସି କହିଲେ, ''ହେ ମହାପ୍ରାଜ୍ଞ ସୂତ ! ଆପଣ ଆମକୁ ଭଗବାନ୍ କହିଥିବା ଭିନ୍ନ ଭିନ୍ନ ମୁନିଙ୍କ ମତ କଥା କହିଲେ। ଏବେ ମୁଁ ପଚାରିବାକୁ ଚାହୁଁଛି, ଆପଣ ବି ତ ପୁରାଣଗୁଡ଼ିକୁ ବିଧିବଦ୍ ଅଧ୍ୟୟନ କରୁଛନ୍ତି, ଆପଣ ଆପଣଙ୍କର ଅନୁଭୂତି ସେମାନଙ୍କୁ ଶୁଣାନ୍ତୁ। ଆପଣଙ୍କ ମତରେ ତତ୍ତ୍ୱ କେତେ ? ଆପଣ ଯାହା ଯାହା କହିଲେ ସେ ସମସ୍ତ ଉପର ଠାଉରିଆ ଉଡ଼ା କଥା ଭଳି ଆମକୁ ଲାଗୁଛି, ତେଣୁ ଆମେ ଯଥାର୍ଥ ରୂପରେ ତାହା ସବୁ ପ୍ରାୟ ବୁଝି ପାରିନାହୁଁ। ଆପଣ ଆପଣଙ୍କ ନିଜର ନିଜସ୍ୱ ମତ କୁହନ୍ତୁ।''

ମହାପ୍ରାଜ୍ଞ ସୂତ ଏପରି କଥା ଶୁଣି କିଛି ସମୟ ଗମ୍ଭୀର ହୋଇ ବସିଗଲେ। ଏବଂ ଧୀରେ ଧୀରେ କହିବା ଆରମ୍ଭ କଲେ, ''ମହର୍ଷିସେ ! ଏହା ଅତି ଗୂଢ଼ ଦର୍ଶନ ପ୍ରସଙ୍ଗ। ବୁଦ୍ଧିର ବ୍ୟାୟାମ କରି ଏହାର ଅତି କଡ଼ା ବିସ୍ତାର କରିବାକୁ ପଡ଼ିଥାଏ– ଏହାପରେ ହିଁ ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନ ଲୋକମାନେ ଏହାକୁ ବୁଝି ପାରନ୍ତି। ଏଠାରେ ତ ମୁଁ କେବଳ କଥା ପ୍ରସଙ୍ଗ କରୁଛି, ଆଉ କଥା ପ୍ରସଙ୍ଗରେ ଏହାଠାରୁ ଅଧିକ ବିସ୍ତାର କରାଯାଇ ପାରିବ ନାହିଁ। ଆପଣଙ୍କର ଯଦି ମୋ ଉପରେ କୃପା ରହେ, ଆପଣଙ୍କର ଯଦି ଦାର୍ଶନିକ ବିଷୟ ଶୁଣିବା ପାଇଁ ଆଗ୍ରହ ରହିଥାଏ, ତେବେ ଭବିଷ୍ୟତରେ କେବଳ ଦାର୍ଶନିକ ବିବେଚନ କରି ଏହାର ବିସ୍ତାର କରିବି। ଆପଣ ମୋର ଯେଉଁ ମତ ପଚାରୁଛନ୍ତି, ତେବେ ହେ ଭଗବନ୍ ! ସତ କଥା ହେଉଛି, ମୋ ମତରେ କେବଳ ଗୋଟିଏ ମାତ୍ର ତତ୍ତ୍ୱ ଅଛି। ମୁଁ ଏହି ତତ୍ତ୍ୱର ଗଣନାକାରୀ ଉଦ୍ଧବଙ୍କୁ ଯେ ଉପଦେଶ ଦେଉଛନ୍ତି, ସେହି ବାଙ୍କବିହାରୀ, ମୁରଲୀମନୋହର, ଗୋପୀଜନରଞ୍ଜନ, ବ୍ରଜବିହାରୀ କାଳିଆ କାହ୍ନୁଙ୍କ ଛାଡ଼ି ଅନ୍ୟ କୌଣସି ତତ୍ତ୍ୱକୁ ଜାଣି ନାହଁ। ମୋ ମତରେ ସେ ହିଁ ପରମ ଉଜ୍ଜ୍ୱଳ, ପରମ ସ୍ନିଗ୍ଧ, ପରମମୋହକ ଚୈତନ୍ୟ ଘନସାର ନୀଳାମ୍ବର ଘନଶ୍ୟାମ ହିଁ ଏକ ମାତ୍ର ପରମ ତତ୍ତ୍ୱ।''

ଏହାଶୁଣି ମହାମୁନି ଶୌନକ ଅତି ପ୍ରସନ୍ନ ହୋଇଗଲେ। ସେ ଗଦ୍‌ଗଦ୍ କଣ୍ଠରେ କହିଲେ, "ହେ ମହାପ୍ରାଜ୍ଞ ସୂତ ! ଭଗବାନ୍ ଆପଣଙ୍କର ମଙ୍ଗଳ କରନ୍ତୁ। ଆମର ବି ଏୟା ମତ। ସମସ୍ତ ତତ୍ତ୍ୱ ହେଉଛନ୍ତି ଏହି ଶ୍ୟାମସୁନ୍ଦରଙ୍କର ଛାୟା। ଆଚ୍ଛା, ଏବେ କୁହନ୍ତୁ ଏହାପରେ ଉଦ୍ଧବ କ'ଣ ପଚାରିଥିଲେ।"

ମହାପ୍ରାଜ୍ଞ ସୂତ କହିଲେ, "ଭଗବନ୍ ! ଉଦ୍ଧବ ଯାହା ପଚାରିଥିଲେ ତାହା କହୁଛି ଶୁଣନ୍ତୁ।"

### ଛପ୍‌ପୟ

ତତ୍ତ୍ୱ ପରସ୍ପର ମିଲେ ଜୁଲେ କଛୁ ପୃଥକ ବତାବୈ।
କଛୁ ଏକହି ମହଁ କହୁଁ କହୁଁ ଦ୍ୱୈ ଚାର ମିଲାବୈ॥
ପ୍ରକୃତି, ପୁରୁଷ, ମହତତ୍ତ୍ୱ, ଅହଂ, ମନ, ମାତ୍ରା, ଇନ୍ଦ୍ରିୟ।
ପଞ୍ଚଭୂତ ପଚ୍ଚୀଶ ଭୟେ ଅଠାଇଶ ଛନ ତ୍ରୟ॥
ଛବିଶ ଈଶ୍ୱର ସହିତ ହ୍ୱୈ, କହୁଁ ଭୂତ ଇନ୍ଦ୍ରିୟ ଅଲଗ।
କହୁଁ ଆତ୍ମା, ପରମାତ୍ମା ଏକ କହ୍ୟୋ କହୁଁ ସେ ବିହଗ॥



# ପ୍ରକୃତି-ପୁରୁଷ ବିଚାର

**ପ୍ରକୃତିଃ ପୁରୁଷଶ୍ଚେତି ବିକଳ୍ପଃ ପୁରୁଷର୍ଷଭ।**
**ଏଷ ବୈକାରିକଃ ସର୍ଗୋ ଗୁଣବ୍ୟତିକରାତ୍ମକଃ॥** ★

[ଶ୍ରୀଭା.୧୧ସ୍କ.୨୨ଅ.୨୯ ଶ୍ଳୋକ]

### ଛପ୍‌ପୟ

ବୋଲେ ଉଦ୍ଧବ- "ତତ୍ତ୍ୱଜ୍ଞାନ ତୋ ସୁନ୍ୟୋ ମୁରାରୀ।
ପ୍ରକୃତି, ପୁରୁଷ କୋ ଭେଦ ବତାବେ ଭବଭୟ ହାରୀ"॥
ହରି ବୋଲେ– "ହେ ପ୍ରକୃତି ପୁରୁଷ ମହଁ ଭେଦ ପରମ ପ୍ରିୟ।
ମାୟା ତେ ଜଗ ହୋହି ପୁରୁଷ ସତ ଚୈତନ ନିଷ୍କ୍ରିୟ॥
ଭେଦ ତ୍ରିବିଧ ଗୁନ ତୀନି ହ୍ୱୈ, ସବ ପ୍ରପଞ୍ଚ ଇନ ତେ ଭୟୋ।
ଆତ୍ମା ଜ୍ଞାନ ସ୍ୱରୂପ ନିତ, ଅବିକାରୀ ବେଦନି କହ୍ୟୋ॥

---

 ପୁରୁଷ ପ୍ରକୃତି ତ୍ରିଗୁଣ । ସଂଯୋଗ ବିଯୋଗ କାରଣ ॥
ପୁରୁଷ ବିନା ପ୍ରକୃତିର । ପ୍ରକାଶ ନୁହଇ ଗୋଚର ॥
ପୁରୁଷ-ପ୍ରକୃତି ଏ ଭିନ୍ନ । ଏକ ବିହୀନେ ଅନ୍ଧ ଆନ ॥
ମୋର ବିମୁଖ ପ୍ରାଣୀଙ୍କର । ଏ କଥା ନୁହଇ ଗୋଚର ॥

[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କନ୍ଧ ୨୩ ଅ.]

ସୃଷ୍ଟିର ଉତ୍ପତ୍ତି ସମ୍ବନ୍ଧରେ ଭିନ୍ନ ଭିନ୍ନ ମୁନିମାନଙ୍କର ମତ ଭିନ୍ନ ଭିନ୍ନ। ଜଣେ ଗୋଟିଏ ପ୍ରକାର କହୁଥିବା ବେଳେ, ଆଉ ଜଣେ ଆଉ ଏକ ପ୍ରକାର କହିଥାନ୍ତି। କିନ୍ତୁ ଏହି ବିଷୟରେ ଅନେକଙ୍କ ମତ ଏକ ହୋଇଥିବା ମଧ୍ୟ ଦେଖାଯାଏ। ତାହା ହେଉଛି– ପ୍ରକୃତିରେ ଗୁଣର କ୍ଷୋଭ ହେବାରୁ ଏହି ଦୃଶ୍ୟ-ପ୍ରପଞ୍ଚର ଉତ୍ପତ୍ତି ହୋଇଛି। କେତେକ ବିଦ୍ୱାନ୍ ଏପରି ମତ ପୋଷଣ କରନ୍ତି– 'ସୃଷ୍ଟି କେବେ ବି ହୋଇନାହିଁ, କେବେ ବି ନାହିଁ, କି କେବେ ବି ହେବ ନାହିଁ।'

ଅଜ୍ଞାନ ହେତୁ ଏ ସବୁ ନିଜଠାରେ ଦୃଶ୍ୟ ହୁଏ। ମାତ୍ର ଜ୍ଞାନ ହୋଇଯିବା ପରେ ଦୃଶ୍ୟ ପ୍ରପଞ୍ଚ କିଛି ବୋଲି କିଛି ଦେଖା ଦିଏ ନାହିଁ। ଏହା ଚାଲିଯାଏ ନାହିଁ। ଯାହା ଥାଏ ତାହା ସିନା ଚାଲିଯାଏ; କିଛି ନଥିଲେ ଯିବ କ'ଣ? ଏହା ତ କେବଳ ଭ୍ରମ, ତେଣୁ ଦୂର ହୋଇଯିବ। ସେମାନଙ୍କ ମତରେ ସୃଷ୍ଟି ଉତ୍ପନ୍ନ ଇ ହୁଏନାହିଁ। ତେବେ ବି ବ୍ୟବହାରରେ ଶୃଙ୍ଖଳା ପାଇଁ ସେମାନେ ପ୍ରକୃତି-ପୁରୁଷଙ୍କୁ ମାନନ୍ତି। ସୃଷ୍ଟିର ଗୋଟିଏ ପ୍ରକ୍ରିୟା ସ୍ଥାପିତ କରନ୍ତି। ପ୍ରକୃତି ଓ ପୁରୁଷ ଦୁଧ ଓ ପାଣି ଭଳି ମିଶି ଯାଇଛନ୍ତି। ଏମାନଙ୍କୁ କେହି ଭିନ୍ନ ଭିନ୍ନ ବୋଲି ଭାବନ୍ତି ଇ ନାହିଁ। କିନ୍ତୁ ବାସ୍ତବରେ ଦୁହେଁ ଭିନ୍ନ। କେହି କ୍ଷୀର-ନୀର ପୃଥକ କରିପାରୁଥିବା ହଂସ ଭଳି ବିବେକୀ ଏହାକୁ ପୃଥକ କରିପାରେ। ପ୍ରକୃତି ପୁରୁଷ ଭିନ୍ନ ଭିନ୍ନ ବୋଲି ଜ୍ଞାନ ହୋଇଯିବା ମାତ୍ରେ ସହସା ଭ୍ରମ ଦୂର ହୋଇଯାଏ। ସୃଷ୍ଟିର ସମସ୍ତ ରହସ୍ୟ ସହଜରେ ବୁଝି ହୋଇଯାଏ।

ମହାପ୍ରାଜ୍ଞ ସୂତ କହିଲେ, ହେ ମୁନିଗଣ! ତତ୍ତ୍ୱ ପ୍ରସଙ୍ଗରେ ଭଗବାନ ଭିନ୍ନ ଭିନ୍ନ ମତର ସମନ୍ୱୟ କରି ସାରିବା ପରେ, ଉଦ୍ଧବ ତାଙ୍କୁ ପଚାରିଲେ, "ଭଗବନ୍! ଯଦିଓ ପ୍ରକୃତି ଓ ପୁରୁଷ ସ୍ୱରୂପରେ ଭିନ୍ନ ଭିନ୍ନ, ଆପଣ ବି ଦୁହିଁଙ୍କୁ ପୃଥକ୍ ବୋଲି କହିଛନ୍ତି, କିନ୍ତୁ ଏ ଦୁହେଁ ଏପରି ମିଶିଯାଇଛନ୍ତି ଯେ ସେମାନଙ୍କର ଭିନ୍ନତା ଆଦୌ ଜଣାପଡ଼େ ନାହିଁ। ପ୍ରକୃତି ପୁରୁଷର ଆଶ୍ରୟରେ ରହିଥାଏ; ପ୍ରକୃତି ବିନା ପୁରୁଷ କିଛି କରିପାରେ ନାହିଁ। ତାହାର ପୁରୁଷତ୍ୱ ପ୍ରକୃତି ବିନା ଦେଖାଯାଏ ନାହିଁ। ଦୁହେଁ ଦୁହିଁଙ୍କର ଆଶ୍ରିତ, ଏଥିଯୋଗୁଁ ଦୁହିଁଙ୍କ ମଧ୍ୟରେ ଭେଦଭାବ ଦେଖାଯାଏ ନାହିଁ। ପ୍ରକୃତିରେ ପୁରୁଷ ଆଉ ପୁରୁଷରେ ପ୍ରକୃତି ଉଭୟେ ଉଭୟଙ୍କ ଭିତରେ ଏପରି ତାଦାତ୍ମ୍ୟ ହୋଇଯାଇଛନ୍ତି ଯେ, ଦୁଧ-ଚିନି ଭଳି ଗୋଳେଇ ହୋଇ ଏକ ଭଳି ହୋଇଯାଇଛନ୍ତି। ଏଣୁ ଆପଣଙ୍କୁ ପ୍ରାର୍ଥନା ନିବେଦନ କରୁଛି, ଆପଣ କୃପାକରି କୁହନ୍ତୁ, ବାସ୍ତବରେ ଏ ଦୁହିଁଙ୍କ ଭିତରେ ଭିନ୍ନତା ଅଛି, ନା କେବଳ ଭିନ୍ନତା ଅଛି ବୋଲି କଥାରେ କୁହାହେଉଛି। ଏ ବିଷୟରେ ମୋର ସନ୍ଦେହ ରହିଛି। ପ୍ରକୃତି ପୁରୁଷର ବିବେଚନ ଠିକ୍ ରୂପେ ନ ହୋଇ ପାରିଲେ, ତତ୍ତ୍ୱ ବିଷୟରେ ଉତ୍ତମ ରୂପେ ଜ୍ଞାନ କିପରି ହୋଇପାରିବ। ଆପଣ ସର୍ବଜ୍ଞ। ଆପଣ ସର୍ବବିଦ୍। ଆପଣ ସବୁ କଥା ଜାଣନ୍ତି। ସମସ୍ତ ସନ୍ଦେହ ଉଚ୍ଛେଦ କରିବାରେ ଆପଣ ହିଁ ସମର୍ଥ। କୃପାକରି ଆପଣ ଆପଣଙ୍କର ତର୍କ ପ୍ରବୀଣ ବଚନ ବାଣ ଦ୍ୱାରା ମୋ ହୃଦୟରେ ଆସ୍ଥାନ ଜମାଇ ବସିଥିବା ସଂଶୟ ରୂପ ସର୍ପକୁ କାଟି ଦିଅନ୍ତୁ। ସଂଶୟ ଆପଣ ରଚନା କରିଛନ୍ତି, ଆପଣ ହିଁ କେବଳ ଏହାକୁ ନାଶ କରି ପାରିବେ।"

ଭଗବାନ୍ କହିଲେ, "ଆରେ ଭାଇ! ମୁଁ କେଉଁଠି ସଂଶୟ ରଚନା କଲି?"

ଉଦ୍ଧବ କହିଲେ, "ଆପଣ ରଚନା କରି ନଥିଲେ ଆପଣଙ୍କର ମାୟା ଏହାକୁ ରଚନା କରିଥିବ। ଆପଣଙ୍କର ମାୟା ଶକ୍ତି ଯୋଗୁ ତ ଜ୍ଞାନ ଉପରେ ଅଜ୍ଞାନର ଡାଙ୍କୁଣୀ ପଡ଼ିଯାଏ। ପୁଣି ସେହି ଅଜ୍ଞାନ ଆପଣଙ୍କର କୃପା କଟାକ୍ଷରେ, ଜ୍ଞାନ ଉଦୟ ହୋଇଯିବା ପରେ, ନଷ୍ଟ

ହୋଇଯାଏ । ଆପଣଙ୍କର ଏହି ଠକିବା ମାୟା ଏପରି ଅଚିନ୍ତ୍ୟ ଯେ, ଏହାର ରହସ୍ୟ ଆପଣଙ୍କ ଛଡ଼ା ଅନ୍ୟ କେହି ଜାଣନ୍ତି ନାହିଁ। ଆପଣ ହିଁ ଏହି ଅଦ୍‌ଭୂତ ମାୟାର ବିଚିତ୍ର ଗତିକୁ ଜାଣନ୍ତି। ଏଣୁ ଆପଣ ହିଁ ଏହାର ଯଥାର୍ଥ ରହସ୍ୟ ବୁଝାନ୍ତୁ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ହେ ମୁନିଗଣ! ଉଦ୍ଧବ ଯେତେବେଳେ ମାୟା ସମ୍ବନ୍ଧରେ ପଚାରିଲେ, ପ୍ରକୃତି ପୁରୁଷର ରହସ୍ୟ ବୁଝାଇଦେବାକୁ ପ୍ରଶ୍ନ କଲେ, ସେତେବେଳେ ଭଗବାନ୍ ହସି ହସି ତାଙ୍କୁ କହିଲେ, ''ହେ ଉଦ୍ଧବ! ତୁମର ପ୍ରଶ୍ନ ଅତି ସୁନ୍ଦର। ହେ ପ୍ରିୟବର, ଏପରି ପ୍ରଶ୍ନ ମାୟାବଦ୍ଧ ସାଧାରଣ ପୁରୁଷ କେବେ ବି ପଚାରି ପାରିବେ ନାହିଁ। ତୁମେ ହେଉଛ ପୁରୁଷ ଶ୍ରେଷ୍ଠ। ତୁମେ ପୁରୁଷୋତ୍ତମ। ସେଥିପାଇଁ ତୁମ ହୃଦୟରେ ଏପରି ଗୂଢ଼ ପ୍ରଶ୍ନ ପରିସ୍ଫୁଟିତ ହେଲା। ତୁମେ ପ୍ରକୃତି ପୁରୁଷର ଯେଉଁ ଏକଥା କହିଲ ତାହା ଉଚିତ ନୁହେଁ। ପ୍ରକୃତି ଆଉ ପୁରୁଷ ମଧ୍ୟରେ ସାମାନ୍ୟ ପ୍ରଭେଦ ନୁହେଁ, ବିସ୍ତୃତ ପ୍ରଭେଦ ଅଛି।''

ଉଦ୍ଧବ କହିଲେ, ''ପ୍ରଭୁ! ସେହି ଭେଦ କ'ଣ ?''

ଭଗବାନ୍ କହିଲେ, ''ପ୍ରକୃତି କୁହ, ମାୟା କୁହ ଅଥବା ଆବରଣ ଶକ୍ତି କୁହ, ସବୁ ଗୋଟିଏ କଥା। ଏହା ତ୍ରିଗୁଣାତ୍ମକ। ଏହାର ଗୁଣରେ ଯେତେବେଳେ କ୍ଷୋଭ ହୁଏ, ସେତେବେଳେ ଏହି ଦୃଶ୍ୟ ପ୍ରପଞ୍ଚ ଉତ୍ପନ୍ନ ହୁଏ। ଏଣୁ ଏହି ପ୍ରକୃତି ପ୍ରପଞ୍ଚ ବିକାରବାନ୍— କାରଣ କ୍ଷୋଭ, ବିକାରର ହିଁ ଏହି ପରିଣାମ ହୋଇଥାଏ।

ଉଦ୍ଧବ ପଚାରିଲେ, ''ବିକାରବାନ୍ ହେବା ଉଚିତ, କିନ୍ତୁ ଏଥିରେ ଏତେ ନାନାତ୍ୱ, ପୃଥକତ୍ୱ ଆସିଲା କିପରି। ପ୍ରକାର ପ୍ରକାରର ଭେଦ ହେଲା କିପ୍ରଶି ?''

ଭଗବାନ୍ କହିଲେ, ''ଏହି ଯେଉଁ ତ୍ରିଗୁଣାତ୍ମକା ମାୟା ଅଛି ଏହାର ଗୁଣର ସ୍ୱଭାବ ହେଉଛି, ଯେତେବେଳେ ଏହା ବିକାର ପ୍ରାପ୍ତହୁଏ ସେତେବେଳେ ନାନ ରୂପରେ ପରିଣତ ହୋଇଯାଏ। ଏହି ମାୟା ନିଜର ଗୁଣ ଦ୍ୱାରା ନାନା ପ୍ରକାର ଭେଦ ବୁଦ୍ଧି ଉତ୍ପନ୍ନ କରିଦିଏ। ଗହମ, ଚାଉଳ, ମୁଗ ଯେ ପର୍ଯ୍ୟନ୍ତ ନିଜ ନିଜ ସ୍ୱରୂପରେ ଥିଲେ ତାହା ତିନି ଥିଲା। ତହିଁରେ ଯେତେବେଳେ ବିକାର ହେଲା ଅଟା, ଭାତ, ଡାଲିର ରୂପ ହେଲା ସେତେବେଳେ ଏମାନଙ୍କର ଅନେକ ପ୍ରକାର ଭେଦ ହୋଇ ଯାଏ। ରୁଟି, ପୁରି, ଡାଲି, ଖେଚେଡ଼ି, ଭାତ ଏଭଳି ଅନେକ ପ୍ରକାର। ମାୟା ଯେ ପର୍ଯ୍ୟନ୍ତ ଅବିକାରବତୀ ରହିଥାଏ, ସେ ପର୍ଯ୍ୟନ୍ତ ତହିଁରେ ଭେଦ ଦୃଷ୍ଟିଗୋଚର ହୁଏ ନାହିଁ। ଏହା ବିକାରବତୀ ହୋଇଯିବା ମାତ୍ରେ ନାନା ପ୍ରକାର ଭେଦବାଲା ହୋଇ ସଂସାରର ରଚନା କରେ।''

ଉଦ୍ଧବ ପଚାରିଲେ, ''ପ୍ରଭୁ! ଏହାର ମୁଖ୍ୟ ଭେଦ କେତେ ?''

ଭଗବାନ୍ କହିଲେ, ''ଏହାର ମୁଖ୍ୟ ଭେଦ ତିନୋଟି— ଆଧ୍ୟାତ୍ମ, ଅଧିଦୈବ ଆଉ ଅଧିଭୂତ।''

ଉଦ୍ଧବ କହିଲେ, ''ଭଗବନ୍! ଏ ବିଷୟ ଅତି ଗୂଢ଼। ମୋର ବୁଦ୍ଧି ଅତି ତୁଚ୍ଛ। କୃପାକରି ଅଧିକ ସ୍ୱଷ୍ଟ ଭାବରେ ମୋତେ ଏହା ବୁଝାଇ ଦିଅନ୍ତୁ। ସରଳତା ନିମନ୍ତେ ସରଳ ଦୃଷ୍ଟାନ୍ତ ମଧ୍ୟ ଦିଅନ୍ତୁ।''

ଭଗବାନ୍ କହିଲେ, ''ହଉ, ଠିକ୍ ଅଛି। ଦେଖ ତୁମର ଏହି ଚକ୍ଷୁ ହେଉଛି ଇନ୍ଦ୍ରିୟ। ଏଥିରେ କ'ଣ କ'ଣ ଅଛି ? ଗୋଟିଏ ତ ହେଲା ଚକ୍ଷୁ ନାମକ ଇନ୍ଦ୍ରିୟ, କାରଣ ଚକ୍ଷୁ

ବିନା ଦେଖାଯାଏ ନାହିଁ। ଦ୍ୱିତୀୟ ବସ୍ତୁ ହେଉଛି ରୂପ। ରୂପ ନ ଥିଲେ ଆଖି ଦେଖିବ କାହାକୁ ? ଏଣୁ ଚକ୍ଷୁ ଇନ୍ଦ୍ରିୟର ତନ୍ମାତ୍ରା ହେଉଛି ରୂପ। ରୂପ ବିନା ଚକ୍ଷୁ ବ୍ୟର୍ଥ। ତୃତୀୟ ବସ୍ତୁ ହେଉଛି ନେତ୍ରର ପ୍ରକାଶ, ଅର୍ଥାତ୍ ନେତ୍ର ଗୋଲକଗତ ସୂର୍ଯ୍ୟଙ୍କ ଅଂଶ। ଏହି ତିନିରେ ଚକ୍ଷୁ ଇନ୍ଦ୍ରିୟ ଅଧ୍ୟାତ୍ମ। ଅଧ୍ୟାତ୍ମ ତାକୁ କୁହାଯାଏ, ଯାହାର ଆତ୍ମା ସହିତ ସିଧା ସମ୍ବନ୍ଧ ଥାଏ। ଆତ୍ମାର ଶକ୍ତିର ନାମ ଅଧ୍ୟାତ୍ମ ଏବଂ ବାହାରର ରୂପ ସବୁ ବି। ଚକ୍ଷୁର ଗୋଲକରେ ସବୁ ଅଛି। ମାତ୍ର ଚକ୍ଷୁ ଇନ୍ଦ୍ରିୟ ଆତ୍ମାର ସହାୟତାରେ ସେହି ଝରକା ବାଟେ ଯାହା ସବୁ ଦେଖେ ନାହିଁ, ସବୁ ବ୍ୟର୍ଥ। ଦେବତାଙ୍କ ଶକ୍ତିର ନାମ ଅଧିଦୈବ। ଚକ୍ଷୁର ଅଧିଷ୍ଠାତୃ ଦେବତା ଯେପରି ସୂର୍ଯ୍ୟ, ସୂର୍ଯ୍ୟଙ୍କର ନେତ୍ର-ଗୋଲକଗତ ଯେଉଁ ଅଂଶ ଅଛି, ତାହାହିଁ ଅଧିଦୈବ। ଭୂତଙ୍କ ଶକ୍ତିର ନାମ ଅଧିଭୂତ। ଯେପରି ନେତ୍ରରେ ମୁଖ୍ୟ ଭୂତ ହେଉଛି ତେଜ, ତେଜ ନିମନ୍ତେ ରୂପର ଆବଶ୍ୟକତା, ଯେତେ ରୂପ ଦେଖାଯାଏ ସେ ସମସ୍ତ ଅଧିଭୂତ। ଏହିଭଳି ଏବେ ବସ୍ତୁ ହେଲା ତିନି– ଏକ ଚକ୍ଷୁ, ଇନ୍ଦ୍ରିୟ, ଦୁଇରେ ନେତ୍ରରେ ରହୁଥିବା ଚନ୍ଦ୍ର, ଆଉ ତିନିରେ ରୂପ। ଏହି ତିନୋଟିଯାକର ପରସ୍ପର ଭିତରେ ଅନ୍ୟୋନ୍ୟ ସମ୍ବନ୍ଧ ରହିଛି। ତିନିହେଁ ଗୋଟିଏ ଅନ୍ୟଟିର ଆଶ୍ରୟରେ ସିଦ୍ଧ (ସଫଳ) ହୋଇଥାଏ। ଚକ୍ଷୁ ନଥିଲେ ରୂପ ତଥା ପ୍ରକାଶ ବ୍ୟର୍ଥ। ରୂପ ନ ଥିଲେ ଚକ୍ଷୁ ଆଉ ପ୍ରକାଶ ବ୍ୟର୍ଥ। ପ୍ରକାଶ ନ ଥିଲେ ଚକ୍ଷୁ ଓ ରୂପ ବ୍ୟର୍ଥ ହୋଇଥାଏ। ଏହି ତିନୋଟିର ପ୍ରକାଶକ ହେଉଛନ୍ତି ଆକାଶରେ ସ୍ଥିତ ସୂର୍ଯ୍ୟନାରାୟଣ। ସେ ନେତ୍ରରେ ବି ପ୍ରକାଶ ପ୍ରଦାନ କରନ୍ତି ଆଉ ରୂପକୁ ବି ପ୍ରକାଶିତ କରନ୍ତି। ରାତିରେ ସେ ରୂପକୁ ପ୍ରକାଶିତ କରନ୍ତି ନାହିଁ, ଚକ୍ଷୁରେ ଅଂଶ ରୂପରେ ଥାଇ ସୁଦ୍ଧା ଦେଖାଯାଏ ନାହିଁ। ଦିନରେ ସକଳ ପ୍ରକାର ରୂପକୁ ପ୍ରକାଶିତ କରନ୍ତି, ହେଲେ ଅନ୍ଧଙ୍କ ନେତ୍ରକୁ ପ୍ରକାଶ ପ୍ରଦାନ କରନ୍ତି ନାହିଁ। ଏହିପରି ରୂପ ପ୍ରକାଶିତ ହେଉଥିଲେ ସୁଦ୍ଧା ଅନ୍ଧ ତାହା ଦେଖିପାରେ ନାହିଁ। ଆଖିକୁ ତ ସୂର୍ଯ୍ୟଦେବଙ୍କୁ ପ୍ରକାଶ ମାଗିବାକୁ ପଡ଼େ, ହେଲେ ସୂର୍ଯ୍ୟ ହେଉଛନ୍ତି ସ୍ୱୟଂପ୍ରକାଶିତ। ଚକ୍ଷୁ, ରୂପ ଆଉ ନେତ୍ର ଗୋଲକର ପ୍ରକାଶ ଗୋଟିଏ ଅନ୍ୟର ଆଶ୍ରୟ ବିନା ସିଦ୍ଧ ହୋଇପାରେ ନାହିଁ; କିନ୍ତୁ ଆକାଶ ସ୍ଥିତ ସୂର୍ଯ୍ୟ ଭଗବାନ୍ ହେଉଛନ୍ତି ସ୍ୱୟଂ ସିଦ୍ଧ। ତାଙ୍କୁ ସିଦ୍ଧ କରିବା ପାଇଁ କୌଣସି ଦୀପ ଆଦିର ପ୍ରକାଶ (ଆଲୋକ)ର ଆବଶ୍ୟକତା ପଡ଼େ ନାହିଁ। ସୂର୍ଯ୍ୟ ଦେବ ଚକ୍ଷୁ, ରୂପ ଆଉ ନେତ୍ରଗତ ପ୍ରକାଶ– ଏହି ତିନୋଟିଠାରୁ ପୃଥକ୍।

"ତୁମେ ଆତ୍ମାକୁ ଏହିଭଳି ବୁଝ। ଏହି ପଞ୍ଚଭୂତ, ଆଉ ଯେତେ ସବୁ ଭୌତିକ ବିକାର ଅଛି, ଯଦିଓ ଆତ୍ମା ସହିତ ସେମାନଙ୍କର କୌଣସି ସମ୍ବନ୍ଧ ନାହିଁ– ଆତ୍ମା ନିତ୍ୟ ଏକରସ, ଏମାନେ ପରିବର୍ତ୍ତନଶୀଳ– ଆତ୍ମା ଚୈତନ୍ୟଘନ, ଆଉ ଏମାନେ ଜଡ଼– ଯଥାର୍ଥ ଏ ସମସ୍ତର ଆଦି କାରଣ ହେଉଛି ଆତ୍ମା। ଆତ୍ମାର ସିଦ୍ଧି ନିମନ୍ତେ ଅନ୍ୟ କାହାର ଆବଶ୍ୟକତା ନାହିଁ। ତା'ର ପ୍ରକାଶ (ଆଲୋକ)ରେ ଏହି ସୂର୍ଯ୍ୟ, ଚନ୍ଦ୍ରମା ତଥା ଅଗ୍ନି ପ୍ରକାଶିତ ହେଉଛନ୍ତି। ସେ ହେଉଛି ସକଳ ପ୍ରକାଶକର ପ୍ରକାଶକ।"

ଉଦ୍ଧବ ପଚାରିଲେ, "ପ୍ରଭୁ! ଏହି ଅଧ୍ୟାତ୍ମ, ଅଧିଦୈବ ଆଉ ଅଧିଭୂତ କ'ଣ କେବଳ ଚକ୍ଷୁ ଇନ୍ଦ୍ରିୟ ପାଇଁ ପ୍ରଯୋଜ୍ୟ ?"

ଭଗବାନ୍ କହିଲେ, "ନା, ଏହା ସବୁ ଇନ୍ଦ୍ରିୟଙ୍କ ପାଇଁ ପ୍ରଯୋଜ୍ୟ। ଏହି ପ୍ରକାର ସକଳ ଇନ୍ଦ୍ରିୟଙ୍କ ବିଷୟରେ ବୁଝି ହୋଇପାରେ। ବର୍ତ୍ତମାନ ଚର୍ମ ଇନ୍ଦ୍ରିୟ ବିଷୟ ଦେଖାଯାଉ।

ଏହାର ଅଧ୍ୟାତ୍ମ ହେଉଛି ତ୍ୱଗିନ୍ଦ୍ରିୟ। ଅଧିଷ୍ଠାତୃ ଦେବ ବାୟୁ ହୋଇଥିବାରୁ ସେ ଅଧିଦୈବ ହୋଇଥାନ୍ତି। ଆଉ ବାୟୁର ତନ୍ମାତ୍ରା ହେଉଛି ସ୍ପର୍ଶ। ଏଣୁ ସ୍ପର୍ଶ ହେଲା ଅଧିଭୂତ।

କର୍ଣ୍ଣେନ୍ଦ୍ରିୟର ଆଧ୍ୟାତ୍ମିକ ରୂପ ଶ୍ରବଣ। ଏହାର ଅଧିଦୈବ ଦିଗଗଣ ଓ ଅଧିଭୂତ ଶବ୍ଦ। ଚକ୍ଷୁର ଦୃଷ୍ଟାନ୍ତ ମୁଁ ପୂର୍ବେ କହିଛି। ଚକ୍ଷୁ, ଅଧ୍ୟାତ୍ମ, ସୂର୍ଯ୍ୟ ଅଧିଦୈବ ରୂପ ହେଉଛି ଅଧିଭୂତ। ଜିହ୍ୱାର ରସନା ଅଧ୍ୟାତ୍ମ। ବରୁଣ ଅଧିଦୈବ। ଆଉ ରସ ହେଉଛି ଅଧିଭୂତ। ନାଶିକାର ଅଧ୍ୟାତ୍ମ ହେଉଛି ଘ୍ରାଣେନ୍ଦ୍ରିୟ, ଅଶ୍ୱିନୀକୁମାର ହେଉଛନ୍ତି ଅଧିଦୈବ। ଏବଂ ଗନ୍ଧ ହେଉଛି ଅଧିଭୂତ। ଚିତ୍ତର ଚିତ୍ତ ହେଉଛି ଅଧ୍ୟାତ୍ମ। ଅଧିଦୈବ ହେଉଛନ୍ତି ବାସୁଦେବ। ଆଉ ଚେତାୟିତ୍ୱ ଅଧିଭୂତ।

ମନ ହେଉଛି ଅଧ୍ୟାତ୍ମ, ଚନ୍ଦ୍ର ଅଧିଦୈବ, ମନ୍ତବ୍ୟ ଅଧିଭୂତ। ଅହଂକାର ଅଧ୍ୟାତ୍ମ, ରୁଦ୍ର ଅଧିଦୈବ ଆଉ ଅହଂକର୍ତ୍ତବ୍ୟ ଅଧିଭୂତ। ବୁଦ୍ଧି ଅଧ୍ୟାତ୍ମ, ବ୍ରହ୍ମା ଅଧିଦୈବ ଆଉ ବୋଦ୍ଧବ୍ୟ ଅଧିଭୂତ। ଏହି ଭଳି ଯେତେ ପଦାର୍ଥ ଅଛି ସମସ୍ତର ଅଧ୍ୟାତ୍ମ, ଅଧିଦୈବ ଆଉ ଅଧିଭୂତର ଏହା ହେଉଛି ରହସ୍ୟ। ଯେତେସବୁ ପଦାର୍ଥ ଅଛି ପ୍ରକୃତିର ଗୁଣରେ କ୍ଷୋଭ ହେବା କାରଣରୁ ହୋଇଛି। ଆଦିରେ ତ୍ରିଗୁଣାତ୍ମିକା ମୂଳ ପ୍ରକୃତିରୁ ହିଁ ସକଳ ପ୍ରକାର ଉତ୍ପତ୍ତି ହୋଇଛି।''

ଉଦ୍ଧବ ପଚାରିଲେ, ''ଭଗବନ୍! ମୂଳ ପ୍ରକୃତିରୁ ବିକୃତିମାନେ ଉତ୍ପନ୍ନ ହେଲେ କିପରି ?''

ଭଗବାନ୍ କହିଲେ, ''ପ୍ରକୃତିରେ ସର୍ବପ୍ରଥମ ଗୁଣ କ୍ଷୋଭ ହେବାପରେ 'ମହାନ୍' ନାମକ ଏକ ବସ୍ତୁ ହେଲା। ଏପରି ଅନେକ କହିଥାଆନ୍ତି। ଯେପର୍ଯ୍ୟନ୍ତ ଗୁଣର ସାମ୍ୟାବସ୍ଥା ଥିଲା, ଯେ ପର୍ଯ୍ୟନ୍ତ ନ୍ୟୂନ କି ଅଧିକ ଏପରି ଭେଦଭାବ ନ ଥିଲା। ଗୁଣରେ ଯେତେବେଳେ ନ୍ୟୂନାଧିକ ହେଲା– କ୍ଷୋଭ (ଆଲୋଡ଼ନ) ହେଲା ସେତେବେଳେ 'ମହାନ୍' ନାମକ ଏକ ବସ୍ତୁ ହେଲା। ଏହା ସର୍ବପ୍ରଥମ ତତ୍ତ୍ୱ ହୋଇଥିବାରୁ ତାହାର ନାମ ହେଲା 'ମହତ୍ତ୍ୱ'। କ୍ଷୋଭ କାଳ-କର୍ମ ଆଉ ସ୍ୱଭାବାନୁସାର ସମୟ ଆସିବା ପରେ ହିଁ ସ୍ୱତଃ ହୋଇଥାଏ। ମହତତ୍ତ୍ୱ ହୋଇଥିବାରୁ ସେଥିରେ 'ମୁଁ ଅଛି' ଏପରି ଅଭିମାନ ହେଲା। ଏଇଥିଯୋଗୁ ଏହାର ନାମ ଅହଂତତ୍ତ୍ୱ ଥିଲା। ମହତତ୍ତ୍ୱ କୁହ ଅଥବା ବୁଦ୍ଧିତତ୍ତ୍ୱ ବ୍ରହ୍ମ କୁହ, ସବୁ ଏକାକଥା। ମହତତ୍ତ୍ୱର ଅଧିଷ୍ଠାତୃ ଦେବ ହେଉଛନ୍ତି ବ୍ରହ୍ମା। ଅହଂତତ୍ତ୍ୱର ଅଧିଷ୍ଠାତୃ ଦେବ ହେଉଛନ୍ତି ରୁଦ୍ର। ଏହିଭଳି ରୁଦ୍ର ହେଉଛନ୍ତି ବ୍ରହ୍ମାଙ୍କର ପୁଅ, କାରଣ ରୁଦ୍ର ବ୍ରହ୍ମାଙ୍କ ପରେ ହେଲେ। ଅହଂତତ୍ତ୍ୱ ତିନି ପ୍ରକାରର। ଏକ ବୈକାରିକ, ଅର୍ଥାତ୍ ସାତ୍ତ୍ୱିକ– ଏଥିରୁ ଇନ୍ଦ୍ରିୟଙ୍କର ଅଧିଷ୍ଠାତୃ ଦେବ ଏବଂ ମନର ଉତ୍ପତ୍ତି ହେଲା। ଐନ୍ଦ୍ରିୟିକ ଅର୍ଥାତ୍ ରାଜସ ଅହଂକାର, ଏଥିରୁ ଇନ୍ଦ୍ରିୟଙ୍କର ଉତ୍ପତ୍ତି ହେଲା, ଆଉ ତାମସ ଅହଂକାରରୁ ପଞ୍ଚଭୂତ। ମୋହ ବିକଳ୍ପ ତଥା ଭେଦଭାବର ମୁଖ୍ୟ ହେତୁ ହେଉଛି ଏହି ଅହଂକାର। ସୃଷ୍ଟିର ବୃଦ୍ଧି ଏହି ଅହଂକାରରୁ ହିଁ ହୁଏ। ଅହଂକାର ନ ଥିଲେ ସୃଷ୍ଟି ବଢ଼ି ପାରି ନ ଥାନ୍ତା। ସମସ୍ତ ପ୍ରାକୃତ ବ୍ରହ୍ମାଣ୍ଡ ପ୍ରକୃତିରୁ ଉତ୍ପନ୍ନ ହେଲା। ପୁରୁଷ ଅଥବା ଆତ୍ମା ପ୍ରକୃତିରୁ ସର୍ବଥା ଭିନ୍ନ ଅଟେ।''

ଉଦ୍ଧବ ପଚାରିଲେ, ''ଭଗବନ୍! ମୋର ତ ପ୍ରଶ୍ନ ହେଉଛି ଏହା। ମୁଁ ଜାଣିବାକୁ ଚାହୁଁଛି, ପ୍ରକୃତି ପୁରୁଷ ମଧ୍ୟରେ ଭିନ୍ନତା କଅଣ ?''

ଭଗବାନ କହିଲେ, ''ପ୍ରକୃତିର ସବୁ କାର୍ଯ୍ୟ ମାୟା ମୋହମୟ। ଆତ୍ମା ମାୟା ମୋହ ରହିତ। ପ୍ରକୃତି ପ୍ରପଞ୍ଚ ଅଜ୍ଞାନ ଜନିତ ହୋଇଥାଏ। ଆତ୍ମା ଜ୍ଞାନ ସ୍ୱରୂପ।''

ଉଦ୍ଧବ କହିଲେ, ''ଆତ୍ମା ବିଷୟରେ ବି ତ ଖୁବ୍ ବାଦ-ବିବାଦ ଅଛି। କେତେକ ଆତ୍ମା ଅଛି ବୋଲି କୁହନ୍ତି ତ ଆଉ କେତେକ କୁହନ୍ତି ଆତ୍ମା ନାହିଁ। କେତେକ ଆତ୍ମାକୁ ସଗୁଣ କହୁଥିବା ସ୍ଥଳେ ଆଉ କେତେକ ଏହାକୁ ନିର୍ଗୁଣ କହିଥାନ୍ତି। କେହି କେହି ଭାବ ବୋଲି କହୁଥିବା ସ୍ଥଳେ ଆଉ କିଏ ଅଭାବ ବୋଲି କୁହନ୍ତି। କେହି ସତ୍ୟସିଦ୍ଧ କରିଥାନ୍ତି ତ କେହି କେହି ମିଥ୍ୟା କହି ଖଣ୍ଡନ କରିଥାନ୍ତି। ଏହିଭଳି ନାନା ପ୍ରକାରର ମତଭେଦ ଦେଖାଯାଏ।''

ଭଗବାନ କହିଲେ, ''ଏହି ସମସ୍ତ ବାଦ-ବିବାଦ ଭେଦ ଦୃଷ୍ଟି ହେତୁ ବିଦ୍ୟମାନ। ଏହା ମଧ୍ୟ ମାୟା ସଂସର୍ଗରୁ ହୋଇଛି। ମୋର ଅଂଶଭୂତ ଜୀବର ଯେତେବେଳେ ପ୍ରକୃତି ସହିତ ସଂସର୍ଗ ହୋଇଯାଏ ସେତେବେଳେ ଏହି ସବୁ ଭେଦଦୃଷ୍ଟି ହେବାରେ ଲାଗେ। ଯଦି ଏ ସବୁ ବ୍ୟର୍ଥ, କିନ୍ତୁ ଯେ ପର୍ଯ୍ୟନ୍ତ ପୁରୁଷ ନିଜର ସ୍ୱରୂପଭୂତ ମୋ ଠାରେ ବିମୁଖ ରହିଥାଏ, ସେ ପର୍ଯ୍ୟନ୍ତ ଏହାର ନିବୃତ୍ତି ହୁଏ ନାହିଁ। ତେଣୁ ପ୍ରଥମେ ଦୃଢ଼ରୂପେ ଜାଣିନେବା ଆବଶ୍ୟକ ଯେ ପ୍ରକୃତି ଆଉ ପୁରୁଷ ଦୁହେଁ ଭିନ୍ନ। ଗୋଟିଏ ଅନ୍ୟଠାରୁ ସର୍ବଥା ପୃଥକ। ଏପରି ଭେଦ ଭାବ ଜାଣିନେବା ପରେ ଆଉ ସମସ୍ତ ବାଦ-ବିବାଦ ଶାନ୍ତ ହୋଇଯାଏ, ସକଳ ସଂଶୟ-ନିବୃତ୍ତ ହୋଇଯାଏ।''

ଉଦ୍ଧବ ପଚାରିଲେ, ''ପ୍ରଭୁ! ଯେଉଁ ଜୀବ ମାୟାରେ ମୋହିତ ହୋଇଯାଇ ଆପଣଙ୍କର ବିମୁଖ ହୋଇଯାଇଛନ୍ତି, ସେମାନଙ୍କର କିପରି ଦଶା ହୋଇଥାଏ।''

ଭଗବାନ୍ କହିଲେ, ''ସେମାନେ କର୍ମ ବନ୍ଧନରେ ବାନ୍ଧି ହୋଇ ବାରମ୍ବାର ମରନ୍ତି, ବାରମ୍ବାର ଜନ୍ମ ହୋଇଥାନ୍ତି। କେତେବେଳେ ଉଚ୍ଚ ଯୋନିରେ ତ ଆଉ କେତେବେଳେ ନୀଚ ଯୋନିରେ ଜନ୍ମ ହେଉଥାନ୍ତି।''

ଉଦ୍ଧବ ପଚାରିଲେ, ''ଭଗବନ୍! ସେମାନେ କିପରି ଉଚ୍ଚ-ନୀଚ ଯୋନିକୁ ଯାଆନ୍ତି— କୃପାକରି ଏହି ବିଷୟକୁ ଉତ୍ତମ ରୂପେ ବୁଝାଇ ଦିଅନ୍ତୁ। ପ୍ରଭୁ! ଯେଉଁ ପୁରୁଷ ଆତ୍ମଜ୍ଞାନରୁ ସର୍ବଥା ଶୂନ୍ୟ ଥାଏ, ସେମାନେ ଏହି ବିଷୟକୁ ବୁଝି ପାରନ୍ତି ନାହିଁ। ଲୋକମାନେ ପ୍ରାକୃତ ପଦାର୍ଥର ସଂଯୋଗରେ ବଡ଼ବଡ଼ ଆବିଷ୍କାର କରନ୍ତି। କିନ୍ତୁ ଏହା ଭୌତିକ ପଦାର୍ଥ ପର୍ଯ୍ୟନ୍ତ ସୀମିତ ରହେ। ଆତ୍ମତତ୍ତ୍ୱ ଜାଣିଥିବା ଲୋକ ଅତି ବିରଳ ଥାଆନ୍ତି। ଏହି ଲୋକରେ, ଆତ୍ମତତ୍ତ୍ୱ ଜାଣିଥିବା ଲୋକ ପ୍ରାୟ କେହି ନାହାନ୍ତି କହିଲେ ଚଳେ। କାରଣ ଆମେ ଯାହାକୁ ବି ଦେଖୁଛେ ସେ ଆପଣଙ୍କର ମୋହିନୀ ମାୟାର ଚକ୍କରରେ ଫସିଯାଇଥିବା ଦେଖୁ। କେହି ବଡ଼ ଧରଣର ମାୟାରେ ତ କେହି ସାନ ଧରଣର ମାୟାରେ। କେହି ସ୍ଥୂଳ ମାୟାରେ ବାନ୍ଧି ହୋଇଯାଇଛି ତ କେହି ସୂକ୍ଷ୍ମ ମାୟାର ବନ୍ଧନରେ ପଡ଼ିଛି। ହେ ପ୍ରଭୁ! କୃପାକରି ମୋତେ ଜୀବଙ୍କ ଗତି କୁହନ୍ତୁ। ଏବଂ ଆତ୍ମତତ୍ତ୍ୱର ଉପଦେଶ ପ୍ରଦାନ କରିବା ହୁଅନ୍ତୁ।''

ଏପରି ଶୁଣି ଭଗବାନ୍ କହିଲେ, ''ଠିକ୍ ଅଛି, ତା'ହେଲେ ହେ ଉଦ୍ଧବ! ଏବେ ମୁଁ ତୁମକୁ ଜୀବଙ୍କ ଗତି ବୁଝାଉଛି। ଏହି ବିଷୟ ଅତି ଗୂଢ଼। ଚିତ୍ତ ସାମାନ୍ୟ ମାତ୍ର ବିଚଳିତ ହେଲେ ଏହି କଥା ଆଦୌ ମଗଜରେ ପଶିବ ନାହିଁ, ତୁମେ ବୁଝିପାରିବ ନାହିଁ। ଏଣୁ ଧ୍ୟାନପୂର୍ବକ ଏହା ଶ୍ରବଣ କର।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ! ଏବେ ଭଗବାନ ଭଗବାନ-ବିମୁଖ କର୍ମର ଅଧୀନ ପୁରୁଷଙ୍କ ଗତି ସମ୍ବନ୍ଧରେ ଯାହା ବର୍ଣ୍ଣନା କଲେ ତାହା ଆପଣମାନଙ୍କୁ କହୁଛି।''

### ଛପ୍ପୟ

ଉଦ୍ଧବ ପୂଛୈ- "ପ୍ରଭୋ ! ବିମୁଖ ଜୋ ତୁମ ତେଁ ପ୍ରାନୀ ।
କା ତିନକୀ ଗତି ହୋହି କର୍ମ କେ ଜେ ଅଭିମାନୀ ।।
ଆତ୍ମ ଜ୍ଞାନ ତେଁ ରହିତ ପୁରୁଷ ଯହ ଭେଦ ନ ଜାନେ ।
ଜଗ ପ୍ରପଞ୍ଚ ମହଁ ଫସେ ଦେହକୁଁ ସବ କଛୁ ମାନେ ।।
ଫସ୍ୟୋ ମୋହ ମହଁ ଦୟାନିଧି ! ଗହେ କୃପାମୟ ତବ ଚରନ ।
ଉଦ୍ଧବ କୀ ସୁନିକେ ବିନୟ, ବନବାରୀ ବୋଲେ ବଚନ ।।



# ହରି ବିମୁଖଙ୍କର ଗତି

**ମନଃ କର୍ମମୟଂ ନୃଣାମିନ୍ଦ୍ରିୟୈଃ ପଞ୍ଚଭିର୍ୟୁତମ୍ ।**
**ଲୋକାଲ୍ଲୋକଂ ପ୍ରୟାତ୍ୟନ୍ୟା ଆତ୍ମା ତଦନୁବର୍ତତେ ।। ★**

[ଶ୍ରୀଭା.୧୧ସ୍କ.୨୨ଅ.୩୬ ଶ୍ଳୋକ]

### ଛପ୍ପୟ

ବିପ୍ରବର ! ମନ ହୈ କରମଯୁକ୍ତ ଇନ୍ଦ୍ରିୟ ତେ ସଂଯୁତ ।
ଜୀବ ସଂଗ ଲୈ ଫିରୈ ଲୋକ ଲୋକନି ମହଁ ଇତ ଉତ ।।
ମନ ନେ ଜୋ କଛୁ ସୁନ୍ୟୋ କରୈ ତିହି ନିତ୍ୟ ବିଚାରୈ ।
ଜାଇ ଜହାଁ ତହଁ ରମୈ ପୂର୍ବ ନିଜ ରୂପ ବିସାରୈ ।।
ଅହଂଭାର ସ୍ୱୀକାର, ହୀ, ଯହୀ ଜୀବ କୋ ଜନମ ହୈ ।
ନହୀ ଜୀବ ଜନମୈ ମରୈ, ଯହୀ ଯଥାରଥ ମରମ ହୈ ।।

ଜୀବ ଯେତେବେଳେ ଅହଂକାରର ଅଧୀନ ହୋଇଯାଏ (ଅହଙ୍କାରୀ ହୋଇଯାଏ) ସେତେବେଳେ ମନର ଅନୁଗାମୀ ହୋଇ ନାନା ଯୋନିରେ ଭ୍ରମଣ କରିବାରେ ଲାଗେ । ମନ ଜ୍ଞାନେନ୍ଦ୍ରିୟଙ୍କ ଦ୍ୱାରା ଜୀବଙ୍କୁ ଭୋଗ ଉପଭୋଗ କରାଇବାରେ ଲାଗେ । ମନ ଯେଉଁ ଯେଉଁ ବିଷୟରେ ସ୍ୱାଦ ଚାଖିଥାଏ, ସେଗୁଡ଼ିକର ସଂସ୍କାର ସୂକ୍ଷ୍ମ ରୂପରେ ତା ଦେହରେ

---

 ମନଟି କର୍ମମୟ ହୋଇ । ନାନା ପ୍ରକାରେ ସୃଜେ ଦେହୀ ।।
ପ୍ରାଣୀ ଜୀବନ ଅନ୍ତଃକାଳେ । ମନ ଇନ୍ଦ୍ରିୟ ପଞ୍ଚମେଳେ ।।
ପ୍ରାଣ ସଙ୍ଗତେ ଯାହା ଭାବେ । ସେ ଅନୁସାରେ ଜନ୍ମ ଲଭେ ।।
ଏ ଆତ୍ମା ମନ ପଛେ ପଛେ । ସ୍ୱଭାବେ ବୁଲଇ ପ୍ରତ୍ୟକ୍ଷେ ।।
ଏଣୁ ସେ ମନ ଥାଏ ଯହିଁ । ଏ ଜୀବ ଆତ୍ମା ମିଳେ ତହିଁ ।।
[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କନ୍ଧ ୨୩ଅ]

(ମନରେ) ଲାଖି ରହିଯାଏ । ସେହି ବିଷୟଗୁଡ଼ିକ ନ ଥିଲେ ବି ସେ ଗୁଡ଼ିକର ସୂକ୍ଷ୍ମ ସଂସ୍କାର ମନରେ ଲାଗି ରହିଥାଏ । ଏବେ ମନ ଗୋଟିଏ ଶରୀରକୁ ଛାଡ଼ି ଦ୍ୱିତୀୟ ଶରୀରକୁ ଯାଉ, ତୃତୀୟ ଶରୀରକୁ ଯାଉ, ଚତୁର୍ଥ ଶରୀରକୁ ଯାଉ, ଯେତେ ଶରୀରକୁ ଯାଉଥିଲେ ବି ତାହାର ସେହି ଭୋଗ କରିଥିବା– (ଦେଖିଥିବା ବା ଜାଣିଥିବା) ସଂସ୍କାର ତା ସହିତ ଯାଇଥାଏ । ଏହା ହିଁ ହେଉଛି ସଂସାର ଚକ୍ର । ଯଦି ମାୟାବନ୍ଧ ଜୀବର ଦେହାଦିରେ ଥିବା ମିଥ୍ୟାଭିମାନ ଦୂର ହୋଇଥାଏ– ସେ ତା ନିଜ ସ୍ୱରୂପରେ ଅବସ୍ଥିତ ହୋଇଯାଏ, ସେତେବେଳେ ଏହି ସଂସାରର ଆବାଗମନ ସବୁ ସମୟ ପାଇଁ ଛାଡ଼ିଯାଏ ।

ମହାପ୍ରାଜ୍ଞ ସୂତ କହୁଛନ୍ତି– ହେ ମୁନିଗଣ ! ଯେତେବେଳେ ଜିଜ୍ଞାସୁପ୍ରବର ଉଦ୍ଧବ ଭଗବାନଙ୍କୁ ମାୟାବନ୍ଧ ଜୀବର ଉଚ୍ଚ-ନୀଚ ଗତି ସମ୍ବନ୍ଧରେ ପ୍ରଶ୍ନ କଲେ ସେତେବେଳେ ଭଗବାନ କହିଲେ, ''ହେ ଉଦ୍ଧବ ! ଜୀବଙ୍କର ଉଚ୍ଚ-ନୀଚ ଗତି କର୍ମ ଦ୍ୱାରା ହିଁ ହୋଇଥାଏ ।''

ଉଦ୍ଧବ ପଚାରିଲେ, ''ହେ ଭଗବନ୍ ! କର୍ମ ପ୍ରକୃତରେ ରହେ କେଉଁଠାରେ ?''

ଭଗବାନ୍ କହିଲେ, ''କର୍ମର ସଂସ୍କାର ମନରେ ରହିଥାଏ । ମନ ହେଉଛି ବନ୍ଧନ ଓ ମୋକ୍ଷର କାରଣ । ମନ ଯଦି ବିଷୟାସକ୍ତ ହୋଇଯାଏ ତେବେ ସଂସାର ବନ୍ଧନରେ ପଡ଼ିଯାଏ । ମନ ଯଦି ବିଷୟବିରକ୍ତ ହୋଇଯାଏ, ଅର୍ଥାତ୍ ବିଶୁଦ୍ଧ ହୋଇଯାଏ ତେବେ ତାହା (ମନ) ମୋକ୍ଷର କାରଣ ହୋଇଯାଏ । ଇନ୍ଦ୍ରିୟଙ୍କ ଦ୍ୱାରା ମନ ଯେଉଁସବୁ ଭୋଗର ଅନୁଭବ କରେ ସେହି ସେହି ବିଷୟ ମନରେ ଲାଖିଯାଏ । ମନ ଇନ୍ଦ୍ରିୟଙ୍କ ସହିତ ସଂଯୁକ୍ତ ହୋଇ ପାପ-ପୁଣ୍ୟର ବାସନା ସମୂହକୁ ସାଙ୍ଗରେ ଧରି ଗୋଟିଏ ଶରୀରରୁ ଆଉ ଗୋଟିଏ ଶରୀରକୁ ଯାଏ । ଜୀବାତ୍ମା ବି ମନକୁ ଅନୁସରଣ କରେ ।''

ଉଦ୍ଧବ କହିଲେ, ''ଭଗବନ୍ ! ମନ ତ ଜଡ଼ । ଆଉ ଜୀବାତ୍ମା ହେଉଛି ଚୈତନ୍ୟାଂଶ, ତାହାଠାରୁ ସର୍ବଥା ପୃଥକ୍ । ଏପରି ସ୍ଥଳେ ଜୀବାତ୍ମା ମନର ଅନୁସରଣ କାହିଁକି କରେ ?''

ଭଗବାନ୍ କହିଲେ, ''ହଁ ! ଏ କଥା ସତ୍ୟ ଯେ ଜୀବାତ୍ମା ମନ ଠାରୁ ଭିନ୍ନ, ତେବେ ବି ତାହା ଏହି ଇନ୍ଦ୍ରିୟରେ ଯୁକ୍ତ କର୍ମମୟ ମନରେ ଅହଙ୍କାରବଦ୍ଧ ହୋଇଯାଏ । ମୋ ମନ, ମୋର ଇନ୍ଦ୍ରିୟଗଣ– ଏହିଭଳି ତାହାର ମୋହ ହୋଇଯାଏ । ଏହି ମୋହ କାରଣରୁ ବିବଶ ହୋଇ ତାକୁ ମନର ଅନୁସରଣ କରିବାକୁ ପଡ଼େ ।''

ଉଦ୍ଧବ ପଚାରିଲେ, ''ଭଗବନ୍ ! ଜୀବ ଯେତେବେଳେ ଅନେକ ଯୋନିରେ ଭ୍ରମଣ କରୁଥାଏ, ତାହା ତାର ମନେ କାହିଁକି ରହେନାହିଁ ? ଆମେ ଯେତେ ସହର ବୁଲିଛେ ସେ ସମସ୍ତର କିଛି କିଛି ତ ଆମର ମନେ ରହିଥାଏ ।''

ଭଗବାନ୍ କହିଲେ, ''ନା, ତୁମେ ଯେତେ ଅନୁଭବ କରୁଛ ସବୁ ସ୍ମୃତି ତୁମର ରହେନାହିଁ । ହଉ, ଯଦି ମନେରୁହେ ବୋଲି କହୁଛ ତେବେ କହିଲ ମାସକ ପୂର୍ବେ ତୁମେ କି ସ୍ୱପ୍ନ ଦେଖିଥିଲ ?''

ଉଦ୍ଧବ କହିଲେ, ''ଆଜ୍ଞା, ସ୍ୱପ୍ନ କଥା ତ ମନେନାହିଁ ।''

ଭଗବାନ୍ କହିଲେ, ''ସ୍ୱପ୍ନ କଥା ତୁମର ମନେ ନ ରହିବାର କାରଣ ତୁମେ ଅନ୍ୟ ଆବଶ୍ୟକ କଥାରେ ଲୀନ ରହିଥାଅ । ଠିକ୍ ଏହିଭଳି, ଏହି ମନ କର୍ମର ଅଧୀନ ହୋଇ

ଯାହା ଯାହା ସଂସାରରେ ଦେଖେ, ଶାସ୍ତ୍ର ଆଦିରୁ ଶୁଣେ, ସେହି ସେହି ବିଷୟକୁ ଧ୍ୟାନ କରିବାରେ ଲାଗିଥାଏ। ସେହି ସେହି କର୍ମର ଭୋଗରେ ଏପରି ତନ୍ମୟ ହୋଇଯାଏ ଯେ ତାର ପୂର୍ବ ସ୍ମୃତି ନଷ୍ଟ ହୋଇଯାଏ। ବାଳକପଣରେ ମଣିଷ ଏହି ଶରୀରରେ କେଜାଣି କେତେ କଥା କରିଥାଏ, ଯୁବକାବସ୍ଥାରେ ତାର ସେହି କଥାଗୁଡ଼ିକ ମନେରହେ ନାହିଁ। ସେହିଭଳି ବର୍ତ୍ତମାନ ଶରୀରରେ ଦୃଢ଼ ଆସ୍ଥା ହୋଇଯାଇଥିବାରୁ ତଥା ବିଷୟରେ ତଲ୍ଲୀନ ହୋଇଯାଇଥିବାରୁ ପୂର୍ବ ସ୍ମୃତି ନଷ୍ଟ ହୋଇଯାଏ। ଯଦି ମନୁଷ୍ୟର ପୂର୍ବଜନ୍ମର ସକଳ କଥା ସ୍ମରଣରେ ରହିଯାଏ ତେବେ ସେ ବିଷୟରେ ଏପରି ତଲ୍ଲୀନ ହୁଅନ୍ତା କାହିଁକି? ଶରୀରର ତ ମୃତ୍ୟୁ ହୁଏନାହିଁ। ପଞ୍ଚଭୂତର ଗୋଟିଏ ଶରୀର ଥିଲା, ତାହା ପଞ୍ଚଭୂତରେ ମିଶିଗଲା। ଏହାପରେ ପୁଣି ଆଉ ଗୋଟିଏ ପଞ୍ଚଭୌତିକ ଶରୀର ମିଳିଗଲା। ଯେପରି ଗୋଟିଏ ବସ୍ତ୍ର ଜୀର୍ଣ୍ଣ ହୋଇଗଲା, ଆଉ ଗୋଟିଏ ବସ୍ତ୍ର ପିନ୍ଧା ହୋଇଗଲା। ଜୀବାତ୍ମାର ମୃତ୍ୟୁ ଇ ହୁଏନାହିଁ। ସେ ତ ଅଜର, ଅମର।''

ଉଦ୍ଧବ ପଚାରିଲେ, ''ତାହାହେଲେ ପ୍ରଭୁ, **ମୃତ୍ୟୁ ହୁଏ କାହାର ?''**

ଭଗବାନ୍ କହିଲେ, **''କୌଣସି କାରଣରୁ ହେଉ ପୂର୍ବ ଦେହର ଅତ୍ୟନ୍ତ ବିସ୍ମୃତିର ନାମ ହେଉଛି ମୃତ୍ୟୁ।** ଶୋଇପଡ଼ିଥିବା ସମୟରେ ବି ଦେହର ବିସ୍ମୃତି ହୋଇଥାଏ। ଗଛରୁ ବା ଛାତରୁ ପଡ଼ିଗଲେ ବା ମୂର୍ଚ୍ଛା ହୋଇଗଲେ ଦେହର ବିସ୍ମୃତି ହୋଇଯାଏ, ହେଲେ ଏହା ସବୁ ଅତ୍ୟନ୍ତ ବିସ୍ମୃତି ନୁହେଁ। ଶୋଇଥିବା ସମୟରେ ବି ମଣିଷ ଶୁଣେ।''

ଉଦ୍ଧବ ପଚାରିଲେ, ''ପ୍ରଭୁ! ଶୋଇପଡ଼ିଥିବା ସମୟରେ ତ ମଣିଷ ଆଦୌ କିଛି ଶୁଣିପାରେ ନାହିଁ।''

ଭଗବାନ କହିଲେ, ''ଆରେ ନାଇଁ ଭାଇ! ଶୋଇଥିବା ସମୟରେ ବି ମଣିଷ ଶୁଣେ। ଯଦି ନ ଶୁଣୁ ଥାଆନ୍ତା ତେବେ ନାମ ଧରି ଡାକିଲେ ସେ ଉଠି ଠିଆ କିପରି ହୋଇଯାଉ ଥାଆନ୍ତା! ସେ ଅବଶ୍ୟ ଶୁଣେ। କିନ୍ତୁ ଜୋରରେ କହିଲେ ଶୁଣେ। ଏଥିରୁ ଜଣାଯାଏ ଯେ ତା ଶରୀରର ଅତ୍ୟନ୍ତ ବିସ୍ମୃତି ହୋଇ ନ ଥାଏ। ଉଠିପଡ଼ିବା ପରେ ସମସ୍ତ ପୁରୁଣା କଥା ମନେପଡ଼ିଯାଏ। ମରିଯିବା ପରେ ତାର ସମସ୍ତ ପୂର୍ବ ସ୍ମୃତି ନଷ୍ଟ ହୋଇଯାଏ। ଏହାହିଁ ହେଉଛି ମୃତ୍ୟୁ।''

ଉଦ୍ଧବ ପଚାରିଲେ, **''ପୁଣି ଜନ୍ମ କିପରି ହୁଏ ?''**

ଭଗବାନ୍ କହିଲେ, ''କର୍ମାନୁସାରେ ଦେବତା, ମନୁଷ୍ୟ, ପଶୁ-ପକ୍ଷୀ ଆଦି ଭିତରୁ ଯାହା ବି ଶରୀର ମିଳେ ସେହି ଦେହରେ ତଥା ସେହି ଦେହ ସମ୍ବନ୍ଧରେ ପ୍ରାପ୍ତ ହୋଇଥିବା ବିଷୟରେ ଅହଂତା, ମମତା ହୋଇଯିବା, ତାହାକୁ ପୂରାପୂରି ନିଜର କହି ସ୍ୱୀକାର କରି ନେବା ହେଉଛି ଜନ୍ମ। ଜନ୍ମ ହେବା ପୂର୍ବରୁ ଜୀବର ଏହି ଦେହ ସହିତ କୌଣସି ସମ୍ବନ୍ଧ ନ ଥିଲା। ଯେତେବେଳେ ଦେହ ପାଇ ଗର୍ଭରୁ ବାହାରକୁ ଆସେ ସେତେବେଳେ ଦେହର ସୁଖ ଦୁଃଖକୁ ନିଜର ବୋଲି ମାନିବାରେ ଲାଗେ; ଦେହ ସମ୍ବନ୍ଧରେ ସମ୍ବନ୍ଧିମାନଙ୍କୁ ଆପଣାର ବୋଲି ସ୍ୱୀକାର କରିନିଏ। ଇଏ ମୋର ପିତା, କକା, ଦଦା, ମା, ଖୁଡ଼ୀ, ଭଉଣୀ ଇତ୍ୟାଦି। **ଏହି 'ମୁଁ' 'ମୋର'ର ନାମ ହେଉଛି ଜନ୍ମ। ଯାହାର ଦେହର ତତ୍‌ସମ୍ବନ୍ଧୀୟ ବିଷୟରେ ବି ମମତା ନାହିଁ, ତା'ର ଜନ୍ମ ବି ନାହିଁ।**

"ବାସ୍ତବରେ ଦେଖିଲେ, ଜୀବର ଜନ୍ମ ମରଣ ଇ ନାହିଁ। ଏହା କେବଳ ମାନିବା ବା ସ୍ୱୀକାର କରିବା କଥା। ଯାହାକୁ ଆପଣାର କହି ସ୍ୱୀକାର କରି ନେଲା, ଯାହା ସହିତ ଅଭିନିବେଶ ହୋଇଗଲା, ତାହାହିଁ ହେଉଛି ଜନ୍ମ।"

ମହାମୁନି ଶୌନକ ପଚାରିଲେ, "ହେ ମହାପ୍ରାଜ୍ଞ ସୂତ! ମାନିନେବା ବା ସ୍ୱୀକାର କରିନେବା ଦ୍ୱାରା ଜନ୍ମ କିପରି ହୋଇଥାଏ, ଏ କଥା ତ ଆମକୁ ଠିକ୍ ବୁଝାପଡୁ ନାହିଁ।"

ମହାପ୍ରାଜ୍ଞ ସୂତ କହିଲେ, "ମହାରାଜ! ବାସ୍ତବରେ ଜୀବ ହେଉଛି ଏକ। ସେ ହିଁ ନାନା ଦେହରେ ଭୋଗ ଉପଭୋଗ କରୁଛି। ଦେହ ତ ସ୍ୱୟଂ ଜଡ଼, ମୃତକ। ଯିଏ ସ୍ୱୟଂ ଜଡ଼, ସ୍ୱୟଂ ମୃତକ ତା'ର ପୁଣି ଜନ୍ମ ମରଣ ହେବ କ'ଣ? ଜୀବ ହେଉଛି ଅଜର-ଅମର। ତେବେ ମୃତ୍ୟୁ କାହାର, ଜନ୍ମ କାହାର?"

ମହାମୁନି ଶୌନକ ପଚାରିଲେ, "ତେବେ ଅମୁକ ଜନ୍ମହେଲା ମରିଗଲା, ଜନ୍ମ ବୋଲି ଲୋକମାନେ କାହିଁକି କୁହନ୍ତି?"

ମହାପ୍ରାଜ୍ଞ ସୂତ କହିଲେ, "ମହାରାଜ! ଏହା ତ ବ୍ୟବହାର ମାତ୍ର। ଯେପରି କେହି ବସି ବସି ମନେ ମନେ ଚିନ୍ତା କରେ– ଗୋଟିଏ ସୁନ୍ଦର ବିରାଟ ଆମ୍ବ ଗଛ, ତହିଁରେ ଅତି ମିଠା ସୁନ୍ଦରୀ ଆମ୍ବ ପରିପୂର୍ଣ୍ଣ ହୋଇ ରହିଛି, ସେ ଢେଲା ମାରିଲା, ଅନେକ ଆମ୍ବ ତଳେ ପଡ଼ିଲା, ସେ ଖାଇବାକୁ ଯାଉଛି ଏହି ସମୟରେ ତା'ର ଗୋଟିଏ ପୁଅ ଆସି କହିଲା, 'ବାପା! କ'ଣ ଭାବୁଛ, ଆସ ବଡ଼ା ହେଲାଣି, ମା ଡାକୁଛି, ଖାଇବ ଆସ।'

"ଏତିକି ଶୁଣିବା ମାତ୍ରେ ତା'ର ଚିତ୍ତ ଅନ୍ୟ ଆଡ଼କୁ ଚାଲିଗଲା। ତା ଚିନ୍ତା ଭିତରେ ଯେଉଁ ଆମ୍ବ ଥିଲା ତାହା ନଷ୍ଟ ହୋଇଗଲା। ବାସ୍ତବରେ ସେଠାରେ ଆମ୍ବ ନ ଥିଲା, ଥିଲା କେବଳ କଳ୍ପନାରେ। ପୁଅ ଡାକିଦେବାରୁ ସେହି ସ୍ୱପ୍ନ ନଷ୍ଟ ହୋଇଗଲା। ସ୍ୱପ୍ନରେ ଆମେ ଦେଖୁଛେ– ରାଜା ହୋଇଯାଇଛେ, ରାଜାମାନଙ୍କ ଭଳି ଭୋଗ ଉପଭୋଗ କରିବାରେ ଲାଗିଛେ, ହାତୀ ଘୋଡ଼ାରେ ବସିଛେ, ଇତ୍ୟାଦି। ଆଉ ଆଖି ମେଲାଇଦେବା ମାତ୍ରେ ନା ଛତ୍ର ନା ଚାମର; ନା ସିଂହାସନ ନା ପାତ୍ରମନ୍ତ୍ରୀ, କେହି ନ ଥାନ୍ତି। ଶୋଇଥିବା ମଣିଷ ଯେତେବେଳେ ସ୍ୱପ୍ନ ଦେଖେ ସେ ସମୟରେ ଷୋଳଅଣାଯାକ ସତ ବୋଲି ମନେକରୁଥାଏ। ସ୍ୱପ୍ନରେ ସେ ନିଜକୁ ନିଜେ ଭୁଲି ଯାଇଥାଏ ଯେ ସେ ଗୋଟିଏ ଦରିଦ୍ର, ନିଜର ପୂର୍ବ ରୂପ ତାର ବିସ୍ମରଣ ହୋଇଯାଇଥାଏ। କିନ୍ତୁ ଜାଗ୍ରତ ହୋଇଯିବା ପରେ ଯେତେବେଳେ ସେହି ରାଜ ଥାଟ ଆଉ ଦୃଷ୍ଟିକୁ ଆସେନାହିଁ, ସେ ପ୍ରକୃତିସ୍ଥ ହୋଇ ନିଜେ ନିଜର ଦାରିଦ୍ର୍ୟକୁ ସତ୍ୟ ବୋଲି ଜାଣିପାରେ। ଏହିଭଳି ଅହଂକାରର ଅଧୀନ ହୋଇ ନିଜର ପୂର୍ବ ସ୍ମୃତି ନଷ୍ଟ ହୋଇଯିବା ଦ୍ୱାରା ଯେଉଁ ଦେହ ଉପରେ ମମତା କରି ବସେ ସେଥିରେ ଫସିଯାଏ; ସେଥିପ୍ରତି ତା'ର ଦୃଢ଼ ଆସକ୍ତି ହୋଇଯାଏ। ଏ ପ୍ରସଙ୍ଗରେ ଗୋଟିଏ ସୁନ୍ଦର ଦୃଷ୍ଟାନ୍ତ ଅଛି–

"ଜଣେ ଜ୍ୟୋତିଷ ଥିଲା। ସେ ତା'ର ଜାତକ ଦେଖି ଜାଣିଲା ଯେ ପରବର୍ତ୍ତୀ ଜନ୍ମରେ ସେ ଗୋଟିଏ କୁଆ ହେବ। ଏଥିରେ ତା ମନରେ ଗ୍ଲାନି ଉପୁଜିବା ସ୍ୱାଭାବିକ। ସେ ତା'ର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କୁ କହିଲା– 'ଦେଖ ଭାଇ, ମୋ ମୃତ୍ୟୁ ନିକଟ ହୋଇଗଲାଣି, ମୁଁ ଅମୁକ ବୃକ୍ଷରେ ଗୋଟିଏ କୁଆଶାବକ ହେବି। ମୋର ସେତେବେଳେ ଗୋଟିଏ ପର ଧଳା ଥିବ। ତୁମେ ଏଇଥିରୁ ମୋତେ ଚିହ୍ନିବ। ମୋର ତୁମକୁ ଅନୁରୋଧ, ମୁଁ ଜନ୍ମ ହେବାମାତ୍ରେ ତୁମେ ମୋତେ ମାରିଦେବ। ଏପରି କଲେ ମୁଁ ବିଷ୍ଠା ଖାଇବାରୁ ବଞ୍ଚିତ ହୋଇଯାଇବି।'

''ବନ୍ଧୁ କହିଲା, 'ଠିକ୍ ଅଛି। ମୁଁ ତାହା କରିବି।' କିଛିଦିନ ପରେ ଜ୍ୟୋତିଷର ମୃତ୍ୟୁ ହେଲା । ଦୈବବଶତଃ ସେ କୁଆଜନ୍ମ ପାଇଲା । କିନ୍ତୁ ତା'ର ବନ୍ଧୁ ସବୁକଥା ଭୁଲିଯାଇଥିଲେ । କୁଆ ବଡ଼ହେଲା, ବିଷ୍ଠା ବି ଖାଇବାରେ ଲାଗିଲା। ଏପରି କେତେଦିନ ଯିବା ପରେ ଦିନେ ଜ୍ୟୋତିଷର ବନ୍ଧୁ କୌଣସି କାମରେ କେଉଁଆଡ଼େ ବାହାରି କୁଆ ରହୁଥିବା ଗଛ ବାଟଦେଇ ଯାଉଥିଲା। ତା'ର ନଜର ହଠାତ୍ ଧଳା ପରଥିବା ଗୋଟିଏ କୁଆ ଉପରେ ପଡ଼ିଗଲା ଏବଂ ତା'ର ସବୁକଥା ମନେପଡ଼ିଗଲା। ସେ ସହସା ସେହି କୁଆକୁ ମାରିବାପାଇଁ ବାହାରିଲା। ସେତେବେଳେ କୁଆ କହିଲା, 'ଆପଣ ମୋତେ କାହିଁକି ମାରିବା ପାଇଁ ଆସୁଛନ୍ତି ?'

ଲୋକଟି କହିଲା, 'ମୋର ଜ୍ୟୋତିଷ ବନ୍ଧୁ କହିଥିଲା ଯେ ଧଳା ପରଥିବା କୁଆକୁ ଦେଖି ମାରିଦେବ।'

କୁଆ କହିଲା, 'ମହାନୁଭବ! ଆପଣ ଯାହା କହିଲେ ତାହା ସତ୍ୟ। ମୁଁ ହିଁ ଆପଣଙ୍କର ସେହି ଜ୍ୟୋତିଷ ବନ୍ଧୁ। କିନ୍ତୁ ଏବେ ମୁଁ ସବୁ ପୁରୁଣାକଥା ଭୁଲିଗଲିଣି। ଏହି କୁଆ ଶରୀର ପ୍ରତି ମୋର ଆସକ୍ତି ହୋଇଯାଇଛି। ଏବେ ମୁଁ କୁଆଙ୍କ ଆହାରାଦିକୁ ସ୍ୱଇଚ୍ଛାରେ ସ୍ୱୀକାର ବି କରି ସାରିଛି। କୁଆ ଯୋନିରେ ଜନ୍ମହୋଇ ମୁଁ ବଢ଼ିଗଲିଣି। ଏବେ ଆପଣ ଆଉ ମୋତେ ମାରନ୍ତୁ ନାହିଁ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ! ଏବେ ଆପଣ ଥରେ ଭାବି ଦେଖନ୍ତୁ ତ— ତାର କୁଆ ଜନ୍ମ କ'ଣ ହେଲା! ଜୀବାତ୍ମା, ଯାହା ମଣିଷ ଶରୀରରେ ଥିଲା ତା ଦେହରେ ବି ରହିଲା ନା! ମଣିଷ ଶରୀରରେ ବି ପାଞ୍ଚଭୌତିକ ଓ ଜଡ଼ ଥିଲା, ସେହିଭଳି କୁଆର ଶରୀରରେ ବି ପାଞ୍ଚଭୌତିକ ଜଡ଼ ହେଲା। ମଣିଷ ଶରୀର ସମ୍ବନ୍ଧକୁ, ସେହି କଥାକୁ ଭୁଲିଯିବା ହେଉଛି ମୃତ୍ୟୁ। କୁଆ ଶରୀରକୁ ନିଜର କରିନେବା, କୁଆର ଆଚାର-ବ୍ୟବହାରକୁ ସ୍ୱୀକାର କରିନେବା ହେଉଛି ଜନ୍ମ। କେତେକ ଲୋକ ବିଧର୍ମୀ ହୋଇଯାଆନ୍ତି, ଅନ୍ୟ ଧର୍ମକୁ ଚାଲି ଯାଆନ୍ତି। ବିଧର୍ମୀ ହୋଇଯିବା ପରେ ସେମାନଙ୍କର ରସ, ରକ୍ତ, ମାଂସ, ମଜ୍ଜା ଆଦି ଅପରିବର୍ତ୍ତିତ ରହିଥାଏ, କେବଳ ବିଧର୍ମୀ ଆଚାର-ବ୍ୟବହାରକୁ ଆପଣାର କରି ନେଇଥାଏ। ଏଣୁ ଅତ୍ୟନ୍ତ ବିସ୍ମୃତି ହେଉଛି ମୃତ୍ୟୁ। ଆଉ ଅହଂତାପୂର୍ବକ ସ୍ୱୀକାର କରିନେବା ହେଉଛି ଜନ୍ମ।''

ମହର୍ଷି ଶୌନକ କହିଲେ, ''ହେ ମହାପ୍ରାଜ୍ଞ ସୂତ! ଆପଣଙ୍କ କଥା ତ ସତ୍ୟ, କିନ୍ତୁ ସଂସାରରେ ଯେଉଁ ଉତ୍ତମ, ମଧ୍ୟମ, ଉଚ୍ଚ, ନୀଚ ଆଦି ପ୍ରଭେଦ ଦେଖାଯାଏ ଏହା ବି ତ ସତ୍ୟ ଭଳି ?''

ମହାପ୍ରାଜ୍ଞ ସୂତ ହସି ହସି କହିଲେ, ମହାରାଜ! ଏଇ କଥା ତ ମହାନୁଭବ ଉଦ୍ଧବ ପଚାରିଥିଲେ। ଏହାର ଉତ୍ତର ଦେବାକୁ ଯାଇ ଭଗବାନ୍ ବୁଝାଇଥିଲେ, ''ହେ ଉଦ୍ଧବ! ତୁମେ ଏହି ବିଷୟକୁ ଗମ୍ଭୀରତାର ସହିତ ବିଚାର କର। ଦେଖ, ସ୍ୱପ୍ନରେ ମଣିଷ ଦେଖେ ଏକ ବିରାଟ ଭବନ, ଦୁଇ ମହଲା ଭୂମି ତଳେ ଅଛି ତ ଭୂମି ଉପରେ ପାଞ୍ଚ ମହଲା ଅଛି, ବାହାର ପଟେ ବିରାଟ ପଡ଼ିଆ ଓ ଉଦ୍ୟାନ, ବସିବା ପାଇଁ ଖୋଲା ବାରଣ୍ଡା, ଭିତରେ ପ୍ରଶସ୍ତ ଘର ଇତ୍ୟାଦି ଇତ୍ୟାଦି। କିନ୍ତୁ ବାସ୍ତବରେ ନା କୌଣସି ଘର ଥାଏ, ନା କୌଣସି ମହଲା। ହେଲେ ଯେତେବେଳେ ସ୍ୱପ୍ନ ଦେଖେ ସେତେବେଳେ ଏହି ଭେଦ ଯଥାର୍ଥ ପ୍ରତୀତ ହୋଇଥାଏ। ସ୍ୱପ୍ନକାଳରେ ଏହି ଭେଦଭାବର ସାମାନ୍ୟ ମାତ୍ର ଅସତ୍ୟତା ପ୍ରତୀତ ହୁଏ ନାହିଁ।

ଏହିଭଳି ଏହି ମନ ଇନ୍ଦ୍ରିୟଙ୍କର ସହାୟତାରେ ପଦାର୍ଥର ରଚନା କରେ। ଭେଦଭାବ ରହିତ ଏହି ଆତ୍ମାରେ ହିଁ ଉତ୍ତମ, ମଧ୍ୟମ ଆଉ ଅଧମର କଳ୍ପନା କରେ। ଆଧିଭୌତିକ, ଆଧିଦୈବିକ ତଥା ଆଧ୍ୟାତ୍ମିକ ଆଦି ତ୍ରିବିଧ ଭେଦ ସ୍ଥାପିତ କରେ। ଏହା ସବୁ ମିଥ୍ୟା ହୋଇଥିଲେ ବି ବାହ୍ୟ ଆଉ ଆନ୍ତରିକ ସୁଖ ଅନୁଭବ କରିବାରେ ଲାଗେ। ବାସ୍ତବରେ ଆତ୍ମା ତ ସୁଖ-ଦୁଃଖ ରହିତ। ଦେହରେ ପରିବର୍ତ୍ତନ ହେବାକୁ ଲୋକମାନେ ଜନ୍ମ ମୃତ୍ୟୁ କହିଥାନ୍ତି। ଆଉ ଏହି ଜନ୍ମ ତଥା ମୃତ୍ୟୁ ପ୍ରତିକ୍ଷଣ ହେବାରେ ଲାଗିଥାଏ।''

ଉଦ୍ଧବ ପଚାରିଲେ, ''ପ୍ରତିକ୍ଷଣ ଜନ୍ମ-ମୃତ୍ୟୁ କିପରି ହେଉଥାଏ ? ମଣିଷ ତ ଶତାଧିକ ବର୍ଷ ପର୍ଯ୍ୟନ୍ତ ବଞ୍ଚିଥାଏ। ବୃକ୍ଷ ହଜାର ହଜାର ବର୍ଷ ଜୀବିତ ରହେ। ପ୍ରତିକ୍ଷଣ ମୃତ୍ୟୁ ତ ହୁଏ ନାହିଁ ?''

ଭଗବାନ୍ କହିଲେ, ''ହେ ଉଦ୍ଧବ! ଏ ବିଷୟ ଅତି ଗହନ। ଏହାକୁ ଅତି ଶୀଘ୍ର ଏକାଗ୍ର ମନରେ ବିଚାର କର। ଆଚ୍ଛା ଦେଖାଯାଉ, ମୃତ୍ୟୁରେ କ'ଣ ହୁଏ ? ଗୋଟିଏ ଶରୀର ବଦଳି ଯାଏ। ଜୀବାତ୍ମାର ତ ନା ମୃତ୍ୟୁ ହୁଏ ନା ଜନ୍ମ। ପୁରୁଣା ଚାଲିଯିବା ଓ ନୂଆ ଆସିଯିବା ଏହା ହିଁ ହେଉଛି ଜନ୍ମ ଆଉ ମୃତ୍ୟୁ। ଏହି ପ୍ରବାହ ନିରନ୍ତର ଲାଗି ରହିଛି। ଗଙ୍ଗା କୂଳରେ ବସିଲେ ପ୍ରତିକ୍ଷଣ ନୂଆ ନୂଆ ପାଣି ଆସୁଥାଏ, ପୁରୁଣା ପୁରୁଣା ପାଣି ବୋହିଯାଉଥାଏ। ମୂର୍ଖ ଲୋକେ ଭାବନ୍ତି, ଆମେ କାଲି ଯେଉଁ ଗଙ୍ଗାଜଳରେ ସ୍ନାନ କରିଥିଲୁ ସେହି ଜଳରେ ଆଜି ବି ସ୍ନାନ କରୁଛୁ। ସେମାନେ କାଲିର୍ ଗଙ୍ଗାଜଳ କେଉଁଆଡ଼େ ଚାଲିଯାଇଛି ତାହା ଜାଣନ୍ତି ନାହିଁ। ଦୀପର ଶିଖା କୁ ଦେଖ। ତାହା ପ୍ରତିକ୍ଷଣରେ ବଦଳୁଥାଏ। ଯେଉଁ ଶିଖା ଉଠେ ତାହା ଆକାଶରେ ବିଲୀନ ହୋଇଗଲା। ଦ୍ୱିତୀୟ ଉଠିଲା, କିନ୍ତୁ ଏହାର କ୍ରମବଦ୍ଧ ଏତେ ଶୀଘ୍ର ଉଠେ ଓ ବିଲୀନ ହୋଇଯାଏ ଯେ ତାହା ମୂର୍ଖ ଲୋକମାନେ ବୁଝିପାରନ୍ତି ନାହିଁ। ସେହି ଦୀପ କିନ୍ତୁ ସାରା ରାତି ଜଳୁଥାଏ। ବୃକ୍ଷର ଫଳକୁ ଦେଖ। ପ୍ରଥମେ ତାହା ସାନ ଥିଲା। ତାହା ବଦଳି ଗଲା। ଟିକିଏ ବଡ଼ ହେଲା, ପୁଣି ଆଉ ଟିକିଏ ବଡ଼ ହେଲା। ଏହାର ପ୍ରତିକ୍ଷଣ କିଛି କିଛି ବଦଳୁଥାଏ, କିନ୍ତୁ ଆମକୁ ଏହି ପରିବର୍ତ୍ତନ ଆଦୌ ଜଣାପଡ଼େ ନାହିଁ, ଯେ ପର୍ଯ୍ୟନ୍ତ ତାହା ପାଚି ନଯାଏ। ସେହିଭଳି ବୃକ୍ଷ। ବୀଜର ଅଙ୍କୁରୋଦ୍‌ଗମ ହୁଏ। ପ୍ରତିକ୍ଷଣ ବଢ଼ି ବଢ଼ି ଶେଷରେ ପଡ଼ିଯାଏ।

''ଏହି କାଳଚକ୍ର ଅତି ପ୍ରବଳ ବେଗରେ ଅବିଶ୍ରାନ୍ତ ଘୂରୁଛି। ଏହି କାଳ ସହିତ ତାଳ ଦେଇ ସମସ୍ତ ପ୍ରାଣୀଙ୍କ ଆୟୁ ଅବସ୍ଥା ବଦଳିବାରେ ଲାଗିଛି। ପ୍ରାଣୀମାନଙ୍କର ଶରୀରର ପରମାଣୁ ପ୍ରତିମୁହୂର୍ତ୍ତ ବଦଳିବାରେ ଲାଗିଛି। ପ୍ରାତଃକାଳର ବାଳକର ସମସ୍ତ ପରମାଣୁ ପରମୁହୂର୍ତ୍ତରେ ବଦଳି ଯାଇଥାଏ, ଓ ତୃତୀୟ ମୁହୂର୍ତ୍ତରେ ଆହୁରି ଅଧିକ ବଦଳିଯାଏ। ଅତି ଧୀରେ ଧୀରେ ବଦଳୁଥିବା ହେତୁ ଆମେ ଭାବୁଛେ ଯେ ସେ ସେହି ଦେବଦତ୍ତ ଯାହାକୁ ଆମେ ଗତ କାଲି ଦେଖିଥିଲେ। କିନ୍ତୁ ବାସ୍ତବରେ ଯେଉଁ ଦେବଦତ୍ତକୁ ଆମେ କାଲି ଦେଖିଥିଲେ, ଯା ଭିତରେ ତା'ର କେଜାଣି କେତେ ଜନ୍ମ ଓ ମରଣ ହୋଇ ଯାଇଛି। ପ୍ରତିକ୍ଷଣ ତାର ପରମାଣୁ ବଦଳିବାରେ ଲାଗିଛି। ଭ୍ରମବଶତଃ ଆମେ ଗତକାଲିର ଦେବଦତ୍ତକୁ ଆଜିର ବୋଲି କହୁଛେ।''

ଉଦ୍ଧବ ପଚାରିଲେ, ''ପ୍ରଭୁ! ଏପରି ଭ୍ରମ କାହିଁକି ହୁଏ ?''

ଭଗବାନ୍ କହିଲେ, ''ଏପରି ଭ୍ରମ ସାଦୃଶ୍ୟ ଯୋଗୁଁ ହୋଇଥାଏ। ଏକାଭଳି ବସ୍ତୁଗୁଡ଼ିକ ହୋଇଥିବାରୁ ଭ୍ରମ ଜାତ ହୁଏ। ଯେପରି ଜଳର ପ୍ରତ୍ୟେକ ଅଣୁ ଏକାଭଳି। ଆମେ କାଲି

ଯେଉଁ ଜଳରେ ସ୍ନାନକରିଥିଲେ ତାହା କେଜାଣି କେଉଁଆଡ଼େ ଚାଲିଯାଇଛି। କିନ୍ତୁ ସେ ସ୍ଥାନରେ ଠିକ୍ ସେହିପରି ଜଳ ଆସିଯାଇଛି– ଆଉ ଏଇଥି ଯୋଗୁଁ ଆମେ ଆଜିର ଜଳକୁ ସେହି (କାଲିର ଜଳ) ବୋଲି ମନେକରୁ। ରାତିରେ ଆମେ ଯେଉଁ ଦୀପର ଶିଖା ଦେଖିଥିଲେ, ତାହା କୁଆଡ଼େ ଚାଲିଯାଇଛି, କିନ୍ତୁ ତା' ସ୍ଥାନରେ ଠିକ୍ ସେହିଭଳି ଦୀପଶିଖା ଉଠୁଥିବାରୁ ଆମେ ତାକୁ ରାତିର ସେହି ଦୀପାଲୋକ ବୋଲି ମନେକରୁଥାଉ। ଦେବଦତ୍ତର ଗତ କାଲିର ଶରୀରର ପରମାଣୁ ଆଜି ଭିତରେ କେଜାଣି କେତେଥର ଯେ ବଦଳିଗଲାଣି, କିନ୍ତୁ ସାଦୃଶ୍ୟ ହୋଇଥିବାରୁ ଅଜ୍ଞାନୀ ପୁରୁଷ ଗତକାଲିର ଦେବଦତ୍ତକୁ ଆଜି ସେହି ଦେବଦତ୍ତ ବୋଲି ବୁଝୁଛି। ଏହା କହିବା ଓ ବୁଝିବା ହେଉଛି ଅଜ୍ଞତା, ମୂର୍ଖତା।''

ଉଦ୍ଧବ ପଚାରିଲେ, ''ତାହାହେଲେ ଅଜ୍ଞାନୀ ପୁରୁଷଙ୍କର ଜନ୍ମ ହୁଏ, ଜ୍ଞାନୀମାନଙ୍କର ନୁହେଁ।''

ଭଗବାନ ହସି ହସି କହିଲେ, ''ଅରେ ଭାଇ! ଅଜ୍ଞାନୀ ପୁରୁଷ ବି ସେମାନଙ୍କର କର୍ମ ରୂପ ହେତୁ ଜନ୍ମ ଗ୍ରହଣ କରନ୍ତି ନାହିଁ। ଜୀବ ହେଉଛି ଅଜର ଅମର– ଜ୍ଞାନୀ ଅଜ୍ଞାନୀର ପ୍ରଶ୍ନ ଉଠୁଛି କେଉଁଠି? ଜୀବର ତ ଜନ୍ମ ହୁଏ ନାହିଁ, ସେ ତ ନିତ୍ୟ।''

ଉଦ୍ଧବ କହିଲେ, ''ପ୍ରଭୁ! ମୁଁ ଠିକ୍ ରୂପେ ବୁଝିପାରିଲି ନାହିଁ।''

ଭଗବାନ୍ କହିଲେ, ''ଅଗ୍ନି ଯେପରି ସର୍ବବ୍ୟାପକ– ଏହା ସତ ନା ମିଛ?''

ଉଦ୍ଧବ କହିଲେ, ''ହଁ, ଅଗ୍ନି ତ ସର୍ବତ୍ର ଅଛି। ଅଗ୍ନି ନ ଥିଲେ ପ୍ରାଣୀମାନଙ୍କର ଜୀବନ ରହି ନ ଥାନ୍ତା। ସେମାନଙ୍କର ଉଦରରେ ତ ଜଠରାଗ୍ନି ଅଛି। ପ୍ରତ୍ୟେକ କାଷ୍ଠରେ ଅଗ୍ନି ବ୍ୟାପ୍ତ ଥାଏ।''

ଭଗବାନ୍ କହିଲେ, ''ଦେଖ ଉଦ୍ଧବ! ଦୁଇଟି କାଷ୍ଠ ଘର୍ଷଣରେ ଅଗ୍ନି ଉତ୍ପନ୍ନ ହୁଏ। ଯେଉଁଥିରେ ଉତ୍ପନ୍ନହୁଏ (ଯଥା କାଷ୍ଠରେ) ତାକୁ (ସେହି ଆଶ୍ରୟକୁ) ଜାଳି ପୋଡ଼ି ଦେବା ପରେ ଶାନ୍ତ ହୋଇଯାଏ। ଅଗ୍ନି ଶାନ୍ତ ହୋଇଯିବା ଅର୍ଥ କ'ଣ ଅଗ୍ନି ମରିଯିବା?''

ଉଦ୍ଧବ କହିଲେ, ''ନା ପ୍ରଭୁ! ମରିଯିବାର ପ୍ରଶ୍ନ ତ ଏଠାରେ ଉଠୁନାହିଁ। ସର୍ବବ୍ୟାପକ ଅଗ୍ନି କାଷ୍ଠ ଘର୍ଷଣ ଦ୍ୱାରା ଆବିର୍ଭାବ ହେଲା– ଏହାପରେ ଏହାର ଅଧିଷ୍ଠାନରେ ଅର୍ଥାତ୍ ବ୍ୟାପକ ଅଗ୍ନିରେ ମିଶିଗଲା। ଏହା ହେଉଛି ତିରୋଭାବ।''

ଭଗବାନ୍ କହିଲେ, ''ଜୀବଙ୍କର ଏହିଭଳି ହୋଇଥାଏ ବୋଲି ଜାଣିବା ଉଚିତ। ଦେହରେ ସଂଯୋଗ ହୋଇଯିବାରୁ କର୍ମ କରିବାରେ ଲାଗେ– ଆଉ ଏହାହିଁ ହେଉଛି ଜନ୍ମ ହେବା। ଗୋଟିଏ ଶରୀରକୁ ଛାଡ଼ି ଆଉ ଗୋଟିଏକୁ ଚାଲିଯିବା ହେଉଛି ମୃତ୍ୟୁ। ଶରୀର ଧାରଣ କରିବା ପରେ ବି ଏହାର ଅବସ୍ଥା ବଦଳିବାରେ ଲାଗେ। ଶରୀର ତ ପ୍ରତିକ୍ଷଣ ବଦଳୁଥାଏ। କିନ୍ତୁ ଶରୀରର ନ'ଟି ଅବସ୍ଥା ବହୁତ ପ୍ରସିଦ୍ଧ। ପ୍ରତିକ୍ଷଣ ପରିବର୍ତ୍ତନକୁ ଜ୍ଞାନୀମାନେ ହିଁ ଅନୁଭବ କରିପାରନ୍ତି। ହେଲେ ନ'ଟି ଅବସ୍ଥାକୁ ପ୍ରତ୍ୟେକ ଅନୁଭବ କରନ୍ତି।''

ଉଦ୍ଧବ ପଚାରିଲେ, ''ଭଗବନ୍! ସେ ନ'ଟି ଅବସ୍ଥା କ'ଣ କ'ଣ?''

ଭଗବାନ୍ କହିଲେ, ''ପ୍ରତ୍ୟେକ ପ୍ରାଣୀର ଏହି ନ'ଟି ଅବସ୍ଥା ସମସ୍ତେ ଜାଣନ୍ତି। ଏଥି ମଧ୍ୟରୁ ସର୍ବପ୍ରଥମ ହେଉଛି ଗର୍ଭ-ପ୍ରବେଶ।

(୧) ଗର୍ଭ-ପ୍ରବେଶ : ମାତା-ପିତାଙ୍କ ରଜ ବୀର୍ଯ୍ୟର ସଂଯୋଗରେ ଯେଉଁ ଗର୍ଭ ରହେ, ସେହି ସମୟ ଜନ୍ମ ନେବାକୁ ଯାଉଥିବା ଜୀବ ସଂସ୍କାର ରୂପରେ ପ୍ରବେଶ କରିଯାଏ । ସଂସ୍କାର ରୂପରେ ଯଦି ପ୍ରବେଶ ନ କରେ ତେବେ ଗର୍ଭର ବୃଦ୍ଧି ହେବ ନାହିଁ । ଏଣୁ ଗର୍ଭ-ପ୍ରବେଶ ପର-କ୍ଷଣରେ ଗର୍ଭବୃଦ୍ଧି ହୁଏ ।

(୨) ଗର୍ଭବୃଦ୍ଧି :- ଗର୍ଭବୃଦ୍ଧିକୁ ସମସ୍ତେ ଜାଣନ୍ତି । ଏବେ ମାସେ ହେଲା, ଦୁଇମାସ ହେଲା । ଗର୍ଭ ଯେତେ ବଢୁଥାଏ ମାତାର ଉଦର ତଦନୁରୂପ ବଢ଼ିବାରେ ଲାଗେ । ଏହି ଉଦରବୃଦ୍ଧିରୁ ଗର୍ଭର ସମୟ ଜଣାଯାଏ । ଗର୍ଭ ଯେତେବେଳେ ପୂର୍ଣ୍ଣ ହୋଇଯାଏ, ନ ମାସ ପ୍ରରେ ୧୦-୧୧ ମାସ ପରେ ଉଦରସ୍ଥ ଶିଶୁ ଉଦର ବାହାରକୁ ଆସେ । ଆଉ ଏହାକୁ ହିଁ ଜନ୍ମ କୁହାଯାଏ ।

(୩) ଜନ୍ମ :- ଗର୍ଭ ପୂର୍ଣ୍ଣ ହୋଇଯିବା ପରେ ପ୍ରସୂତିମାତା ଗର୍ଭକୁ ବାହାର କରିଦିଏ । ସେତେବେଳେ ମାତାକୁ ଖୁବ୍ କଷ୍ଟ ହୁଏ । ଶିଶୁ ମୂର୍ଚ୍ଛିତ ଅବସ୍ଥାରେ କୌଣସି ପ୍ରକାର ବାହାରି ଆସେ । ଯେ ପର୍ଯ୍ୟନ୍ତ ଗର୍ଭରେ ଥିଲା, ସେ ପର୍ଯ୍ୟନ୍ତ ଲୋକମାନେ ତାକୁ ଗର୍ଭବୋଲି କହୁଥିଲେ । ବାହାରକୁ ଆସିଗଲା ପରେ ତାର ଶିଶୁ ସଂଜ୍ଞା ହୋଇଯାଏ । ଏବେ ତାର ଗଣନା କାଳକୁ ବାଲ୍ୟକାଳ କୁହାଯାଏ ।

(୪) ବାଲ୍ୟାବସ୍ଥା :- ଜନ୍ମ ପରଠାରୁ ଯେ ପର୍ଯ୍ୟନ୍ତ ଶିଶୁ ଖେଳୁଥାଏ ତାକୁ ବାଲ୍ୟାବସ୍ଥା କୁହାଯାଏ । ସାଧାରଣତଃ ଏହା ଶିଶୁକୁ ୫ ବର୍ଷ ବୟସ ପର୍ଯ୍ୟନ୍ତ ହୋଇଥାଏ । ୫ ବର୍ଷ ପରର ଶିଶୁ କିଛି ବୁଝିପାରେ, ପଢାଲେଖା ଆରମ୍ଭ କରେ, ତାକୁ କୁମାରାବସ୍ଥା କୁହାଯାଏ ।

(୫) କୌମାର :- ୫ ବର୍ଷରୁ ୧୫ ବର୍ଷ ପର୍ଯ୍ୟନ୍ତର ଅବସ୍ଥାକୁ କୁମାରବସ୍ଥା କୁହାଯାଏ । ବାଲ୍ୟକାଳ ଓ ଯୌବନର ଏହା ମଧ୍ୟାବସ୍ଥା । ଏହି ଅବସ୍ଥାରେ, ବାଳକାବସ୍ଥାର ନା ଅଜ୍ଞାନ ଥାଏ ନା ପରିପକ୍ୱ ଜ୍ଞାନ । ଏହା ହେଉଛି ଉନ୍ନତିର ସମୟ । ଏହା ପରେ ପରେ ଯୁବାବସ୍ଥା ଆସିଯାଏ ।

(୬) ଯୌବନ :- ୧୫ ରୁ ୪୦ ବର୍ଷ ବୟସ ହେଉଛି ଯୌବନାବସ୍ଥା । ଏହି ଅବସ୍ଥାରେ ପ୍ରତ୍ୟେକ ଅଙ୍ଗପ୍ରତ୍ୟେଙ୍ଗରେ ଉତ୍ସାହ ଜାତ ହୁଏ । ଭୋଗ ନିମନ୍ତେ ରୁଚି, ଆଗ୍ରହ ଅଧିକ ହୁଏ । ଯୁବାବସ୍ଥାରେ ପ୍ରାୟ ସମସ୍ତେ ମଦମତ୍ତ ହୁଅନ୍ତି । ଯଦି କେହି ମଦମତ୍ତ ନ ହୁଏ ତେବେ ସେ ହୁଏତ ନପୁଂସକ ହୋଇଥାଏ ଅଥବା ମହାପୁରୁଷ । ଏହା ପରେ ବୃଦ୍ଧି ଅଟକି ଯାଏ । ଶରୀର ଶକ୍ତି କ୍ରମେ କ୍ଷୀଣ ହେବାରେ ଲାଗେ । ଏହି ଅବସ୍ଥା ଯୁବାବସ୍ଥା ଓ ବୃଦ୍ଧାବସ୍ଥାର ମଝି ସମୟରେ, ଅର୍ଥାତ୍ ପ୍ରୌଢାବସ୍ଥାରେ ହୋଇଥାଏ ।

(୭) ପ୍ରୌଢାବସ୍ଥା :- ୪୦/୫୦ ବର୍ଷ ପରେ ପରେ ଇନ୍ଦ୍ରିୟଙ୍କ ଶକ୍ତି ହ୍ରାସ ହେବାରେ ଲାଗେ, ବାଳ ପାଚିବା ଆରମ୍ଭ କରେ, ଦାନ୍ତର ମାଢ଼ି ଦୁର୍ବଳ ହୋଇଯାଏ । ଶରୀର କ୍ରମଶଃ ଶକ୍ତି-ରହିତ ହୋଇଆସେ ଓ ଭୋଗ ଉପଭୋଗ କରିବାର ସାମର୍ଥ୍ୟ ଥିଲେ ବି ଯୌବନ ସମୟର ଉତ୍ସାହ କମିଯାଇଥାଏ । ମନର ସ୍ଫୂର୍ତ୍ତି ହ୍ରାସ ପାଇଁଯାଇଥାଏ । ଏପରି ଅବସ୍ଥାକୁ ପ୍ରୌଢାବସ୍ଥା କୁହାଯାଏ । ଏହା ବୃଦ୍ଧାବସ୍ଥାର ପ୍ରବେଶ ଦ୍ୱାର ।

(୮) ବୃଦ୍ଧାବସ୍ଥା :- ପ୍ରୌଢାବସ୍ଥାର ପରବର୍ତ୍ତୀ ଅବସ୍ଥା ହେଉଛି ବୃଦ୍ଧାବସ୍ଥା । ୬୦/୬୫ ବର୍ଷ ବେଳକୁ ସମସ୍ତେ ବୁଢା ହୋଇଯାଇଥାନ୍ତି । ସେତେବେଳକୁ ବାଳ ପାଚି ଝଡ଼ିଯାଇଥାଏ,

ଦାନ୍ତ ପଡ଼ିଯାଇଥାଏ, ମୁହଁର ଚମ କୁଞ୍ଚ କୁଞ୍ଚ ହୋଇଯାଇଥାଏ, ଟାଣ ବସ୍ତୁ ଦାନ୍ତରେ ଚୋବାଇ ହୁଏନାହିଁ। ଏହି ସମୟ ପାଚିଲା ଫଳର ସମୟ ଭଳି। ଜୀବନର ଦିନ ସରି ଆସୁଥାଏ। ପାଚନ ଶକ୍ତି ବି ମନ୍ଦ ହୋଇଯାଇଥାଏ। ଏପରି ଅବସ୍ଥାରେ ଦିନେ ମଣିଷର ରାମ ରାମ ସତ୍ୟ ହୋଇଯାଏ।

(୯) ମୃତ୍ୟୁ :- ପ୍ରାଣର ଗତି ବନ୍ଦ ହୋଇଯିବା ମାତ୍ରେ, ଜୀବାତ୍ମା ଶରୀରରୁ ପୃଥକ୍ ହୋଇଯାଏ, ଆଉ ଦେହ ସେତେବେଳେ ମାଟିଭଳି ହୋଇଯାଏ। ଏହାପରେ କେହି ଶରୀରକୁ ଆଉ ଘରେ ରଖନ୍ତି ନାହିଁ। ତାକୁ ଅଗ୍ନିରେ ପୋଡ଼ି ଦିଅନ୍ତି, ମାଟି ଭିତରେ ପୋତି ଦିଅନ୍ତି, ଅଥବା ଘନ ଜଙ୍ଗଲ କିମ୍ବା ନଦୀରେ ପକାଇ ଦିଅନ୍ତି। ଶରୀରର ଏପରି ନଅଟି ଅବସ୍ଥା ଦେଖାଯାଏ। ଜୀବ କିନ୍ତୁ ଅପରିବର୍ତ୍ତନଶୀଳ। ସେ ନା ଜନ୍ମ ଗ୍ରହଣ କରେ ନା ମରେ। ସେ ନା ଶିଶୁ ହୁଏ ନା କିଶୋର, ଯୁବକ, ପ୍ରୌଢ ବା ବୃଦ୍ଧ। ଏ ସମସ୍ତ ହେଉଛି ଦେହର ଅବସ୍ଥା।''

ଉଦ୍ଧବ ପଚାରିଲେ, ''ଭଗବନ୍! ତେବେ, ମୁଁ– ବାଳକ, ବୃଦ୍ଧ, ଯୁବକ ବୋଲି କହେ କିଏ ? ଦେହ ପରା ଜଡ଼, ଜଡ଼ କହିବ କିପରି ?''

ଭଗବାନ୍ କହିଲେ, ''ଏହି ଜୀବ ହିଁ କହିଥାଏ ; କିନ୍ତୁ ଶରୀର ସହିତ ମିଥ୍ୟାଭିନିବେଶ ହୋଇଥିବା ହେତୁ କହିଥାଏ ; ଯେପରି ଜଣଙ୍କର ତା ଘର ପ୍ରତି ଅତ୍ୟନ୍ତ ଆସକ୍ତି ହୋଇଯାଇଛି, କେହି ତା ଘରଟିକୁ ପୋଡ଼ି ନଷ୍ଟ କରିଦେଲା, ସେତେବେଳେ ସେ କାନ୍ଦି କାନ୍ଦି କହେ– 'ମୁଁ ନଷ୍ଟ ହୋଇଗଲି, ମୁଁ ଭାସିଗଲି' ଇତ୍ୟାଦି। ଯଦିଓ ଏପରି କହୁଥିବା ଲୋକଠାରୁ ଗୃହ ପୃଥକ। ଇଟା ଚୂନର ଘର ନଷ୍ଟ ହୋଇଯିବା ଦ୍ୱାରା ସେ ନିଶ୍ଚୟ ନଷ୍ଟ ହୁଏ ନାହିଁ, କିନ୍ତୁ ସେ ତା ଘର ଉପରେ ମିଥ୍ୟାଭିନିବେଶ ସ୍ଥାପିତ କରି ରଖିଥିଲା। ଘରଟି ନଷ୍ଟ ହୋଇଯିବାରୁ ସେ ନିଜେ ନଷ୍ଟ ହୋଇଯାଇଛି ବୋଲି ମନେକଲା। ଠିକ୍ ଏହିଭଳି ଜୀବାତ୍ମାଠାରୁ ଶରୀର ପୃଥକଶିଶୁଠାରୁ ବୃଦ୍ଧାବସ୍ଥା କେବଳ ମନୋରଥମୟୀ– ତେବେ ବି ଗୁଣର ସଂଗରେ ଅଜ୍ଞାନ ବଶତଃ ଏହିସବୁ ଅବସ୍ଥାକୁ ନିଜର ବୋଲି ମନେ କରି 'ମୁଁ ବୁଢା ହୋଇଗଲି, ମୁଁ ଯୁବକ, ମୁଁ ମଣିଷ, ମୁଁ ଗନ୍ଧର୍ବ' ଏପରି ଅଭିମାନ କରିବାରେ ଲାଗେ। ଏହି ଅଜ୍ଞାନ ହେତୁ ହିଁ ନାନା ଯୋନିକୁ ଯିବାକୁ ହୋଇଥାଏ।''

ଉଦ୍ଧବ କହିଲେ, ''ପ୍ରଭୁ! ତେବେ ଜୀବକୁ ସବୁବେଳେ ହିନସ୍ତା ହେବାକୁ ହିଁ ପଡ଼ିଥାଏ ?''

ଭଗବାନ୍ କହିଲେ, ''ନା, ସବୁବେଳେ ଏପରି ହିନସ୍ତା ହେବାକୁ ପଡ଼େନାହିଁ। ଯେ ପର୍ଯ୍ୟନ୍ତ ଅଜ୍ଞାନ ଥାଏ ସେ ପର୍ଯ୍ୟନ୍ତ ହିନସ୍ତା ହେବାକୁ ପଡ଼େ। ମିଥ୍ୟାକୁ ନିଜ ଭିତରେ ସତ୍ୟ ବୋଲି ମନେକରି ଆରୋପ କରିଦେଇ ଥାଏ। ବିବେକ ଯେତେବେଳେ ହୋଇଯିବ ଓ ଜୀବାତ୍ମାର ଭିନ୍ନତାର ଯଥାର୍ଥ ଜ୍ଞାନ ହୋଇଯିବ, ତେବେ ଏହି ଆବାଗମନ ନଷ୍ଟ ହୋଇଯିବ। ନିଜକୁ ଏ ସମସ୍ତ ଅବସ୍ଥାରୁ ପୃଥକ ଅନୁଭବ କରିବାରେ ଲାଗିବ।''

ଉଦ୍ଧବ ପଚାରିଲେ, ''ଭଗବନ୍! ବିବେକ କାହାକୁ କୁହନ୍ତି ?''

ଭଗବାନ୍ କହିଲେ, ''ବିବେକ ହୋଇଥାଏ ବିଚାରରେ। ସମସ୍ତ ଘଟଣାକୁ ଦେଖି ପରିଣାମ ସଂକ୍ରାନ୍ତରେ ବିଚାର କରିବା। ଜୀବମାନଙ୍କର ନାନା ଗତିକୁ ବିଚାର କର ; ଦେହ ଓ ଦେହୀର ବିଚାର କର– ଏହା କଲେ ଯଥାର୍ଥ ଜ୍ଞାନ ହୋଇଯିବ। ଏବେ ମୁଁ ତୁମକୁ ଭଲ କରି ବୁଝାଉଛି, ଶୁଣ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ଏବେ ଭଗବାନ୍ ଯେଉଁଭଳି ସତ୍-ଅସତ୍‌ର ବିବେକର ବର୍ଣ୍ଣନ କରିବେ ସେହି ପ୍ରସଙ୍ଗ ଆପଣମାନଙ୍କୁ କହିବି।''

**ଛପ୍‌ପୟ**

କରେ ସ୍ୱପ୍ନମହଁ ଭେଦଭାବ ଜ୍ୟୋ ବହୁ ବିଧି ପ୍ରାନୀ।
ତ୍ୟୋ ଆଶ୍ରୟ କରି କରଣ ବନୈ ଆତ୍ମା ଅଜ୍ଞାନୀ॥
ପ୍ରତିପଲ ହୋବୈ ଜନମ ମରନ ମୂରଖ ନହିଁ ଜାନୈ।
ପରିବର୍ତ୍ତିତ ତନୁ ହୋହି ଅବୁଧ ନିତ ନହିଁ ପହିଚାନୈ॥
ଗରଭ, ବୃଦ୍ଧ, ଉତପତ୍ତି, ଶିଶୁ, କୁମର, ଯୁବକ, ପୁନି ପ୍ରୌଢ଼ ବାୟ।
ଜରା, ମରନ, ନବ ଅବସ୍ଥା, ତନୁକୀ ଜୀବ ସଦା ଅଭୟ॥



# ସତ୍-ଅସତ୍‌ର ବିବେକ

**ତରୋର୍ବୀଜବିପାକାଭ୍ୟାଂ ଯୋ ବିଦ୍ୱାଞ୍ଜନ୍ମସଂୟମୌ।**
**ତରୋର୍ବିଲକ୍ଷଣୋ ଦ୍ରଷ୍ଟା ଏବଂ ଦ୍ରଷ୍ଟା ତନୋଃ ପୃଥକ୍॥ ★**

[ଶ୍ରୀଭା.୧୧ସ୍କ.୨୨ଅ. ୪୯ଶ୍ଳୋକ]

**ଛପ୍‌ପୟ**

ବୋୟୌ ପୌଧା ଭୟୋ କାଟି କେ ବୀଜ ନିକାରୌ।
ଦ୍ରଷ୍ଟା ଇନତୈ ପୃଥକ୍ ଜୀବ ତ୍ୟୌ ତନୁ ତୈ ନ୍ୟାରୌ॥
ପ୍ରକୃତି ପୁରୁଷ କୋ ଭେଦ ସମୁଝି ଜେ ନହୀଂ ବିଚାରୈ।
ଭଟକୈ ଯୋନିନି ମାଁହି, ମରୈ ପୁନି ପୁନି ତନୁ ଧାରୈ॥
ଟାଇ ମାଇ ଶିଶୁ କରୈ, କହୈ ଭୂମି ଘୂମୈ ଫିରୈ।
ତ୍ୟୋ କର୍ତ୍ତା ନହିଁ,ଜୀବ ହୈ, ଭ୍ରମ ବଶ ଚକ୍‌କର ମହଁ ପରୈ॥

ଗୋଟିଏ କାହାଣୀ। ଜଣେ ରାଜା ଥିଲେ। ସେ ବିଷୟରେ ପୂରା ବୁଡ଼ି ରହିଥିଲେ। ଦିନେ ତାଙ୍କର ଗୁରୁ ରାଜାଙ୍କ ପାଖକୁ ଆସି କହିଲେ, ''ରାଜନ୍! ଆପଣ ବୃଦ୍ଧାବସ୍ଥାରେ ପଦାର୍ପଣ କଲେଣି। ଏଥର ପୁଅକୁ ରାଜ୍ୟ ଦେଇ ଆପଣ ବଣକୁ ଯାଇ ତପସ୍ୟା କରନ୍ତୁ।''

ରାଜା କହିଲେ, ''ଭଗବନ୍! ମୋର ଏପରି ଇଚ୍ଛା ବି ତ ହେଉଛି, ଏହି ଝଂଝଟ ଛାଡ଼ି ପଳାଇବା ପାଇଁ ଉପାୟ ତ ଖୋଜୁଛି, ହେଲେ କ'ଣ କରିବି ଯେ, ଲୋକମାନେ

---



| | | | |
|---|---|---|---|
| ଆତ୍ମାର ଜନ୍ମ ମୃତ୍ୟୁ ନାହିଁ | । | ଦେହରୁ ବିଲକ୍ଷଣ ସେହି | ॥ |
| ଯେସନେ ବୀଜୁଁ ବୃକ୍ଷ ଜାତ | । | ସେ ବୀଜ ପୁଣି ବୃକ୍ଷେ ସ୍ଥିତ | ॥ |
| ବିପାକେ ଜନ୍ମମୃତ୍ୟୁ ନାହିଁ | । | ବୀଜର ଜନ୍ମମୃତ୍ୟୁ କାହିଁ | ॥ |
| ବୃକ୍ଷରୁ ବୀଜ ବିଲକ୍ଷଣ | । | ସେ ରୂପେ ଦେହୁଁ ଆତ୍ମା ଭିନ୍ନ | ॥ |

[ଭାଗବତ : ଜଗନ୍ନାଥ ଦାସ : ୧୧ ସ୍କନ୍ଧ, ୨୩ ଅ]

ମୋତେ ପରା ଆଦୌ ଛାଡୁ ନାହାନ୍ତି। ରାଜକୁମାର ବଡ଼ ହୋଇଗଲାଣି ସତ, ମାତ୍ର ମୁଁ ଯେତେବେଳେ ଯିବା କଥା କହୁଛି, ସେ ଅଥୟ ହୋଇ କାନ୍ଦିବାରେ ଲାଗୁଛି। କାନ୍ଦି କାନ୍ଦି ପରା ମୂର୍ଚ୍ଛା ହୋଇଯାଉଛି। ପ୍ରଜାମାନେ ବି ଚାହୁଁ ନାହାନ୍ତି। ବୁଢ଼ାମନ୍ତ୍ରୀ ମରିଯିବା ପରେ ତାଙ୍କ ପୁଅ ମନ୍ତ୍ରୀ ହୋଇଛି। ସେ ବୁଦ୍ଧିମାନ ସତ, ସେ ବି କାର୍ଯ୍ୟକୁଶଳ, ସବୁ କାମ ବସ୍ତୁତଃ ସେ କରୁଛି, ହେଲେ ସେ ସବୁବେଳେ ମୋତେ ହିଁ ଆବଶ୍ୟକ କରୁଛି। ଏପରି ପରିସ୍ଥିତିରେ ମୁଁ ତ ଆଦୌ ତପସ୍ୟା ପାଇଁ ବାହାରି ପାରୁନାହିଁ। ମୋତେ କେହି ଛାଡୁ ନାହାନ୍ତି। ଅନ୍ୟଙ୍କୁ କଷ୍ଟ ଦେଇ ତପସ୍ୟା କରିବାକୁ ଗଲେ କି ଲାଭ ମିଳିବ ?''

ଏପରି କଥା ଶୁଣି ଗୁରୁଦେବ ଚୁପ୍ ହୋଇଗଲେ। ରାଜା ବିଷୟରେ ଅତି ଆସକ୍ତ ହୋଇଯାଇଥିବା ହେତୁ ନିଜର କର୍ତ୍ତବ୍ୟକୁ ଭୁଲିଯାଉଛନ୍ତି– ଏହା ବୁଝିବାକୁ ଗୁରୁଦେବଙ୍କୁ ବେଶୀ ସମୟ ଲାଗିଲା ନାହିଁ। **ତ୍ୟାଗ କରିବା ଉଦ୍ଦେଶ୍ୟରେ ହିଁ ଗ୍ରହଣ କରାଯାଇଥାଏ। ଯିଏ ଏହି କଥାକୁ ଭୁଲି ଗ୍ରହଣ କରିଥିବା ଦ୍ରବ୍ୟ ସହିତ ଓତପ୍ରୋତ ବିଜଡ଼ିତ ହୋଇଯାଏ, ସ୍ୱେଚ୍ଛାରେ ତାହାର ପରିତ୍ୟାଗ କରେନାହିଁ, ସମସ୍ତ ଦିନେ ବାଧହୋଇ ତାକୁ ତ୍ୟାଗ କରିବା ପାଇଁ ପଡ଼ିଥାଏ।** ସ୍ୱେଚ୍ଛାରେ ତ୍ୟାଗ କଲେ ସୁଖ ମିଳେ ; ବିବଶ ହୋଇ ବଳପୂର୍ବକ ପର ଇଚ୍ଛାରେ ତ୍ୟାଗ କଲେ ଦୁଃଖ ହୁଏ। ଏପରି ରାଜାକୁ ଉପଦେଶ ଦେବା ଉଚିତ ହେବ।

ଏପରି ଭାବି ଭାବି ଗୁରୁଦେବ କିଛି ବାଟ ଚାଲିଗଲେ। ଗୋଟିଏ ବିରାଟ ଝଙ୍କାଳିଆ ଗଛ ଥିଲା। ଗୁରୁଦେବ ସେହି ଗଛକୁ କୁଣ୍ଢାଇ ଧରିଲେ। ଦି'ପହର ହେଲା। କ୍ଷେତ ବାଡ଼ିରେ କାମ କରୁଥିବା ଲୋକମାନେ ଭୋଜନ ପାଇଁ ଘରକୁ ଚାଲିଲେ। ସେମାନେ ଏପରି ଦୃଶ୍ୟ ଦେଖି ରାଜାଙ୍କ ପାଖକୁ ଦୌଡ଼ିଲେ। ଲୋକମାନେ କହିଲେ, ''ଗୁରୁଦେବ ପରା ସକାଳୁ ଗୋଟିଏ ଗଛକୁ କୁଣ୍ଢାଇ ଠିଆ ହୋଇଛନ୍ତି। ଆପଣ ଚାଲନ୍ତୁ। ସେ କାହା କଥା ବି ଶୁଣୁନାହାନ୍ତି।''

ରାଜା ଏପରି କଥା ଶୁଣି ଲୋକମାନଙ୍କ ସହିତ ଗୁରୁଦେବଙ୍କ ପାଖକୁ ଗଲେ। ଗୁରୁଦେବ ଗଛକୁ କୁଣ୍ଢାଇ ଧରି ଠିଆ ହୋଇଥିବା ଦୃଶ୍ୟ ଦେଖିଲେ। ରାଜା ଓ ଲୋକମାନେ କହିଲେ, ''ଗୁରୁଦେବ! ଘରକୁ ଚାଲନ୍ତୁ। ଭୋଜନ ସମୟ ହୋଇଗଲାଣି।'' ଏମିତି ଅନେକ ପ୍ରକାର କହିଲେ। ହେଲେ ଅନେକ ସମୟ ପର୍ଯ୍ୟନ୍ତ ସେ କାହାକୁ କିଛି କହିଲେ ନାହିଁ। ରାଜା କାକୁତି ମିନତି କରିବା ପରେ ଗୁରୁଦେବ କହିଲେ, '' ଆରେ, ଯିବି କିମିତି ! ମୁଁ ଯିବାକୁ ଚାହୁଁଛି, ହେଲେ ଯାଇପାରୁନାହିଁ। ଗଛଟା ପରା ମୋତେ ଜାବୋଡ଼ି ଧରିଛି।'' ଲୋକମାନେ ଗୁରୁଦେବଙ୍କୁ ବୁଝାଇବାରେ ଲାଗିଥାନ୍ତି, ପ୍ରାର୍ଥନା କରୁଥାନ୍ତି। ହେଲେ ଗୁରୁଦେବ କାହା କଥା ଶୁଣୁ ନ ଥାନ୍ତି। ଏଥର ରାଜା କହିଲେ ''ଗୁରୁଦେବ ! ଆପଣ ଇମିତି ଗଛଟାକୁ କୁଣ୍ଢାଇ ଧରିଛନ୍ତି କାହିଁକି ? ଗଛଟାକୁ ଛାଡ଼ି ଦିଅନ୍ତୁ।''

ଗୁରୁଦେବ କହିଲେ, ''ରାଜନ୍ ! ଛାଡ଼ିଦେବାକୁ ତ ମୋର ଇଚ୍ଛା ହେଉଛି। ହେଲେ ମୋର ଇଚ୍ଛାରେ ଯାଏ ଆସେ କେତେ। ଗଛଟା ପରା ମୋତେ ଛାଡୁ ନାହିଁ।''

ଏପରି କଥା ଶୁଣି ରାଜା ହସିବାରେ ଲାଗିଲେ ଏବଂ କହିଲେ,''ଭଗବନ୍ ! ଆପଣ ଗଛକୁ କୁଣ୍ଢାଇ ଧରିଛନ୍ତି ! ଗଛ ଆପଣଙ୍କୁ କେଉଁଠି ଧରିଛି ? ଆପଣ ତାକୁ ଛାଡ଼ିଦିଅନ୍ତୁ, ଗଛ ଆପଣଙ୍କଠାରୁ ପୃଥକ୍ ହୋଇଯିବ।''

ଗୁରୁଦେବ କହିଲେ,''ରାଜନ୍ ! ଗୁରୁ ହୋଇ ତୁମେ ମୋତେ ଯେଉଁ ଉପଦେଶ ଦେଉଛ ତାହା ତୁମେ କାହିଁକି ବ୍ୟବହାରରେ କରୁନାହଁ ? ରାଜ୍ୟକୁ ତୁମେ ଜାବୋଡ଼ି ଧରିଛ ନା ରାଜ୍ୟ

ତୁମକୁ ଜାବୋଡ଼ି ଧରିଛି ? ତୁମେ ହୃଦୟରେ ତ୍ୟାଗର ଭାବନା କର। ଆଜି ଏଇ ମୁହୂର୍ତ୍ତରେ ରାଜ୍ୟ ଛାଡ଼ି ପାରିବ। ତୁମେ ନିଜେ ବିଷୟରେ ବାନ୍ଧି ହୋଇଯାଇଛ, ଆଉ ଏଣେ କହୁଛ କ'ଣ ନା' ମୋତେ ପ୍ରଜାମାନେ ଛାଡୁ ନାହାନ୍ତି; ମୋ ବିନା ରାଜ୍ୟ ଚାଲିବ କିପରି ? ଅରେ, କାହାର ଅଭାବରେ କୌଣସି କାମ ଅଟକି ରହିଯାଏ ନାହିଁ। କରିକରାଉଥାନ୍ତି କେବଳ ଶ୍ରୀହରି। ମଣିଷ ନିମିତ୍ତ ମାତ୍ର। ତାକୁ ତା' କର୍ତ୍ତବ୍ୟରୁ ବିଚ୍ୟୁତ ହେବା ଅନୁଚିତ।''

ଗୁରୁଙ୍କଠାରୁ ଯଥା ସମୟରେ ଉପଯୁକ୍ତ ଶିକ୍ଷା ପାଇ ରାଜାଙ୍କର ମୁଣ୍ଡରେ ହେଜ ପଶିଲା। ସେ ସଂଗେ ସଂଗେ ରାଜ୍ୟ ଛାଡ଼ି ତପସ୍ୟା ପାଇଁ ବାହାରି ପଡ଼ିଲେ।

ମହାପ୍ରାଜ୍ଞ ସୂତ କହୁଛନ୍ତି– ହେ ମୁନିଗଣ। ଏହି ସତ୍-ଅସତ୍‌ର ବିବେକର ଉପଦେଶ ଦେବାକୁ ଯାଇ ଭଗବାନ୍ ଉଦ୍ଧବଙ୍କୁ କହିଲେ, ''ହେ ଉଦ୍ଧବ! ଯିଏ ଜନ୍ମ ହୋଇଛି ସେ ମରିବ, ଯିଏ ମରିଛି ସେ ଜନ୍ମିବ। ଏହାର ଶିକ୍ଷା ସ୍ୱୟଂ ଆହରଣ କରିବା ଉଚିତ୍। ନିଜର ଜନ୍ମ ମନେରହେ ନାହିଁ, କିନ୍ତୁ ନିଜ ଘରେ କେତେ ପିଲା ଜନ୍ମ ହୁଅନ୍ତି। ଗୋଟିଏ ପିତାର ପୁତ୍ର ହୁଅନ୍ତି। ପୁଅ ଜନମ ହେବା ଦେଖି ପିତା ଅନୁମାନ କରିଦେବା ଉଚିତ ଯେ, ଆମେ ମଧ୍ୟ ଏହିପରି ଆମ ମାତା-ପିତାଙ୍କ ଘରେ ଦିନେ ଉତ୍ପନ୍ନ ହୋଇଥିଲେ। ନିଜ ପିତାଙ୍କର ସଂପର୍କୀୟଙ୍କ ମରଣ ଦେଖି ଅନୁମାନ କରିନେବା ଉଚିତ ଯେ, ଦିନେ ଆମର ବି ଗତି ଏହଭଳି ହେବ। ପୁଣି ଜନ୍ମ କ'ଣ ମୃତ୍ୟୁ କ'ଣ ତାହା ଜାଣିନେବା ଉଚିତ। ଗୋଟିଏ ଶରୀରକୁ ଅହଂକାରପୂର୍ବକ ସ୍ୱୀକାର କରିନେବା ହେଉଛି ଜନ୍ମ। ପୂର୍ବ ଶରୀରର କଥାକୁ ସର୍ବଥା ଭୁଲି ଯିବା ହେଉଛି ମୃତ୍ୟୁ। ଆଉ ଇଏ ଜନ୍ମହେଲା, ଇଏ ମଲା, ଏହା ଜାଣିବା ଲୋକ ହେଉଛି ପୃଥକ୍। ଏହିଭଳି ଜନ୍ମ-ମରଣ ରୂପୀ ଧର୍ମର ଜ୍ଞାତା ଜୀବ ଜନ୍ମ-ମରଣ ଉଭୟର ସହିତ କେବଳ ସାକ୍ଷୀମାତ୍ର ଅଟେ। ଏହି ପ୍ରସଙ୍ଗରେ ଗୋଟିଏ ଉଦାହରଣ ଶୁଣ।

ଯେପରି ଜଣେ ଚାଷୀ। ବିହନ ନିଏ, କ୍ଷେତରେ ବୁଣେ। ତହିଁରୁ ଅଙ୍କୁର ହୁଏ, ଫଳ ଧରି ପାଚେ ଓ ଚାଷୀ କାଟେ। ଉତ୍ପତ୍ତି ଓ ପାଚିବା ପରେ କଟାହେବା- ଏହି ଦୁଇ କଥା ହେଲା ବୀଜର। ଏ ସବୁର ଦର୍ଶନକାରୀ ପୃଥକ ଥାଏ। ସେ ହେଉଛି ଚାଷୀ। ଠିକ୍ ସେହିଭଳି ଜନ୍ମ ଆଉ ମୃତ୍ୟୁ ଏହା ହେଉଛି ଦେହର ଅବସ୍ଥା। ଏହାର ସାକ୍ଷୀ ଜୀବାତ୍ମା ତ ଏ ସବୁ ଅବସ୍ଥାରୁ ଭିନ୍ନ ଥାଏ। ସେ ତ କେବଳ ଦ୍ରଷ୍ଟା। କିନ୍ତୁ ଯେତେବେଳେ ଅହଂଭାବ କାରଣରୁ ସେ ଦେହ ସହିତ ଅତ୍ୟନ୍ତ ଆସକ୍ତ ହୋଇଯାଏ, ସେତେବେଳେ ଜନ୍ମ ମରଣାଦି ଅବସ୍ଥାକୁ ନିଜଠାରେ ଆରୋପିତ କରିଦିଏ।''

ଉଦ୍ଧବ ପଚାରିଲେ, ''ଭଗବନ୍! ଅହଂକାର ହେତୁ ବିମୂଢ଼ ହୋଇପଡ଼ିଥିବା ଏହି ଅବିବେକୀ ଜୀବ କେଉଁ କେଉଁ ଠାରେ ଭ୍ରମୁଥାଏ ? ସେ ଭିନ୍ନ ଭିନ୍ନ ଯୋନିକୁ ଯାଏ କିପରି ?

ଭଗବାନ୍ କହିଲେ, ''ହେ ଉଦ୍ଧବ! ନିତ୍ୟ ଶୁଦ୍ଧ ଆତ୍ମାରେ ତ ଯିବା ଆସିବା ହୋଇପାରେ ନାହିଁ। ଯେତେବେଳେ ଦେହର ସଂସର୍ଗରେ ସେ କର୍ମସମୂହକୁ ନିଜେ କରିଥାଏ ବୋଲି ଭାବେ ସେତେବେଳେ ତାକୁ ତା'ର ଫଳ ବି ଭୋଗ କରିବାକୁ ପଡ଼ିଥାଏ।

ଉଦ୍ଧବ କହିଲେ,'' ଭଗବନ୍! ଯାହା ମିଥ୍ୟା ବସ୍ତୁ ତାହାର ପୁଣି ଫଳ ଭୋଗ କରିବାକୁ ପଡ଼େ କାହିଁକି ?''

ଭଗବାନ୍ କହିଲେ, ''ମିଥ୍ୟାକୁ ଯିଏ ସତ୍ୟ ବୋଲି ଗ୍ରହଣ କରିଥାଏ, ସେତେବେଳେ ସେହି ମିଥ୍ୟା ବସ୍ତୁ ଦ୍ୱାରା ବି ଅନେକ କାମ ହୋଇଥାଏ। କ୍ଷେତରେ ଚାଷୀ ଗୋଟିଏ କାଠିକୁ

ପୋତି ତହିଁରେ କୁର୍ତାଟିଏ ପିନ୍ଧାଇ ମଣିଷଟିଏ ଠିଆ ହୋଇଥିବା ପରି କରିଦିଏ। ବାସ୍ତବରେ କିନ୍ତୁ ତାହା ମଣିଷ ନୁହେଁ। ହେଲେ ସେହି ମିଥ୍ୟା ପୁରୁଷକୁ ଦେଖି ପଶୁପକ୍ଷୀମାନେ ଭୟରେ କ୍ଷେତରେ ପଶନ୍ତି ନାହିଁ। ରାତିରେ କେତେକ ଛାଇକୁ ଦେଖି ଭୂତର ଭ୍ରମ ହୁଏ। ଭୂତ ବୋଲି ଥରେ ତାକୁ ଗ୍ରହଣ କରିନେଲେ ତାର ଆଖି, ଦାନ୍ତ ତଥା ଅନ୍ୟ ଚେଷ୍ଟାଗୁଡ଼ିକ ସତ୍ୟ ଭଳି ଦେଖାଯିବାରେ ଲାଗେ। ସେହି ମିଥ୍ୟା ଛାୟା ଦ୍ୱାରା ଭୟ ବି ହୁଏ। କେତେକ ମରି ବି ଯାଆନ୍ତି। ଏ ପ୍ରସଙ୍ଗରେ ଗୋଟିଏ ଉଦାହରଣ କହୁଛି।

ଜଣେ ବଳବାନ୍ ଲୋକ ଥିଲା। ସେ ସବୁବେଳେ କହୁଥିଲା, ''ମୁଁ ଭୂତ ଆଦିକୁ ଡରେ ନାହିଁ। ଭୂତ ମୋର କ'ଣ କରିପାରିବ।'' ଆଉ ଜଣେ ଚପଳମତି ଯୁବକ ଥିଲା। ସେ ଭାରି ଗମାତିଆ। ସିଏ ବଳବାନ୍ ଲୋକକୁ କହିଲା, ଠିକ୍‌ଅଛି, ଭୂତ ଦେଖିବା ପରେ ତୁମର ବଳ ପୌରୁଷ ଦେଖାଯିବ ଯେ ! କିଛି ଦିନ ଗଲା। କଥାଟିକୁ ଯୁବକଟି ମନେ ରଖିଥିଲା। ଦିନେ ସେ ନିଜକୁ ଭୟଙ୍କର ରୂପରେ ସଜାଇଲା। ଗୋଡ଼ରେ ବାଉଁଶ ବାନ୍ଧି ଖୁବ୍ ଉଚ୍ଚ ହୋଇଗଲା। ବଳବାନ୍ ଲୋକ ଜଣକ ଗୋଟିଏ ଗଛ ମୂଳରେ ଶୋଇଥିଲା। ଭୟଙ୍କର ରୂପରେ ସଜାଇ ହୋଇଥିବା ଯୁବକ ସେଇ ଗଛର ଗୋଟିଏ ଡାଳରେ ବସି ହୁଁ ହୁଁ ବୋଲି ହୁଁଙ୍କାର ଛାଡ଼ିଲା। ଶୋଇଥିବା ବଳବାନ୍ ଲୋକର ନିଦ ଭାଙ୍ଗିଗଲା। ଆଉ ହଠାତ୍ ଗଛ ଉପରେ ଗୋଟିଏ ଭୟଙ୍କର ରୂପ ଦେଖି ଡରିଗଲା। ଏପରି ସମୟରେ ଯୁବକ ଜଣକ ହୁଁକାର ଛାଡ଼ି ଗଛ ଉପରୁ ତଳକୁ ଡେଇଁ ଲମ୍ବାଲମ୍ବା ଗୋଡ଼ରେ ଠିଆ ହୋଇପଡ଼ିଲା। ଏଡ଼େ ଲମ୍ବା ଆଉ ଏତେ ଭୟଙ୍କର ରୂପକୁ ସାମ୍‌ନାରେ ହଠାତ୍ ଦେଖି ବଳବାନ୍ ଲୋକର ଚେତା ବୁଡ଼ିଗଲା। ସେ ଅତ୍ୟଧିକ ଭୟଭୀତ ହୋଇଯାଇଥିଲା। କିଛି ଦିନ ବେମାର ପଡ଼ିବା ପରେ ସେ ମରିଗଲା।

ଏବେ କ'ଣ ହେଲା ଦେଖାଯାଉ। ଭୂତ ବୋଲି ତ ସତରେ କିଛି ନ ଥିଲା। ସେହି ଗମାତିଆ ଯୁବକ ଶରୀରରେ ଭୂତ ସର୍ବଥା ମିଥ୍ୟା ଥିଲା। କିନ୍ତୁ ବଳବାନ୍ ଲୋକର ମୃତ୍ୟୁ ହେଲା। ଛାୟା ପୁରୁଷକୁ ଉପାସନା ଯେଉଁମାନେ କରନ୍ତି ଛାୟା ପୁରୁଷକୁ ପ୍ରତ୍ୟକ୍ଷ କରି ନିଅନ୍ତି। ସେମାନେ ସେହି ଛାୟା ପୁରୁଷଙ୍କ ଦ୍ୱାରା ବହୁତ ପ୍ରକାର କାମ କରାଇ ନିଅନ୍ତି।

ଦର୍ପଣରେ ମୁହଁ ଦେଖାଯାଏ । ଦର୍ପଣରେ ଦେଖା ଯାଉଥିବା ମୁହଁ ସର୍ବଥା ମିଥ୍ୟା। କିନ୍ତୁ ଦର୍ପଣରେ ମୁହଁ ଦେଖି ଆମେ ତିଳକ ଲଗାଉ। ବାଳ କୁଣ୍ଡାଉ। ମୁହଁରେ ଲାଗିଥିବା ମଳି ସଫାକରୁ। ଏହି ସବୁ କାମ ମିଥ୍ୟା ପ୍ରତିବିମ୍ବିତ ହୋଇଯାଏ। ଠିକ୍ ସେହିଭଳି ଜୀବ ଯେତେବେଳେ ଦେହରେ ଅହଂଭାବ କରିଦିଏ ସେତେବେଳେ ଏପରି ମିଥ୍ୟା ଆରୋପରେ ବି ସେ ଜନ୍ମ ମରଣର ଚକ୍ରରେ ଫସି ଯାଏ। ଆତ୍ମାକୁ ଯିଏ ପ୍ରକୃତିଠାରୁ ଭିନ୍ନ ବୋଲି ମାନେ ନାହିଁ, ତାହାର ବାସ୍ତବିକ ସ୍ୱରୂପକୁ ଚିହ୍ନିପାରେନାହିଁ, ଉଭୟକୁ ଏକ ବୋଲି ଗ୍ରହଣକରି ନିୟମରେ ବିମୋହିତ ହୋଇଯାଏ, ତାକୁ ଚୌରାଶୀ ଯୋନିରେ ଭ୍ରମିବାକୁ ପଡ଼େ। ସେ ବାରମ୍ବାର ଜନ୍ମ ହୁଏ ଓ ବାରମ୍ବାର ମରେ। ତାକୁ ଉଚ୍ଚ ନୀଚ ଅନେକ ଯୋନିକୁ ଯିବାକୁ ପଡ଼ିଥାଏ। କେତେବେଳେ ଦେବତା ହୋଇଯାଏ, କେତେବେଳେ ମଣିଷ ତ ଆଉ କେତେବେଳେ ପଶୁ-ପକ୍ଷୀ ଆଦି।''

ଉଦ୍ଧବ ପଚାରିଲେ, ''ଭଗବନ୍ ! ସେ ଉଚ୍ଚ-ନୀଚ ଯୋନିକୁ ଯିବାର କାରଣ କ'ଣ ?''

ଭଗବାନ୍ କହିଲେ, ''ସେମାନେ ତ୍ରିଗୁଣ ଅନୁସାରେ ତାହା ପାଇଥାଆନ୍ତି। ଯାହାର ଯେପରି କର୍ମ ହୋଇଥାଏ ତାକୁ ସେହିପରି ଯୋନିକୁ ଯିବାକୁ ପଡ଼େ। ଜୀବ ଭ୍ରମିବାର କୌଣସି

କାରଣ ନାହିଁ। ସେ ଯେତେବେଳେ କର୍ମର କର୍ତ୍ତା ବୋଲି ନିଜକୁ ଭାବି ବସେ ସେତେବେଳେ ନିଜର କର୍ମ ଅନୁସାରେ ଆବାଗମନ ଚକ୍ରରେ ଭ୍ରମେ। କର୍ମ ଅନୁସାରେ ଫଳ ଚାଖେ। କର୍ତ୍ତାପଣର ଆନନ୍ଦ ଉପଭୋଗ କରେ। ସାତ୍ତ୍ୱିକ କର୍ମ କଲେ ଦେବତା ଆଦି ଯୋନି ପାଏ, ରାଜସ କର୍ମ ଅନୁସାରେ ମନୁଷ୍ୟ ଆଦି ଯୋନି ଲାଭକରେ, ଆଉ ତାମସ କର୍ମ ଦ୍ୱାରା ଭୂତ, ପିଶାଚ ଆଦି ତୀର୍ଯ୍ୟକ ଯୋନିକୁ ଯାଏ।''

ଉଦ୍ଧବ କହିଲେ, ''ଭଗବନ୍! ଗୋଟିଏ ପଟେ ଆପଣ ଆତ୍ମାକୁ ନିଷ୍କ୍ରିୟ କହୁଥିବା ବେଳେ ଅନ୍ୟ ପଟରେ କହୁଛନ୍ତି ଯେ ତାକୁ ନାନା ଯୋନିକୁ ଯିବାକୁ ହୋଇଥାଏ। ଏହି ଯେତେ ସବୁ କର୍ମ ଅଛି ସମସ୍ତ ମନ, ବୁଦ୍ଧି ତଥା ଇନ୍ଦ୍ରିୟଙ୍କ କାର୍ଯ୍ୟ। ଏଥିରେ ଆତ୍ମା ଲିପ୍ତ କାହିଁକି ହୋଇଯାଏ ? ଅନ୍ୟର କର୍ମରେ କାହିଁକି ଡେଇଁ ପଡ଼େ ?''

ଭଗବାନ୍ ହସି ହସି କହିଲେ, ''ଉଦ୍ଧବ! ଏହା ହିଁ ହେଉଛି ମୋର ମାୟା। ପ୍ରତ୍ୟେକ ଲୋକ ଅନ୍ୟଙ୍କ କର୍ମ ଉପରକୁ ଡେଇଁ ପଡ଼ନ୍ତି। କାହାର ଆଖିରେ ଯନ୍ତ୍ରଣା ଯୋଗୁ ଆଖି କୁଣ୍ଡାଇ ହୋଇ ନାଲି ପଡ଼ିଯାଏ, ଆମେ ତାହା ଦେଖିଲେ ଆମ ଆଖି ବି ଗଳ ଗଳ ହେବାରେ ଲାଗେ। କେହି ଜଣେ ହାଇ ମାରୁଥିବା ଦେଖିଲେ ଆମକୁ ବି ହାଇ ମାଡ଼େ। କେହି ଜଣେ ଦୁଃଖରେ ପଡ଼ି କାନ୍ଦୁଥିବା ଦେଖିଲେ ଆମର ହୃଦୟ ଦ୍ରବିଯାଏ। କେହି ହସୁଥିଲେ ଆମକୁ ବି ହସ ଲାଗେ। କେହି ଲେମ୍ବୁ ଚାଟୁଥିଲେ ଆମ ଜିଭରୁ ଲାଳ ବୋହେ। କାହାର ବୈଷୟିକ ଚେଷ୍ଟା ଦେଖି ଆମର ଚିତ୍ତ ଚଞ୍ଚଳ ହୋଇଉଠେ। କେହି ଜଣେ ସୁନ୍ଦର ଲଳିତ ମଧୁର ସ୍ୱରରେ ଗାନ କରୁଥିବା ଶୁଣିଲେ ଆମର ବି ଗୀତ ବୋଲିବାକୁ ମନ ହୁଏ, ଆମେବି ଗୁଣୁଗୁଣୁ ହେବାରେ ଲାଗୁ, ମୁଣ୍ଡ ହଲାଇବାରେ ଲାଗୁ, ତାଳ ମିଳାଇ ତାଳି ମାରିବାରେ ଲାଗୁ। ଏହିଭଳି ବୁଦ୍ଧିର ଗୁଣକୁ ଦେଖି ଆତ୍ମା ନିଷ୍କ୍ରିୟ ହୋଇ ବି ଅନୁକରଣ କରିବା ପାଇଁ ବିବଶ ହୋଇଯାଏ। ବାସ୍ତବରେ କିନ୍ତୁ ଆତ୍ମାରେ କୌଣସି ଦୋଷ ନଥାଏ। ତାହା ସର୍ବଥା, ସର୍ବଦା ବିଶୁଦ୍ଧ ହିଁ ରହିଥାଏ। ତେବେ ବି ଦେଖାଯାଏ ଯେ ଜୀବାତ୍ମା ଜନ୍ମ ହୁଏ ଓ ସେ ହିଁ ମରେ।''

ଉଦ୍ଧବ ପଚାରିଲେ, ''ଭଗବନ୍! ତାହା ହୋଇଥାଏ କିପରି? ଜୀବାତ୍ମା ତ କେତେ ନା କେତେ ଯୋନିରେ ଜନ୍ମ ନିଏ। ତେବେ ବି ଏହା ଯେପରି ବିଶୁଦ୍ଧ ଥିଲା ସେପରି ବିଶୁଦ୍ଧ ରହେ କିପରି ? ଏହା କିପରି ସମ୍ଭବ ହୁଏ ?''

ଏହି କଥା ଉପରେ ଜୋର ଦେଇ ଭଗବାନ୍ କହିଲେ, ''ଉଦ୍ଧବ! ମୁଁ ତୁମକୁ ଅନେକ ଥର ଏହି କଥା ବୁଝାଇଛି। ଆତ୍ମା ନା ମରେ ନା ଜନ୍ମହୁଏ। ଜନ୍ମ ଓ ମରଣ ହେବା ହେଉଛି ଦେହର ଧର୍ମ। ଏହାର ସଂସର୍ଗ ଦ୍ୱାରା ଅଜ୍ଞାନୀମାନଙ୍କୁ ତାହା ଆତ୍ମାରେ ହିଁ ପ୍ରତୀତ ହେଉଥାଏ। ଯେପରି ଆମେ କୌଣସି ଦ୍ରୁତଗାମୀ ଯାନରେ ଯାଉଥିବା ବେଳେ ରାସ୍ତା କଡ଼ର ବୃକ୍ଷଗୁଡ଼ିକ ଆମ ସହିତ ଦୌଡୁଥିବା ପ୍ରତୀତ ହେଉଥାଏ। ବାସ୍ତବରେ କ'ଣ ବୃକ୍ଷ ଦୌଡ଼େ ? କିନ୍ତୁ ସଂସର୍ଗ ଦ୍ୱାରା ଏପରି ଭ୍ରମାତ୍ମକ ଉପୁଜେ। ଛୋଟ ଛୋଟ ପିଲାମାନେ ଚକା ଚକା ଭଉଁରୀ, ମାମୁଁ ଘର ଚଉଁରୀ ବୋଲି ଗାଇ ଗାଇ ଘୂରନ୍ତି। ସେତେବେଳେ ତାଙ୍କ ସହିତ ସାରା ପୃଥିବୀଟା ଘୂରୁଥିବା ଭଳି ଲାଗେ। ବାସ୍ତବରେ କିନ୍ତୁ ସେମାନେ ଘୂରୁ ଥିବାରୁ ଏ ଭଳି ପ୍ରତୀତ ହୋଇଥାଏ। ପୃଥିବୀ ତ ତା ସ୍ଥାନରେ ପୂର୍ବବତ୍ ଥାଏ। ଆଖିରେ ଆଙ୍ଗୁଠି ଲଗାଇ ଦେଖିଲେ ଦୁଇ ଦୁଇଟି ଜହ୍ନ ଦେଖାଯାଏ। ପୋଖରୀ କୂଳରେ ଉଠିଥିବା

ବୃକ୍ଷଗୁଡ଼ିକର ପ୍ରତିବିମ୍ବ ପୋଖରୀ ଜଳରେ ଦେଖାଯାଏ । ପାଣି ଚହଲିଲେ ବୃକ୍ଷଗୁଡ଼ିକ ଦୋହଲିବା ଭଳି ଦେଖାଯାଏ । ସ୍ୱପ୍ନରେ ଦେଖାଯାଉଥିବା ପଦାର୍ଥ ମିଥ୍ୟା । କିନ୍ତୁ ସ୍ୱପ୍ନ ଦେଖୁଥିବା ବେଳେ ତାହା ସତ୍ୟ ଭଳି ଦେଖାଯାଏ । ମନରେ କଳ୍ପିତ ଲଡୁ ଯଦିଓ ମିଥ୍ୟା, କିନ୍ତୁ ଏକାନ୍ତରେ ତନ୍ମୟତାର ସହିତ ସେହି ଲଡୁର ମିଠାସ୍ ଚିନ୍ତାକଲେ ଲଡୁ ଖାଇବା ଭଳି ଆନନ୍ଦ ଲାଗେ । ସ୍ୱପ୍ନରେ କ୍ଷୀରୀ, ମାଲପୂଆ, ରସଗୋଲା ଦେଖାଯାଏ । ତାକୁ ଖାଇଲେ ଖୁବ୍ ଆନନ୍ଦ ଲାଗେ । ସେତେବେଳେ ଏପରି ଲାଗେ, ସତେ ଯେପରି ଆମେ ସତରେ ଖାଉଛେ । କିନ୍ତୁ ବାସ୍ତବରେ ନା ସେଠାରେ ମାଲପୂଆ ଥିଲା, ନା ସିରାରେ ବୁଡ଼ିଥିବା ନାଲି ନାଲି ଗୋଲ ଗୋଲ ରସଗୋଲା । ମିଥ୍ୟା ହୋଇ ସୁଦ୍ଧା ତାହା ଯେପରି ସେତେବେଳେ ସତ୍ୟ ଭଳି ଲାଗେ— ଯଦିଓ ବାସ୍ତବରେ ତାହା ମିଥ୍ୟା— ଠିକ୍ ସେହିଭଳି ଜୀବାତ୍ମା ବିଷୟାନୁଭବ ରୂପ ସଂସାର ସତ୍ୟ ଭଳି ପ୍ରତୀତ ହେଉଥିଲେ ବି ତାହା ଯଥାର୍ଥରେ ମିଥ୍ୟା ହିଁ ହୋଇଥାଏ ।''

ଉଦ୍ଧବ ପଚାରିଲେ, ''ତେବେ ହେ ଭଗବନ୍ ! ଏହି ମିଥ୍ୟା ସଂସାରରୁ ନିବୃତ୍ତି କିପରି ମିଳିବ ?''

ଭଗବାନ୍ କହିଲେ, ''ହେ ଉଦ୍ଧବ ! ଯେ ପର୍ଯ୍ୟନ୍ତ କାଳ୍ପନିକ ଭୂତକୁ ତୁମେ ଡରୁଥିବ, ସେଗୁଡ଼ିକର ଚେଷ୍ଟାକୁ ସତ୍ୟ ମନେ କରୁଥିବ, ସେ ପର୍ଯ୍ୟନ୍ତ ଛାୟା ହୋଇଥିଲେ ବି ଭୂତ କାମ କରେ, ଭୟ ପ୍ରଦାନ କରେ । ଯେପରି ସ୍ୱପ୍ନରେ ଜଣେ ଦେଖିଲା, ଗୋଟିଏ ଭୟଙ୍କର ସିଂହ ଆକ୍ରମଣ କଲା, ତାହା ପଂଝାରେ ସେ ମାଡ଼ିବସି ଶରୀରକୁ ବିଦୀର୍ଣ୍ଣ କରିବାରେ ଲାଗିଲା । ଏହି ଦୃଶ୍ୟ ସ୍ୱପ୍ନରେ ଦେଖି ଲୋକ ଜଣଙ୍କ ଦୁଃଖ ଓ ଭୟଭୀତ ହୋଇଗଲା । ସ୍ୱପ୍ନ ଭାଙ୍ଗିଗଲା, ହେଲେ ତାର ପ୍ରଭାବ ଶରୀର ଉପରେ କିଛି ସମୟ ରହିଗଲା । ସ୍ୱପ୍ନ ମିଥ୍ୟା । ସ୍ୱପ୍ନରେ ଦେଖିଥିବା ସିଂହ ବି ମିଥ୍ୟା । କିନ୍ତୁ ସେହି ଦୁଃଖ ଓ ଭୟରୁ ଲୋକଟି ନିବୃତ୍ତ ସେ ପର୍ଯ୍ୟନ୍ତ ହୋଇପାରେ ନାହିଁ ଯେ ପର୍ଯ୍ୟନ୍ତ ସେ ସ୍ୱପ୍ନାବସ୍ଥା ପରିତ୍ୟାଗ କରି ଜାଗ୍ରତବସ୍ଥାକୁ ଫେରି ନ ଯାଇଛି । ଏହିଭଳି ବାସ୍ତବରେ ଯଦିଓ କୌଣସି ଅର୍ଥ ନାହିଁ— ସଂସାରର ସକଳ ବସ୍ତୁ ଅସତ୍ ଆଉ ନାଶବାନ୍, ତେବେ ବି ଯେ ପର୍ଯ୍ୟନ୍ତ ମନ ବିଷୟରେ ଆସକ୍ତ ରହିଥାଏ, ସାଂସାରିକ ସମସ୍ତ ବିଷୟକୁ ଭୋଗେଚ୍ଛାରେ ଚିନ୍ତା କରିବାରେ ଲାଗିଥାଏ, ସେ ପର୍ଯ୍ୟନ୍ତ ସଂସାରର ନିବୃତ୍ତି ହୋଇପାରେ ନାହିଁ, କଦାପି ହୋଇପାରେ ନାହିଁ, ଚିତ୍ରକଳାରେ ବି ହୋଇପାରେ ନାହିଁ ।''

ଉଦ୍ଧବ କହିଲେ, ''ଭଗବନ୍ ! ମୁଁ ତ ଏହି କଥା ହିଁ ଆପଣଙ୍କୁ ପଚାରୁଛି, ନିବୃତ୍ତି ହେବ କିପରି ?''

ଭଗବାନ୍ କହିଲେ, ''ଦେଖ ଉଦ୍ଧବ ! ଏହି ଯେଉଁ ଶବ୍ଦ, ରୂପ, ରସ, ଗନ୍ଧ ଓ ସ୍ପର୍ଶ ସମ୍ବନ୍ଧୀୟ ଭୋଗ— ଏ ସମସ୍ତକୁ ଏହି ସବୁ ଅସତ୍ ଇନ୍ଦ୍ରିୟଙ୍କ ଦ୍ୱାରା ଭୋଗ କରିବାକୁ ଛାଡ଼ିଦିଅ । ଛାଡ଼ି ଦେବ ଆଉ କ'ଣ, ସେମାନଙ୍କ ପ୍ରତି ଆସକ୍ତି ଆଦୌ ରଖ ନାହିଁ । ତୁମେ ଦୃଢ଼ତାର ସହିତ ନିଶ୍ଚୟ କରିନିଅ ଯେ ସକଳ ପ୍ରକାର ଭୋଗ ପଦାର୍ଥ ହେଉଛି ଅସତ୍, ଏକମାତ୍ର ଆତ୍ମା ହେଉଛି ସତ୍ । ଏହି ସମଗ୍ର ସଂସାର-ଭ୍ରମକୁ ଆତ୍ମସ୍ୱରୂପର ଅଜ୍ଞାନ ଦ୍ୱାରା ହିଁ ଦେଖାଯାଉ ଥାଏ । ଯେତେବେଳେ ଏକମାତ୍ର ଆତ୍ମା ହେଉଛି ସତ୍, ତେବେ କ୍ଷୋଭର, ଚିନ୍ତା ତଥା ଦୁଃଖର କାରଣ ଆଉ କ'ଣ ? ନିଜ ସ୍ୱରୂପରେ ସ୍ଥିତ ରହି ପୁରୁଷଙ୍କୁ କୌଣସି ଘଟଣାରେ କ୍ଷୋଭ ହେବା ବିଚଳିତ ହେବା ଠିକ୍ ନୁହେଁ ।''

ଉଦ୍ଧବ କହିଲେ, ''ଭଗବନ୍ ! ଆମକୁ ଯେତେବେଳେ କେହି ଅପମାନ କରେ, ଗାଳିଦିଏ, କଟୁବଚନ କହେ ସେତେବେଳେ ଚିତ୍ତ ତ ବିକ୍ଷୁବ୍ଧ, ବିଚଳିତ ହୋଇଯାଏ ନା ?''

ଭଗବାନ୍ କହିଲେ, ''ସେହି ସମୟରେ ଆମର ବିଚାର କରିବା ଆବଶ୍ୟକ। ଆମେ ସେତେବେଳେ ଭାବିବା ଉଚିତ ଯେ, ଇଏ କେଉଁ ବସ୍ତୁକୁ– କାହାକୁ ଅପମାନ କରିଛି, କାହାକୁ ଗାଳି ଦେଇଛି। ଯେପରି କେହି ଜଣେ ଆମକୁ 'ଶଳା' କହିଲା। ଏବେ 'ଶଳା' କାହାକୁ କୁହାଯାଏ ଏହା ଆମେ ଭାବିବା ଉଚିତ। ବୋହୂର ଭାଇକୁ ଶଳା କୁହାଯାଏ। ପ୍ରଥମେ ଜାଣିବା ଉଚିତ ଯେ ଗାଳି ଦେଉଥିବା ଲୋକର ବୋହୂ ଅଛି ନା ନାହିଁ। ଯଦି ତା'ର ବୋହୂ ନ ଥାଏ, ତେବେ ସେ ଆମର ଭଉଣୀ ହେବ କିପରି? ଯଦି ତା'ର ସ୍ତ୍ରୀ ଥାଏ, ତେବେ ସେ ଆମର ଭଉଣୀ ନା ନୁହେଁ ଏହା ଭାବିବାକୁ ହେବ। ଯଦି ସେ ଆମର ଭଉଣୀ ନୁହେଁ ତେବେ ସେ ଗାଳିରେ ଖରାପ ଭାବିବାର କିଛି ନାହିଁ, ମିଛ କଥାରେ କ୍ରୋଧ କାହିଁକି କରିବା ? ଯଦି ତା'ର ସ୍ତ୍ରୀ ବି ଥାଏ, ଆମର ବି ଭଉଣୀ ଥାଏ ତେବେ ତା'ର ସ୍ତ୍ରୀ ଆମର ଭଉଣୀ ନା ନୁହେଁ। ଯଦି ଭଉଣୀ ହୋଇଥାଏ ତେବେ କଥାଟା ତ କିଛି ଖରାପ ନୁହେଁ, ସତ କଥା, ଖରାପ ଲାଗିବାର କ'ଣ ଅଛି ? ଭଉଣୀ ହୋଇ ନ ଥାଏ ତେବେ ସେ ବକୁଥାଉ, ଅନେକ ଲୋକ ମିଛ କୁହନ୍ତି, ସେମାନଙ୍କୁ ମିଛ କହିବାକୁ ସୁଯୋଗ ଦିଅ– କ୍ଷତି କ'ଣ ? ଯଦି ଆମର ଭଉଣୀ ଥାଏ ତା'ର ତ ପୁଣି ବିବାହ କାହା ସହିତ ହୋଇଥିବ, ଆମକୁ ଯଦି କେହି ଶଳା କହିବା ଲୋକ ଥାଏ, ଆମକୁ ଏଥିରେ ଖରାପ ଲାଗିବାର କଥା କେଉଁଠି ରହିଲା। ଆମେ ହୁଏତ କହିପାରୁ, ଆମେ କାହାର ଶଳା ହେଲେ ଯା'ର କ'ଣ ଗଲା, ଯା'ର କ'ଣ ବୋହୂ, ଇଏ କାହିଁକି କହୁଛି– ତେବେ ଆମେ ହସି ଦେବା। ଶଳା ଶବ୍ଦରେ କିଛି ଖରାପ ଥାଆନ୍ତା ତେବେ ସିନା ରାଗନ୍ତେ !''

ଏହି କଥା ଉପରେ ଗୁରୁତ୍ୱ ଦେଇ ଉଦ୍ଧବ କହିଲେ, ''ପ୍ରଭୁ ! ଶଶୁର ଘରେ ଶଳା ପ୍ରେମରେ ଥଟ୍ଟା ପରିହାସ କରେ। କିନ୍ତୁ ଏଠାରେ ଆମକୁ ଅପମାନ କରାଗଲା, ଆମର ହୀନମନ୍ୟତା କରାଗଲା ପରା !''

ଭଗବାନ୍ କହିଲେ, ''ଏହି କଥାକୁ ଚିନ୍ତା କରାଯାଉ, ପ୍ରକୃତରେ ଅପମାନ କାହାକୁ କରାଯାଉଛି। ଶରୀରରେ ଦୁଇଟି ବସ୍ତୁ ଅଛି, ଶରୀର ଓ ଆତ୍ମା– ଜଡ଼ ତଥା ଚୈତନ୍ୟ। ଚୈତନ୍ୟ ଆତ୍ମା ତ ମାନ ଅପମାନ ରହିତ ଏକ ଅଦ୍ୱୟ। ତହିଁରେ ମାନ ଅପମାନ ସମ୍ଭବ ହୁଏ ନାହିଁ। ଆଉ ଶରୀର ହେଉଛି ଜଡ଼। ଜଡ଼ର ପୁଣି ମାନ କ'ଣ, ଅପମାନ କ'ଣ ? ଶରୀରରୁ ଜଡ଼ ଚୈତନ୍ୟ ଅଲଗା ହୋଇଯାଏ, ସେତେବେଳେ ଏହି ଶରୀରକୁ ଜାଳି ଦିଆହୁଏ, ପୋପାଡ଼ି ଦିଆହୁଏ– ଏହାଠାରୁ ବଡ଼ ଅପମାନ ଆଉ କ'ଣ ହୋଇପାରେ। ଏହି ଶରୀରକୁ ଯଦି ଦୁଇଦିନ ରଖାଯାଏ ତେବେ ତାହା ସଢ଼ିଯାଏ, ପୋକ ଯୋକ ଲାଗିଯାଏ। ଏପରି ସ୍ୱୟଂ ଅପମାନିତ, ନିନ୍ଦିତ ହେଉଥିବା ଶରୀରର ପୁଣି ମାନ କ'ଣ, ଅପମାନ କ'ଣ ? ଏହି ସବୁ କଥା ଚିନ୍ତା ଯଦି କରାଯାଏ, ତେବେ ଅସାଧୁ ପୁରୁଷ ତିରସ୍କାର କଲେ ତାକୁ ତିରସ୍କାର ବୋଲି ନ ଭାବିବା ଉଚିତ। ଅପମାନକୁ ସହିଯିବା ଉଚିତ। କେହି ପରିହାସ କଲେ ତାକୁ ମନରେ ଧରିବା ଅନୁଚିତ। ନିନ୍ଦା ଶୁଣି ହସି ଦେବା ଉଚିତ। ମାରିଲେ ମାଡ଼କୁ ସହିଯିବା ଉଚିତ। ବାନ୍ଧିଲେ ଚୁପ୍‌ଚାପ୍ ବନ୍ଧା ହୋଇଯିବା ଉଚିତ। ଆଜୀବିକାରୁ ପୃଥକ୍ କରିଦେଲେ ପେଟ ପାଇଁ ଚିନ୍ତା ନ କରିବା ଉଚିତ। କେହି ଛେପ ପକାଇଦେଲେ ଉତ୍ତେଜିତ ନ ହେବା ଉଚିତ। ଶରୀର ଉପରେ ମଳମୂତ୍ର ପକାଇଲେ ବି କ୍ରୋଧ ନ କରିବା ଉଚିତ।''

ଉଦ୍ଧବ କହିଲେ, ''ପ୍ରଭୁ! ଏପରି ଅନ୍ୟାୟକୁ ଚୁପ୍‌ଚାପ୍ କିପରି ସହ୍ୟ କରାଯାଇ ପାରିବ।''

ଭଗବାନ୍ କହିଲେ, ''ଅରେ ଭାଇ! ଏଇ ଜୀବ ତ ସବୁଠାରୁ ବଡ଼ ଅନ୍ୟାୟ କରୁଛି। ଶରୀର ମିଳିଛି ଭଗବତ୍ ଚିନ୍ତନ ପାଇଁ, କିନ୍ତୁ ସେ ଏଥିରେ ସବୁ ସମୟରେ କରୁଥାଏ ବିଷୟ ଚିନ୍ତନ। ନିଜର ମଙ୍ଗଳ ସବୁବେଳେ ଚିନ୍ତା କରିବା ଉଚିତ। ଯେ ନିଜର ମଙ୍ଗଳ ଚିନ୍ତା କରେ ସେ ଜଗତର ମଙ୍ଗଳ କରିପାରେ। ଭିତରକୁ ଦେଖୁଥିବା ଲୋକ ହିଁ ସମସ୍ତଙ୍କଠାରେ ଏକତ୍ୱର ସାକ୍ଷାତ୍କାର କରିପାରେ। ଏଥିଯୋଗୁଁ ମୂର୍ଖମାନେ ଏହି କଥା ଆଡ଼କୁ ଧ୍ୟାନ ଦେବା ଉଚିତ ନୁହେଁ। ଅଜ୍ଞାନୀଙ୍କ ଭଳି ବିଭିନ୍ନ ପ୍ରକାର ବିଚଳିତ କରାଗଲେ ସୁଦ୍ଧା ନିଜର ଧୈର୍ଯ୍ୟ ତ୍ୟାଗ କରିବା ଉଚିତ ନୁହେଁ। ଯେପରି ସଂସାର ସାଗରକୁ ପାରି ହେବା ପାଇଁ ଇଚ୍ଛା, ଯିଏ ମୋକ୍ଷର ଇଚ୍ଛା ରଖିଥାଏ ସେ ନିଜେ ଏପରି କଠିନ ପରିସ୍ଥିତିରେ ପଡ଼ି ସୁଦ୍ଧା ନିଜେ ନିଜର ବିବେକ ବିଚାର ଦ୍ୱାରା ହିଁ ସ୍ୱୟଂ ନିଜର ଉଦ୍ଧାର କରିବା ଉଚିତ। ସଂସାରୀ ମୂର୍ଖମାନେ ବକର ବକର ହେଉଥାନ୍ତୁ, ନିଜେ ନିଜକୁ ଭଗବାନଙ୍କ ଭଜନରେ ନିୟୋଜିତ କରି ରଖିଥିବା ଉଚିତ। ଶ୍ରଦ୍ଧା, ବିଶ୍ୱାସ, ଆଉ ଧୈର୍ଯ୍ୟର ସହିତ କ୍ରୋଧକୁ ଜୟ କରି ମୋତେ ହିଁ ଭଜନ କରୁଥିବା ଉଚିତ।''

ଉଦ୍ଧବ କହିଲେ, ''ପ୍ରଭୁ! ଆପଣଙ୍କ କଥା ତ ନିରାଟ ସତ୍ୟ। କିନ୍ତୁ ହେ ଭଗବନ୍! ଦୁଷ୍ଟ ଲୋକମାନେ ଯେତେବେଳେ ମର୍ମକୁ ବାଧୁଥିବା ଅତି ଉତ୍କଟ କୁଭାଷା କୁହନ୍ତି ସେତେବେଳେ ସେମାନେ ଜ୍ଞାନ କଥା ପୂରା ଭୁଲିଯାଆନ୍ତି। ସେତେବେଳେ ମାରିଦେବା ପାଇଁ ଅଥବା ମରିଯିବା ପାଇଁ, ମାରିବି କି ମରିବି— ଏପରି ଇଚ୍ଛା ହୁଏ। ଦୁଷ୍ଟଙ୍କ ଦ୍ୱାରା, ଦୁର୍ଜନଙ୍କ ଦ୍ୱାରା ଅପମାନିତ ହେବାପରେ ଯଦି କାହା ମନରେ କୌଣସି ବିପରୀତ ଭାବ ନ ଉଠେ ଏପରି ପୁରୁଷ ତ ଅତ୍ୟନ୍ତ ଦୁର୍ଲଭ।''

ଭଗବାନ୍ କହିଲେ, ''ଭାଇ! କଠିନ, ଦୁର୍ଲଭ ନିଶ୍ଚୟ, କିନ୍ତୁ ଅସମ୍ଭବ ନୁହେଁ। ମଣିଷ ଯଦି ଶୁଦ୍ଧ ଚିତ୍ତରେ ଅପମାନର ଘଟଣା ଉପରେ ଶାନ୍ତ ଭାବରେ ବିଚାର କରେ ତେବେ ତ ତାକୁ ଦୁଃଖ କଦାପି ହୋଇ ନ ପାରେ ?''

ଉଦ୍ଧବ କହିଲେ, ''ଭଗବନ୍! ବିଚାର କରିବା କିପରି ? ସେତେବେଳର ପରିସ୍ଥିତି, ସମୟ କିପରି ହୋଇଥାଏ ତାହା କିପରି ଭାବିବା ? ଆପଣ ଏହି କଥାକୁ ମୋତେ ସରଳ ଭାବରେ ବୁଝାଇ କୁହନ୍ତୁ। ବର୍ତ୍ତମାନ ପର୍ଯ୍ୟନ୍ତ ମୁଁ ଏହାକୁ ଠିକ୍ ବୁଝିପାରି ନାହିଁ।''

ଭଗବାନ୍ କହିଲେ, ''ଉଦ୍ଧବ! ସମସ୍ତ ବେଦ, ଶାସ୍ତ୍ର ସେହି କଥାର ବିସ୍ତୃତ ବର୍ଣ୍ଣନା କରୁଛନ୍ତି। ବିସ୍ତୃତ ଭାବରେ ନୁହେଁ, ମୁଁ ସଂକ୍ଷେପରେ ତାହା କହିବି।''

ଉଦ୍ଧବ କହିଲେ, ''ପ୍ରଭୁ! ଅତି ସଂକ୍ଷେପ କରନ୍ତୁ ନାହିଁ। ମୋର ବୁଦ୍ଧି ଅଳ୍ପ। ଆପଣ ଯେଉଁ ବିଷୟରେ କହୁଛନ୍ତି ତାହା ଅତି ଗହନ। ଆପଣଙ୍କ ଭକ୍ତଙ୍କ ପକ୍ଷରେ ତ କିଛି ଅସମ୍ଭବ ନୁହେଁ— ଯେଉଁମାନେ ସବୁ ସମୟରେ ଆପଣଙ୍କର ଧର୍ମରେ ଲାଗିରହିଥାନ୍ତି, ଆପଣଙ୍କର ସେବାପୂଜାରେ ଅଷ୍ଟ-ପ୍ରହରଯାକ ବିତାଇ ଦିଅନ୍ତି— ସେମାନେ ତ ଆପଣଙ୍କର ଚରଣାବିନ୍ଦର ଆଶ୍ରୟ ଗ୍ରହଣ କରି ନେଇଛନ୍ତି— ସେପରି ସାଧୁ ସ୍ୱଭାବର ସରଳ ଓ ଶାନ୍ତ ଚିତ୍ତମାନେ ସବୁକଥା ସହ୍ୟ କରିପାରନ୍ତି। ସେମାନଙ୍କୁ ଛାଡ଼ିଦେଲେ, ଅନ୍ୟ ଯେତେ ବିବେକୀ ହୋଇଥାଆନ୍ତୁ ପଛେ, ଥରେ ନା ଥରେ ଅପମାନରେ ସେ କ୍ଷୋଭ ନିଶ୍ଚୟ ହୋଇଥାଏ। କରିବା କ'ଣ

ଭଗବନ୍ ! ମାନବର ଏହି ପ୍ରକୃତି ଅତି ବଳବାନ୍ । ସମସ୍ତଙ୍କ ଅପମାନ ସହିବା ଅତି କଷ୍ଟକର କଥା ।''

ଭଗବାନ୍ କହିଲେ, ''ହଁ ଉଦ୍ଧବ ! ତୁମ କଥା ସତ । ମୋ ଆଶ୍ରୟ ନେଇ ଯିଏ ଏ ସବୁ ଭାବେ ସେ ସବୁ ସହିପାରେ । ଏହି ବିଷୟରେ ମୁଁ ତୁମକୁ ଗୋଟିଏ ଗପ କହିବି । ଏଥିରୁ ତୁମେ ବୁଝିପାରିବ, ଅପମାନିତ ହେବାରେ କିପରି ବିଚାର କରିବା, ଭାବିବା ବା ଅନୁଶୀଳନ କରିବା ଉଚିତ । ଅପମାନକୁ କିପରି ସହ୍ୟ କରାଯାଏ । ଏହି ଗପକୁ ତୁମେ ଦତ୍ତଚିତ୍ତ ହୋଇ ଶ୍ରବଣ କର ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ଭଗବାନ୍ ଉଦ୍ଧବଙ୍କୁ ଗପ ମାଧ୍ୟମରେ ଯେପରି ବୁଝାଇଲେ ତାହା ମୁଁ ଆପଣମାନଙ୍କୁ କହୁଚି, ଶୁଣନ୍ତୁ ।''

### ଛପ୍‌ପୟ

ହୋହି ଅରଥ ନହିଁ ତଊ ଜଗତ ଚିନ୍ତନ ହୈ ଅନରଥ ।
ସ୍ୱପ୍ନ ମାହିଁ ଜୋ ଲଖୈ ତିହ୍ନେ ସବ୍ ସମୁଝୈ ସ୍ୱାରଥ ॥
ଭ୍ରମ ବଶ ଭାସିତ୍ ହୋହି ସତ୍ୟ ଜଗ କୁଁ ମତ ଜାନୋ ।
ଖଲ ଜୋ କଛୁ କଟୁ କହୈ, ବୁରୌ ତାକୋ ମତ ମାନୋ ॥
ଉଦ୍ଧବ ବୋଲେ ! ''ପ୍ରଭୁ ! ନହୀଂ ସହ୍ୟୋ ଜାତ ଅପମାନ ହୈ ।
କୈସେ ସମଦରସ ବନୈ, ହିୟ ମହଁ ବଡ଼ ଅଜ୍ଞାନ ହୈ ॥



## ଜଣେ କୃପଣର କଥା

**କଥୟନ୍ତି ମହତ୍ ପୁଣ୍ୟମିତିହାସମିହୋଦ୍ଧବ ।**
**ତମହଂ ବର୍ଣୟିଷ୍ୟାମି ନିବୋଧ ସୁସମାହିତଃ ॥ ★**

[ଶ୍ରୀଭା.୧୧ସ୍କ.୨୩ଅ.୪ ଶ୍ଳୋକ]

### ଛପ୍‌ପୟ

ହରି ହଁସି ବୋଲେ- 'ସଖେ ! ସହନ ଅପମାନ କଠିନ ଅତି ।
ବାକ୍ୟ ବାନତେଁ ବିଧେ ବ୍ୟକ୍ତି କୀ ବିଗରୈ ଗତି ମତି ॥
ସୁନୌ ଏକ ଦୃଷ୍ଟାନ୍ତ ଅବନ୍ତୀ ନଗରୀ ନାମୀ ।
ତାମେ ଦ୍ୱିଜ ଇକ ବସୈ କୃପନ ଅତି କ୍ରୋଧୀ କାମୀ ॥
ଭୟୋ ନାଶ ଧନ କୃପନ କୋ, ଦାନ ଭୋଗ ନହିଁ କଛୁ କରେ୍ୟା ।
ହରୟୋ ଚୋର, ନୃପ, ସ୍ୱଜନ, ଖଲ, ଜୋଉ ଜୋଉ ଜୋ ଧନ ଧରେ୍ୟା ॥

---

 ଏବେ ତୁ ଶୁଣ ହୋ ବିଶ୍ୱାସେ । ଯେ ପୁରାତନ ଇତିହାସେ ॥
ତୁ ଯେଣୁ ମୋହର ବିଶ୍ୱାସ । ତେଣୁଁ ମୁଁ କରିବି ପ୍ରକାଶ ॥

[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କନ୍ଧ, ୨୪ଅ]

ଥରେ ଲୋକ ବ୍ୟସନୀ ହୋଇଗଲେ ସେ ଅନ୍ଧ ହୋଇଯାଏ । ସେ ଗୁଣ-ଦୋଷ ଆଡ଼କୁ ଦୃଷ୍ଟିପାତ କରିପାରେ ନାହିଁ । ତା' ଦୋଷକୁ ଲକ୍ଷେ ଥର ଦେଖାଇଦେଲେ ବି ସେ ଆଦୌ କର୍ଣ୍ଣପାତ କରେ ନାହିଁ । ତା' ନ ହୋଇଥିଲେ ତମାଳ ପତ୍ର ପିଇବାରେ, ଖାଇବାରେ, ଶୁଂଘିବାରେ କି ସୁଖ ଥାଏ । କିନ୍ତୁ ଯାହାର ଏଥିରେ ବ୍ୟସନ ହୋଇଯାଇଥାଏ, ସେ ତାହା ଛାଡ଼ିପାରେ ନାହିଁ । ଠିକ୍ ଏହିଭଳି ଧନକୁ ଗଣି ଗଣି ସଂଚୟ କରିବା ଏକ ପ୍ରକାର ବ୍ୟସନ । ଧନର ଉପଯୋଗ ହୋଇଥାଏ ଦୀନଦୁଃଖୀଙ୍କୁ ସହାୟତା କରିବାରେ, ନିଜର ବୈଭବ ପ୍ରଦର୍ଶନ କରିବାରେ, ଉତ୍ତମ ଭୋଗ ଉପଭୋଗ କରିବାରେ, ହେଲେ କୃପଣ ଲୋକ ଏପରି କିଛି କରେ ନାହିଁ । ଧନକୁ ଗଣି ଗଣି ସାଇତି ରଖିବାରେ ଲାଗିଥାଏ । ନିଜେ ପେଟ ପୂରାଇ ଖାଏ ନାହିଁ କି ଅନ୍ୟ କାହାକୁ ଖାଇବାକୁ ଦିଏ ନାହିଁ— ଏପରିକି ସେ ନିଜର ପୁତ୍ର, ପତ୍ନୀ, ଅତି ଆତ୍ମୀୟଙ୍କ ଠାରୁ ମଧ୍ୟ ଧନକୁ ଗୁପ୍ତ ରଖେ । ସେପରି ଲୋକକୁ ଯଦି କେହି ପଚାରେ, ''ଆପଣ ଗୋଟି ଗୋଟି ଏପରି ସଂଚୟ କରିବାରେ କ'ଣ ପାଆନ୍ତି ? ଯଦି ଆପଣଙ୍କର ପୁଅ ସୁପୁତ୍ର ହୋଇଥାଏ ତେବେ ସେ ତ ଆପଣଙ୍କ ସଂଚିତ ଧନ ଆଡ଼କୁ ଆଦୌ ଚାହିଁବ ନାହିଁ । ସେ ନିଜର ବାହୁବଳରେ ବିପୁଳ ଧନ ରୋଜଗାର କରି ପାରିବ । ଯଦି ପୁତ୍ର କୁପୁତ୍ର ହୁଏ ତେବେ ଅଳ୍ପ କେଇଦିନ ଭିତରେ ଆପଣଙ୍କର ସବୁ ତ ଉଡ଼ାଇ ଦେବ । ଆପଣ ଏହିପରି ସଂଚୟ କରିବା ଦ୍ୱାରା ଆପଣଙ୍କର ଏହିଲୋକ ଓ ପରଲୋକ ଉଭୟ ତ ବିଗିଡ଼ି ଯିବ ।'' ହେଲେ କୃପଣ ଏ ସବୁ-କଥାକୁ ଶୁଣେ ନାହିଁ । ଦ୍ରବ୍ୟ ବ୍ୟୟ କରିବାରେ ତାକୁ ପ୍ରାଣାନ୍ତକ କଷ୍ଟ ହୁଏ । ଅନେକଙ୍କର ତ ଧନ ପଛରେ ଲାଗିରହି ପ୍ରାଣ ବି ଚାଲିଯାଏ, ତେବେ ବି ସେମାନେ ଧନ କଥା କୁହନ୍ତି ନାହିଁ । ଏପରି କଥା ପୁଅ, ଝିଅ, ପୁତୁରା, ଝିଆରୀ, ବୋହୂ ଆଦି ଥିବା ଘରେ ହେଲେ ଚଳିଯାଏ । ମାତ୍ର ଯାହାର ପୁଅ-ଝିଅ-ପତ୍ନୀ ନ ଥାନ୍ତି, ଘରବାଡ଼ି ଛାଡ଼ି ସନ୍ୟାସୀଙ୍କ ପରି ବେଶ ଧାରଣ କରି ନେଇଥାଏ, ଏହାପରେ ବି ଯାହାର ସଂଗ୍ରହର ବ୍ୟସନ ହୋଇଯାଇଥାଏ, ସେ ଧନ ଗୋଟି ଗୋଟି ସଂଚୟ ହିଁ କରିବାରେ ଲାଗିରହେ । ଯିଏ ଏପରି ଧନ ସଂଚୟ କରିଥାଏ, ତା' ଧନକୁ ଅନ୍ୟମାନେ ହିଁ ଭୋଗ କରିଥାଆନ୍ତି । ସେ କେବଳ ହୋଇଯାଏ ଧନ ସଂଗ୍ରହକାରୀ । ଧନ ନଷ୍ଟ ହୋଇଯିବା ପରେ ଯାହାର ଏଥିପ୍ରତି ବିରାଗ ହୋଇଯାଏ ତାହାର ଜାଣିବ ପୂର୍ବଜନ୍ମର ଅତ୍ୟନ୍ତ ପୁଣ୍ୟ ଉଦୟ ହୋଇଗଲା । ଧନ ନଷ୍ଟ ହୋଇଯିବା ପରେ ତାର ଅଶୁଭ ସଂସ୍କାର ସମସ୍ତ ନଷ୍ଟ ହୋଇଯାଏ ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ହେ ମୁନିଗଣ ! ଉଦ୍ଧବ ଯେତେବେଳେ ଅପମାନ ସହ୍ୟ କରିବା ଅତି କଠିନ କଥା ବୋଲି ଭଗବାନ୍‌ଙ୍କୁ କହିଲେ, ମାନ-ଅପମାନରେ ସମବୁଦ୍ଧି କିପରି ହୋଇପାରେ ତାହାର ଉପାୟ ପଚାରିଲେ ସେତେବେଳେ ଭଗବାନ୍ ଅତି ପ୍ରସନ୍ନ ହୋଇଯାଇ, ଉଦ୍ଧବଙ୍କର ପ୍ରଶ୍ନକୁ ପ୍ରଂଶସା କରି କହିବାରେ ଲାଗିଲେ—

''ହେ ଉଦ୍ଧବ ! ଲୋକ କଲ୍ୟାଣ ନିମନ୍ତେ ତୁମେ ଅତି ଉତ୍ତମ ପ୍ରଶ୍ନ ପଚାରିଛ । ହେ ଭକ୍ତାଗ୍ରଗଣ୍ୟ ! ଏହି ପ୍ରଶ୍ନ ତୁମର ଅନୁରୂପ ହିଁ ହୋଇଛି । ତୁମ ଭଳି ପରୋପକାରୀ ପୁରୁଷ ହିଁ କେବଳ ଏପରି ପୁଣ୍ୟପ୍ରଦ ପ୍ରଶ୍ନ ପଚାରି ପାରନ୍ତି । କାରଣ ସାଧାରଣ ଲୋକଙ୍କ ବୁଦ୍ଧିରେ ଏପରି ପ୍ରଶ୍ନ ସୃଷ୍ଟି ହୋଇପାରେ ନାହିଁ । ତୁମେ ସବୁ ବୁଝୁଛ, ହେଲେ ସାଧାରଣ ଲୋକମାନେ ଏହାକୁ ସହଜରେ ବୁଝି ପାରନ୍ତୁ ଏଥିପାଇଁ ତୁମର ଏହି ପ୍ରଶ୍ନ । କାହିଁକି ନ ଚାହିଁବ ! ତୁମେ ତ ଦେବତାମାନଙ୍କ ଗୁରୁ ବୃହସ୍ପତିଙ୍କର ଶିଷ୍ୟ । ବିଦ୍ୟା-ବୁଦ୍ଧିରେ ତୁମେ ତୁମ ଗୁରୁଙ୍କଠାରୁ କୌଣସି ଗୁଣରେ କମ୍ ନୁହଁ । ଏକଥା ସତ ଯେ ଦୁର୍ଜନଙ୍କର ଦୁରୁକ୍ତି ବଜ୍ରବାଣ

ଭଳି– ଏହାକୁ ସହିପାରିବା ଭଳି ସଜ୍ଜନ ସବୁଠାରେ ନଥାନ୍ତି। ଲକ୍ଷରେ, ଗୋଟିଏରେ ଏପରି ସମବୁଦ୍ଧି, ସହନଶୀଳ, ସାଧୁ ସ୍ୱଭାବର ସଜ୍ଜନ ସନ୍ଥ ମିଳିଥାନ୍ତି। ଲୋକମାନେ ଖୁବ୍ ମାଡ଼ ପ୍ରହାର ହସି ହସି ସହ୍ୟ କରୁଥିବା ଦେଖାଯାଏ। ମାତ୍ର ଦୁଷ୍ଟ ଲୋକଙ୍କ ମର୍ମସ୍ପର୍ଶୀ କଠୋର ବାକ୍ୟବାଣ ସହିବା ଲୋକ ଅତି ବିରଳ। ଅପରିଚିତର ଅପମାନ ଥରେ ସହିହୋଇ ପାରେ, କିନ୍ତୁ ପରିଚିତ ଦ୍ୱାରା ଅପମାନ ହୃଦୟରେ ଏପରି କ୍ଷତ ଉତ୍ପନ୍ନ କରିଦିଏ, ତାହା ଜୀବନ ଥିବା ପର୍ଯ୍ୟନ୍ତ ମଣିଷକୁ ବ୍ୟଥିତ କରିବାରେ ଲାଗେ।''

ଉଦ୍ଧବ ପଚାରିଲେ, ''ପ୍ରଭୁ ! ପରିଚିତଙ୍କ ଦୁର୍ବଚନ ଏପରି ପ୍ରଭାବ କାହିଁକି ପକାଏ ?''

ଭଗବାନ୍ କହିଲେ, ''ଆମକୁ ଯେଉଁଠାରେ କେହି ଜାଣି ନଥାନ୍ତି, ସେଠାରେ କେହି ଯଦି ଆମକୁ ଅପମାନିତ କରିଦିଏ, ତେବେ ସାଧାରଣତଃ ଆମେ ତାହାକୁ ଉପେକ୍ଷା କରିଦେଉ। ସେତେବେଳେ ଭାବୁ, 'ଯା ସହିତ ଆମର କି ସଂପର୍କ, ଆମକୁ ଏଇ ଜାଣେନାହିଁ, ଆମେ ବି ଯାକୁ ଜାଣୁନା।' କିନ୍ତୁ ପାଖରେ ପରିଚିତ, ଘନିଷ୍ଠ ମିତ୍ର ଲୋକ ଥିଲେ ଅପମାନ ସାଂଘାତିକ କଷ୍ଟ ଦିଏ। ସେହି ସମୟରେ ହିଁ ଯଥାର୍ଥ ସହନଶୀଳତାର ପରିଚୟ ମିଳେ। ଜଣେ ମହାତ୍ମା ଥିଲେ ତା' ପାଖକୁ ଜଣେ ଖୁବ୍ ବଡ଼ ଲୋକ ଗଲା। ଆଉ ପ୍ରାର୍ଥନା ନିବେଦନ କଲା– 'ମହାରାଜ ! ମୋତେ ଦୀକ୍ଷା ଦେଇ ଆପଣ ଶିଷ୍ୟ କରନ୍ତୁ।'

ମହାତ୍ମା କହିଲେ, ''ତୁମେ କିଛି ଦିନ ମୋ ପାଖରେ ରୁହ। ମୁଁ ତୁମର ଯୋଗ୍ୟତା ପରୀକ୍ଷା କରିବି। ତୁମେ ଦୀକ୍ଷା ପାଇବା ପାଇଁ ଯୋଗ୍ୟ କି ନୁହଁ ଦେଖିବି।' ଏପରି ଶୁଣି ମହାତ୍ମାଙ୍କ ସେବାରେ ଲାଗିଗଲା। ସେହି ଲୋକଟି ରାଜାଙ୍କ ଦ୍ୱାରା ଗୋଟିଏ ଅଞ୍ଚଳରେ ଶାସକ ରୂପେ କିଛି ଦିନ କାମ କରିଥିଲା। ତାକୁ ଦିନେ ମହାତ୍ମା କହିଲେ– ତୁମେ ଲଣ୍ଡା ହୋଇଯାଅ। ଘର ଘର ବୁଲି ପ୍ରତ୍ୟେକଙ୍କ ଘରୁ ମୁଠି ଭିକ୍ଷା ଆଣ।

ଲୋକ ଜଣକ ଯେଉଁ ଅଞ୍ଚଳର ଶାସକ ରୂପେ କାମ କରିଥିଲା ସେହି ଅଞ୍ଚଳରେ ଲଣ୍ଡା ହୋଇ ମୁଠି ଭିକ ମାଗିବାରେ ଲାଗିଲା। କେତେକ ମାନ ଦେଉଥାନ୍ତି, କେତେକ ଅପମାନ ବି ଦେଉଥାନ୍ତି। ହେଲେ ଉଭୟରେ ସେ ସମଭାବ ପୋଷଣ କରିଥାଏ। ଅପମାନରେ ଏହା ମନରେ କ୍ଷୋଭ ହେଉ ନଥିବା ଯେତେବେଳେ ମହାତ୍ମା ଦେଖିଲେ ତାକୁ ଦୀକ୍ଷା ଦେଲେ ଓ ଶିଷ୍ୟ ରୂପେ ଗ୍ରହଣ କରିନେଲେ।

ଅପମାନ ହେବାପରେ ଭାଗ୍ୟବଶତଃ ଯାହାର ମନରେ ବିବେକ ଉଦୟ ହୋଇଯାଏ, ସେ ଉତ୍ତୀର୍ଣ୍ଣ ହୋଇଗଲା ବୋଲି ଜାଣିବ। ଏ ସଂକ୍ରାନ୍ତରେ ଗୋଟିଏ ଅତି ପ୍ରାଚୀନ ଇତିହାସ ଅଛି– ତୁମେ ଯଦି ଇଚ୍ଛା କରିବ ତେବେ ତୁମକୁ ତାହା କହିବି।''

ଉଦ୍ଧବ ନିଜର ଦୀନତା ପ୍ରକାଶ କରି କହିଲେ, ''ପ୍ରଭୁ। ଏପରି ପୁଣ୍ୟପ୍ରଦ ପବିତ୍ର ଇତିହାସକୁ ଆପଣ ମୋତେ ନିଶ୍ଚୟ ଶୁଣାନ୍ତୁ। ଆପଣଙ୍କଠାରୁ ଦୃଷ୍ଟାନ୍ତ ଶୁଣିବା ପରେ ମୁଁ ନିଶ୍ଚୟ ଉତ୍ତମ ରୂପେ କଥାଟିକୁ ବୁଝିବା ପାଇଁ ସମର୍ଥ ହୋଇପାରିବି।''

ଭଗବାନ୍ କହିଲେ, ''ହେ ଉଦ୍ଧବ ! ଶୁଣ। ମୁଁ ଯେଉଁ ପବିତ୍ର ଇତିହାସ କହିବି ତୁମେ ଅତି ଆଗ୍ରହରେ ତାହା ଶ୍ରବଣ କରିବ। ମନକୁ ଆଦୌ ଏଣେ ତେଣେ ବିକ୍ଷିପ୍ତ କରିବ ନାହିଁ ସାବଧାନତା ସହକାରେ ସମାହିତ ଚିତ୍ତରେ ଏହା ଶୁଣିବ। ଏଥିରେ ଦୁର୍ଜ୍ଜନଙ୍କ ଦ୍ୱାରା ପ୍ରପୀଡ଼ିତ ଲୋକର ଇତିହାସ ବର୍ଣ୍ଣନା କରାହୋଇଛି। ଏବଂ ଏଥିରେ ତାର ବିବେକ ହୋଇଗଲା ମଧ୍ୟ।

"ଏହା ଅତି ପୁରାତନ କଥା । ସପ୍ତ ପୁଣ୍ୟ ପ୍ରଦାୟିନୀ ପୁରୀ ମଧ୍ୟରୁ ଅବନ୍ତୀ ଅନ୍ୟତମ । ପୁଣ୍ୟ ସଲିଳା ଭଗବତୀ କ୍ଷିପ୍ରାନଦୀ କୂଳରେ ଅବସ୍ଥିତ ଏହି ନଗରୀ ସେ ସମୟରେ ପରମ ସମୃଦ୍ଧିଶାଳିନୀ ଥିଲା । ବ୍ୟବସାୟ ବାଣିଜ୍ୟର ତାହା ଏକ ବିରାଟ ପେଣ୍ଠସ୍ଥଳୀ ଥିଲା । ସେ ପ୍ରାଚୀନ ନଗରୀରେ ଜଣେ ବ୍ରାହ୍ମଣ ରହୁଥିଲା । ସେ ବ୍ରାହ୍ମଣ କୂଳରେ ଜନ୍ମ ହୋଇଥିଲା ସତ୍ୟ କିନ୍ତୁ ବୈଶ୍ୟ ବୃତ୍ତି ଗ୍ରହଣ କରିଥିଲା । ବ୍ରାହ୍ମଣମାନେ ତ ନିଷ୍କିଞ୍ଚନ ହୋଇଥାନ୍ତି, ସେମାନେ ନିଜ ପାଖରେ କିଛି ସଂଚୟକରି ରଖନ୍ତି ନାହିଁ; ହେଲେ ସେହି ବ୍ରାହ୍ମଣଙ୍କର ସଂଚୟ କରିବା ନିମନ୍ତେ ଅତ୍ୟନ୍ତ ବ୍ୟସନ ଥିଲା । ବାଣିଜ୍ୟେ ବସତି ଲକ୍ଷ୍ମୀ, ତଦର୍ଦ୍ଧେ କୃଷି କର୍ମଣେ । ତେଣୁ ସେହି ବ୍ରାହ୍ମଣ ଦିନ ରାତି ବ୍ୟବସାୟ କଥା ଚିନ୍ତା କରୁଥାଏ ଓ କୃଷିକର୍ମ ମଧ କରୁଥାଏ । ଭାଗ୍ୟ ବି ଅନୁକୂଳ ଥିଲା । ଫଳରେ ବ୍ୟବସାୟରେ ପ୍ରଚୁର ଲାଭ ହେଉଥାଏ, ଉତ୍ତୋରତ୍ତର ଧନବୃଦ୍ଧି ହେବାରେ ଲାଗିଥାଏ ଏବଂ ଅଳ୍ପ ଦିନ ଭିତରେ ସେ ଜଣେ ଅତି ଧନାଢ୍ୟ ବ୍ୟକ୍ତି ବି ହୋଇଗଲା । ନଗରର ବଡ଼ ଧନୀ ଲୋକଙ୍କ ମଧ୍ୟରୁ ସେ ବି ହୋଇଗଲା ଅନ୍ୟତମ । ହେଲେ ସେ ଥିଲା ଅତି କୃପଣ । ଯଥାଶକ୍ତି ଗୋଟିଏ ପଇସା ବି ସେ ବ୍ୟୟ କରୁ ନଥିଲା । ପଇସାଟିଏ ରଖିବାର ସୁଯୋଗ ପାଇବା ମାତ୍ରେ ଅତି ଯତ୍ନରସହିତ ତାହା ସଂଚୟ କରି ଦେଉଥିଲା । ପଇସାଟିଏ ଖର୍ଚ୍ଚ ହୋଇଯିବା ସମ୍ଭାବନା କୌଣସିଠାରେ ଦେଖିଲେ ସେ ସେହି ସ୍ଥାନରୁ ଦୂରକୁ ପଳାଉଥିଲା । ସେ ନା ତ ନିଜେ ପେଟପୂରା ଖାଉଥିଲା, ନା ଘର ଲୋକଙ୍କୁ ଖୋଇଦେଉଥିଲା । ତା'ର ଅନେକଗୁଡ଼ିଏ ଧାନ ଅମାର ଥିଲା । ଅମାରଗୁଡ଼ିକରେ ଧାନ ପରିପୂର୍ଣ୍ଣ ରହୁଥିଲା । ଅମଳ ହେଉଥିବା ଧାନ ଶସ୍ୟର ଉତ୍କୃଷ୍ଟ ଧରଣର ଶସ୍ୟକୁ ସେ ଉଚ୍ଚମୂଲ୍ୟରେ ବିକ୍ରୟ କରି, ପଚା ଶଢ଼ା ତଥା ନିକୃଷ୍ଟ ଧରଣର ଶସ୍ୟକୁ ନିଜ ଘରେ ଖାଇବା ପାଇଁ ଦେଉଥିଲା । ଘର ଲୋକେ ଆପତ୍ତିରେ ଯଦି କୁହନ୍ତି, "ଶଢ଼ା ଅନ୍ନରୁ ଗନ୍ଧ ବାହାରୁଛି" ସେତେବେଳେ ସେ କହେ, "ଅନ୍ନ ଦେବତାଙ୍କୁ କଦାପି ଅପମାନ କରିବା ଉଚିତ ନୁହେଁ । ଅନ୍ନ ପୁଣି ଶଢ଼ା, ପଚା କ'ଣ ? ତାକୁ ଧୋଇଦିଅ, ଚୂରିଦେବା ପରେ ବ୍ୟବହାର କର । ବେଶୀ ଖାଇବା କ୍ଷତିକାରକ । ଯେତେ କମ୍ ଖାଇବ ସେତେ ସେ ଅମୃତ ଭଳି ଫଳ ଦେବ ।" ସେ ଏହିଭଳି ସମସ୍ତଙ୍କୁ ବୁଝାଇ ଦେଉଥିଲା ।

ପରିବାପତ୍ର କିଣିବା ପାଇଁ ସେ ନିଜେ ଯାଉଥିଲା । ପରିବା ବଜାରରେ ଭିଡ଼ କମିବା ପରେ, ଯେତେବେଳେ ଲୋକମାନେ ବଜାରରୁ ସବୁପ୍ରକାର ପରିବାପତ୍ର ନେଇଯାଇଥାଆନ୍ତି, ସେତେବେଳେ ସେ ଯାଇ ବଳକା ରହିଯାଇଥିବା ପଚାଶଢ଼ା ପରିବା ଶସ୍ତାରେ କିଣି ଆଣୁଥିଲା । ଘର ଲୋକ ଆପତ୍ତି ଅଭିଯୋଗ କଲେ ସେମାନଙ୍କୁ ବେଳେ ବେଳେ ବୁଝାଇ ଦେଉଥିଲା, ନ ହେଲେ ଧମକାଇ ଦେଉଥିଲା ।

ଲୁଗାପଟା କିଣିବାକୁ ବି ସେ ନିଜେ ଯାଉଥିଲା । ଯେତେ ପ୍ରକାର ପୁରୁଣାପୁରୁଣି, ଚିରା ଫଟା ଲୁଗା ସେ କିଣି ଆଣି ତାକୁ ସିଲାଇ କରି କରି ନିଜେ ପିନ୍ଧୁଥାଏ ଓ ଘରଲୋକଙ୍କୁ ପିନ୍ଧିବାକୁ ଦେଉଥାଏ । କେହି କୌଣସି ପ୍ରକାର ଖର୍ଚ୍ଚର କଥା କହୁଥିଲେ ସେ ଖୁବ୍ କ୍ରୋଧାନ୍ୱିତ ହୋଇ ଦୂର ଦୂର ମାର ମାର କରୁଥିଲା । ସେ ପୁଣି ଥିଲା ପ୍ରବଳ କାମୀ । ହେଲେ ସେ ଏପରି କୌଣସି କାମ କ୍ରୀଡ଼ା କରୁ ନଥିଲା ଯେଉଁଥିରେ ପଇସାଟିଏ ଖର୍ଚ୍ଚ ହୋଇଯିବାର ସମ୍ଭାବନା ଥାଏ । ଧନରକ୍ଷା ପାଇଁ ବସ୍ତୁତଃ ସେ ପ୍ରାଣକୁ ପଣ କରିଦେଇ ଥିଲା ।

''ପରିବାରରେ, ବନ୍ଧୁବାନ୍ଧବଙ୍କ ଘରେ କେବେ ଯଦି ଭୋଜିଭାତ ହୁଏ, ବିବାହ-ବ୍ରତ ହୁଏ, ଉତ୍ସବ-ମହୋତ୍ସବ ହୁଏ, ଏହି କୃପଣ ବ୍ରାହ୍ମଣ ଯୋଗ ଦେବାକୁ ଯାଏ ନାହିଁ। ସେ ଭାବେ, ଯଦି ସେ କାହାଘରେ ଖାଏ, ତେବେ ତାକୁ ବି ଦିନେ ଖାଇବାକୁ ଦେବାକୁ ହେବ। କାହାର ମୃତ୍ୟୁରେ କିମ୍ବା ଶ୍ରାଦ୍ଧରେ ଗଲେ ବି କିଛି ତ କରିବାକୁ ନିଶ୍ଚୟ ପଡ଼ିବ। ତେଣୁ ସେ ଯାଏ ନାହିଁ। ତା' ଘରକୁ କେହି ବନ୍ଧୁବାନ୍ଧବ ଆସିବା ଜାଣିଲେ ସେ କବାଟ ବନ୍ଦ କରିଦିଏ ଏବଂ ଯଦି କେହି ଆସିଯାଏ ତେବେ ତାଙ୍କ ସହିତ କଥାବାର୍ତ୍ତା କରେ ନାହିଁ, ଭୋଜନ ଦେବା ଦୂରେ ଥାଉ, ପାନ-ପାଣି ବି ଦିଏନାହିଁ। ଦିନଯାକ ରହିଥିଲେ ସେ ଅନ୍ୟବାଟେ ଘରୁ ପଳାଇଯାଏ। ଏପରିକି ଦିନ ଦିନ ଧରି, ଅତିଥି ଘରେ ଥିବା ପର୍ଯ୍ୟନ୍ତ ନିଜ ଘରକୁ ବି ଫେରେ ନାହିଁ। ଏହି ବ୍ରାହ୍ମଣ ଘରକୁ ତେଣୁ କେହି ଆସନ୍ତି ନାହିଁ।

ଘରେ ସ୍ତ୍ରୀ ଯଦି କହେ— ''ଆଜି ଅମାବାସ୍ୟା, ଆଜି ପୂର୍ଣ୍ଣମୀ– କୌଣସି ଲୋକଙ୍କୁ ସଂଚାଟିଏ ଦିଅ।'' ସେତେବେଳେ ବ୍ରାହ୍ମଣର କ୍ରୋଧ କହିଲେ ନ ସରେ। ସେ କହେ, ''ଦେବା କାହାକୁ? ଆମେ ପରା ବ୍ରାହ୍ମଣ। ବ୍ରାହ୍ମଣଙ୍କ କାମ ଦାନ ନେବା।'' ନିଜ ପିତାଙ୍କ ଶ୍ରାଦ୍ଧ ଦିନ ଯଦି ସ୍ତ୍ରୀ କୌଣସି ବ୍ରାହ୍ମଣ ହାତରେ ଶ୍ରାଦ୍ଧ କରାଇବା ପାଇଁ କହେ ସେତେବେଳେ କୃପଣ ବ୍ରାହ୍ମଣ କହେ, ''ସ୍ତ୍ରୀ ଜାତିଟା ବଡ଼ ମୂର୍ଖ। ହଇଲୋ, ଆଜିକାଲି ପୁରୋହିତ କେହି ଅଛନ୍ତି ! ସମସ୍ତେ ଠକ। ବ୍ରାହ୍ମଣଙ୍କୁ ଦେଲେ ମରିଯାଇଥିବା ଲୋକ ପାଇବ କିପରି କହିଲୁ।'' ସ୍ତ୍ରୀ ଏପରି କଥା ଶୁଣି ଚୁପ୍ ହୋଇଯାଏ। ଏହିଭଳି ସକଳ ପ୍ରକାର ଧର୍ମକର୍ମରହିତ ଏହି ବ୍ରାହ୍ମଣ ନା ଦେବତାଙ୍କୁ ପୂଜା କରେ ନା ପିତୃପୁରୁଷଙ୍କୁ। ଆଜି ପଚାଶ ଲକ୍ଷ ହେଲା, ଆଜି ଷାଠିଏ ଲକ୍ଷ ହେଲା– ଏହି ଚିନ୍ତା ତାକୁ ଦିନରାତି ଘାରିଥାଏ।

ଏହି ବ୍ରାହ୍ମଣର ଅନେକ ପୁଅଝିଅ ଥିଲେ। ପୁଅମାନଙ୍କୁ ପଇସାଟିଏ ତ ଦିଏ ନାହିଁ, ପୁଣି ପାଠ ବି ପଢାଏ ନାହିଁ। ପୋକା ଚଣାର ଶୁଖିଲା ରୁଟି ଖାଇବାକୁ ଦେଉଥାଏ, ତା' ଉପରେ ମନେ ମନେ ସେମାନଙ୍କର ମରଣ କାମନା ବି କରୁଥାଏ। ଝିଅମାନେ ବିବାହ ବୟସର ହୋଇଯାଇଥିଲେ। ସେ କିନ୍ତୁ ବିବାଘରର ନାଁ ଗନ୍ଧ ବି ନେଉ ନଥାଏ। ଝିଅମାନେ ତେଣୁ ମନେ ମନେ ବାପକୁ ଅତି ଖରାପ ଦୃଷ୍ଟିରେ ଦେଖୁଥାଆନ୍ତି। ଝିଅମାନଙ୍କ ପାଇଁ ସ୍ତ୍ରୀ ସବୁବେଳେ କନ୍ଦାକଟା କରୁଥାଏ। 'ଧନ ନେଇ ସେ କ'ଣ କରିବ ? ମୋ ଝିଅମାନେ ଅଭିଆଡ଼ି ରହିଗଲେ, ପୁଅମାନେ ମୂର୍ଖ ଅପାଠୁଆ ହୋଇଗଲେ ଇତ୍ୟାଦି ଏପରି ବାହୁନି କାନ୍ଦେ– ହେଲେ ସେ ଅବା କ'ଣ କରନ୍ତା, ବିଚରା ପରାଧୀନ ତ ହୋଇଯାଇଛି।

ନିଜର ଜାତିଭାଇମାନେ ଧନୀ ସ୍ୱଜନଙ୍କଠାରୁ କିଛି ନା କିଛି ଆଶା କରିଥାଆନ୍ତି। ଇଏ କିନ୍ତୁ ସମସ୍ତଙ୍କ ଆଶାକୁ ଏଡ଼ାଇ ଦିଏ। କାହାକୁ ଦାମୁଡ଼ିଏ ବି ଦିଏ ନାହିଁ। ଏଥିଯୋଗୁ କୌଣସି ଜାତିଭାଇ ତାକୁ ଆଦୌ ଭଲ ପାଆନ୍ତି ନାହିଁ। ବରଂ ପ୍ରଚୁର ନିନ୍ଦା କରନ୍ତି। ଚାକର ନୌକରଙ୍କୁ ସେ ନିର୍ଦ୍ଦମ୍ ଖଟାଏ, ମାତ୍ର ପେଟପୂରା ଉପଯୁକ୍ତ ଖାଦ୍ୟ ଦିଏ ନାହିଁ। ବରଂ କଷ୍ଟ ଦିଏ। ତେଣୁ ସେମାନେ ତାର ଉପସ୍ଥିତିରେ କାମ କରନ୍ତି, ଅନ୍ୟ ସମୟରେ ଠକନ୍ତି ଓ ମନେ ମନେ ନିନ୍ଦା କରନ୍ତି। ତା'ର ଜଣେ ବୋଲି କେହି ଶୁଭଚିନ୍ତକ ନ ଥିଲେ। କୃପଣର ମୃତ୍ୟୁ କିପରି ଶୀଘ୍ର ହୋଇଯାଉ, ଏହା ସମସ୍ତେ କାମନା କରୁଥିଲେ। ସେ ଦେବତାଙ୍କ ଉଦ୍ଦେଶ୍ୟରେ ନା କୌଣସି ଯାଗ ଯଜ୍ଞ କରୁଥିଲା, ନା ପିତୃଶ୍ରାଦ୍ଧ, ବା ଋଷିଶ୍ରାଦ୍ଧ, ଆଗତ ଅତିଥି ଅଭ୍ୟାଗତଙ୍କୁ ବି ଚାହୁଁ ନଥିଲା, କି ଭୁଲକ୍ରମେ ଭୂତଙ୍କୁ ବି ବଳି ଦେଉ ନଥିଲା।

ଯାହାଠାରୁ କିଛି ପାଇବା ପାଇଁ କେହି ଆଶା ରଖିଥିଲେ, ଯାହାଠାରୁ କିଛି ପାଇବା ପାଇଁ କାହାର ଯଦି ଅଧିକାର ଥାଏ, ଯଦି ତାହା ତାକୁ ନ ମିଳେ ତେବେ ସେ କ୍ରୁଦ୍ଧ ହୋଇଥାଏ । ଦେବତା, ପିତର, ଋଷି, ଅତିଥି ତଥା ଅନ୍ୟ ବଡ଼-ସାନ ସମସ୍ତ ପ୍ରାଣୀ ଗୃହକର୍ତ୍ତାଙ୍କଠାରୁ ଆଶା କରିଥାନ୍ତି । ଏଥିପାଇଁ ଗୃହସ୍ଥ ପ୍ରତ୍ୟହ ପଞ୍ଚଯଜ୍ଞ କରିବାର ବିଧିବିଧାନ ଅଛି । ସେ କିନ୍ତୁ ଏହି ପାଞ୍ଚ ଯଜ୍ଞ ଭିତରୁ ଗୋଟିକୁ ବି କରୁ ନଥିଲା । ଏଣୁ ସେହି ପଞ୍ଚ ତା' ଉପରେ ପ୍ରକୁପିତ ହୋଇଯାଇ ଥିଲେ ।

ଧନର ତିନୋଟି ଗତି ଥାଏ । ସେଗୁଡ଼ିକ ହେଲା– ଦାନ, ଭୋଗ ଆଉ ନାଶ । ଦାନ ତ ସେ କାହାକୁ ଦେଉ ନଥିଲା, ବରଂ ଅତିଥି, ଭିକ୍ଷୁ ଆଦି ଘରକୁ ଆସୁଥିବାର ଜାଣିଲେ କବାଟ ବନ୍ଦ କରିଦେଉଥିଲା । ଦ୍ୱିତୀୟ ଭୋଗ ନିମନ୍ତେ ସେ ଆଦୌ କିଛି ବ୍ୟୟ କରୁ ନଥିଲା । ଧନକୁ ଯେ ଭୋଗ କରେନାହିଁ, ଦାନ ଧର୍ମରେ ବ୍ୟୟ କରେ ନାହିଁ ସେ ତୃତୀୟ ଗତିର ଅଧିକାରୀ ହୋଇଯାଏ । ଅର୍ଥାତ୍ ନାଶ ହୋଇଯାଏ । ଏଣୁ ଧନକୁ କଦାପି ମୋହ ନ କରିବା ଉଚିତ । ଲକ୍ଷ୍ମୀ ହେଉଛନ୍ତି ଚଞ୍ଚଳା । ତାଙ୍କୁ ଆଦୌ ବିଶ୍ୱାସ କରିବା କଥା ନୁହେଁ । ଏଣୁ, **ଘରେ ଧନ ଭର୍ତ୍ତି ହୋଇଗଲେ, ଡଙ୍ଗାରେ ପାଣି ଭର୍ତ୍ତି ହୋଇଗଲେ, କ୍ଷତରେ ପୂଜ ଭର୍ତ୍ତି ହୋଇଗଲେ, ନର୍ଦ୍ଦମାରେ ପୋକ ଭର୍ତ୍ତି ହୋଇଗଲେ, ତାକୁ ସହସା ତ୍ୟାଗ କରିବା, ବାହାର କରିଦେବା ଦରକାର । ଏହା ଅଧିକ ସମୟ ରହିଲେ ଘୋର ଅନର୍ଥ, ଅନିଷ୍ଟ କରିଥାଏ ।** ସେହି କୃପଣ ବ୍ରାହ୍ମଣ କିନ୍ତୁ ଏହି କଥାକୁ ଆଦୌ ଜାଣିବାକୁ ଚେଷ୍ଟା କରୁ ନଥିଲା । ଯକ୍ଷ ଯେପରି କୁବେରଙ୍କ ଧନକୁ ରକ୍ଷା କରେ, ସେହିଭଳି ସେ କେବଳ ଧନକୁ ଜଗି ବସିଥାଏ । ସେଥିରୁ ଦାମୁଡ଼ିଟିଏ ବି ଖର୍ଚ୍ଚ କରୁ ନଥାଏ । ଦାନ ଓ ଭୋଗ-ରହିତ ଧନ ଖରାପ କାମରେ ଇ ଯାଏ । ଯିଏ ଧନକୁ ବ୍ୟୟ କରେ ନାହିଁ ତାକୁ ଅତି ଭୟଙ୍କର ରୋଗ ହୋଇଯାଏ । ଚିକିତ୍ସକ ନେଇଯାଏ । ପୁଣି ରାଜଦ୍ୱାରରେ ଭୟଙ୍କର ଅଭିଯୋଗ ହୋଇଯାଏ । ରାଜକର୍ମଚାରୀ ଓ ସାକ୍ଷ୍ୟ ପ୍ରଦାନକାରୀ ତାର ଅର୍ଥ ଶୋଷଣ କରିନିଅନ୍ତି । ଗୃହରେ ଏପରି ଜଣେ ହୋଇଯାଏ, ଯିଏ ଖରାପ କର୍ମରେ ସବୁ ପଇସା ଉଡ଼ାଇ ଦିଏ । ଧନ ଥିଲେ ତାହା କୌଣସି ନା କୌଣସି ଉପାୟରେ ତ ନିଶ୍ଚୟ ନାଶ ହେବ । ସେହି ବ୍ରାହ୍ମଣର ଧନ ଏବେ ସେହିଭଳି ନଷ୍ଟ ହେବାରେ ଲାଗିଲା । କାରଣ ସେ ଦେବତା ଓ ପିତରଙ୍କୁ ଅପମାନ ଦେଉଥିଲା । ତାର ପୂର୍ବ ପୁଣ୍ୟ (ଯାହା ଯୋଗୁଁ ପ୍ରଚୁର ଧନ ତା' ପାଖକୁ ଆସୁଥିଲା) କ୍ଷୀଣ ହୋଇଗଲା । ଆଜି ପର୍ଯ୍ୟନ୍ତ ତ ସେ ନାନା ଅକଥନୀୟ କଷ୍ଟକରି ଧନ ସଂଚୟ କରିଥିଲା, ଯେପରି ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଯିବା ପରେ ତାଙ୍କର ପତନ ଆରମ୍ଭ ହୋଇଯାଏ ; ସେହି ଭଳି ସଂଗ୍ରହ ପରେ ପରେ ବ୍ୟୟ କରୁ ନଥିବା ହେତୁ, ନାଶ ହେବା ଆରମ୍ଭ ହୋଇଗଲା ।

ପୁଅମାନେ ବଡ଼ ହୋଇଯାଇଥିଲେ । ସେମାନେ ଦିନେ ମା'କୁ କହିଲେ, ''ମା' ! ବାପା କିଛି ଦେଉନାହାନ୍ତି । ଆମେ କିଛି କରିବା ପାଇଁ ଚାହୁଁଛୁ । ହେଲେ ଟଙ୍କା ବିନା ତ କିଛି ହୋଇପାରିବ ନାହିଁ । ଭଉଣୀମାନେ ବି ତ ବଡ଼ ହୋଇଗଲେଣି । ସେମାନଙ୍କର ବିଭାଘର ହୋଇଯିବା କଥା । ଏ ସବୁ ହେବ କିପରି ?''

ମା' କହିଲା, ''ଆରେ ପିଲେ ! ମୁଁ କ'ଣ କରିବି ! ମୋ କଥା ସିନା ଶୁଣିଲେ ! ତୁମେମାନେ ଜାଣିଛ, ମୋ ପାଖରେ ଫଟା ପାହୁଲାଟିଏ ବି ନାହିଁ । ସେ ତ ଟଙ୍କା ରଖିବାରେ ପାଗଳ ହୋଇଯାଇଛନ୍ତି । ରଖି ରଖି କ'ଣ କରିବେ କେଜାଣି ?''

ପୁଅମାନେ କହିଲେ, ''ମା' ! ଗୋଟିଏ ଉପାୟ ଅଛି । ତୁମେ ରାଜି ହେଲେ, କରନ୍ତେ ।''

ମା' କହିଲା, ''କ'ଣ କରିବ ?''

ପୁଅମାନେ କହିଲେ, ''ଏଥର ଟଙ୍କା ନେଇ ଘରକୁ ଆସିବା ବେଳେ ଆମେ ତାହା ଛଡ଼ାଇ ନେବୁ ।''

ମା' ଶଙ୍କିତ ଚିତ୍ତରେ କହିଲା, ''ଆରେ ପିଲେ ! ମରାମରି ହୋଇଯିବ । ଏଇଟା ଠିକ୍ ହେବ ନାହିଁ । ଛଡ଼ାଇ ନେବା ଉଚିତ ହେବନାହିଁ ।''

ପୁଅମାନେ କହିଲେ, ''ଅନ୍ୟ ଉପାୟ କିଛି ଦେଖା ଯାଉନି । କକେଇ ଏଥିରେ ସହମତ ।''

ମା' ବି ତ ପୁଅଙ୍କ ପାଇଁ ଇଚ୍ଛା କରୁଥିଲା, ତେଣୁ ସେ ଅଗତ୍ୟା କହିଲା, ''ହଉ ! ତୁମକୁ ଯାହା ଠିକ୍ ଦେଖାଯାଉଛି କର । ହେଲେ ତାଙ୍କୁ ଅପମାନ କରିବ ନାହିଁ । ହେଲା ।''

ପୁଅମାନେ କହିଲେ ''ନା ମା ! ଆମେ ଅପମାନ କାହିଁକି କରିବୁ ! ଆମ ମତଲବ ତ ଟଙ୍କାରେ ।''

ପୁଅମାନେ ସୁଯୋଗ ଅପେକ୍ଷାକରି ଜଗି ରହିଲେ । ଦିନେ ବାପ ଯେତେବେଳେ ଦଶ ହଜାର ଟଙ୍କା ଧରି ଚୁପ୍ ଚାପ୍ ଘରକୁ ଆସିଲା, ସେମାନେ ଘେରି ଗଲେ ; ଆଉ କହିଲେ, ''ବାପା ! ଆମ ଭଉଣୀମାନେ ବଡ଼ ବଡ଼ ହୋଇଗଲେଣି । ସେମାନଙ୍କର ବିଭାଘର ହେବ କିଛି ଟଙ୍କା ଦିଅନ୍ତୁ ।''

ବାପର ରାଗ ଆଉ ଦେଖେ କିଏ ! ସେ ଜର୍ଜର ସ୍ୱରରେ କହିଲା, ''ମୋ ପାଖରେ ଟଙ୍କା ନାଇଁ ?''

ପୁଅମାନଙ୍କ ଭିତରୁ ଜଣେ କହିଲା, ''ଆପଣ ସେ ଥଳୀରେ କ'ଣ ଧରିଛନ୍ତି ?

ବାପା କହିଲା, ''ଯାହାହେଲେ, ତୁମର ସେଥିରେ କ'ଣ ଅଛି ?

ପୁଅମାନେ କହିଲେ ''ଆମର ଟଙ୍କା ଦରକାର ।''

ବାପା କହିଲା, ''ମୋ ପାଖରେ ଟଙ୍କା ପଇସା ନାହିଁ ।''

ପୁଅମାନେ କହିଲେ, ''ନାହିଁ ? ସେଥିରେ କ'ଣ ଧରିଛ ଦେଖିବା ।'' ବାପ ଟଙ୍କା ଥଳୀକୁ ସମସ୍ତଙ୍କ ସାମନାରେ ନିଜ କାଖରେ ଲୁଚାଇବାରେ ଲାଗିଲା । ବଡ଼ ପୁଅ ବାପକୁ କୁଣ୍ଢାଇ ଧରିଲା । ସାନ ଦୁଇଭାଇ ଟଙ୍କା ଥଳୀଟିକୁ ଜବରଦସ୍ତ ଛଡ଼ାଇନେଇ ଚମ୍ପଟ ମାଇଲେ । ବାପ ଖୁବ୍ ବକର ବକର ହେଲା, ହେଲେ ରାଜଭୟରେ, କଥାଟା ଲୋକରେ ପ୍ରକଟ ହୋଇଯିବା ଭୟରେ ବଡ଼ପାଟି କଲା ନାହିଁ । ମନମାରି ସେଇଠି ବସିଗଲା । ହେଲେ କଥାଟା ଲୁଚିଲା ନାହିଁ ।

ଏହି କୃପଣ ଘରଉପରେ ଅନେକ ଦିନରୁ ଚୋରମାନଙ୍କର ଲୋଲୁପଦୃଷ୍ଟି ରହିଥିଲା । ସେମାନେ ତତ୍ପର ହୋଇଉଠିଲେ । ଆଉ ଅନୁସନ୍ଧାନ କରି ଜାଣିଲେ ଯେ ଅମୁକ ଘରେ ବ୍ରାହ୍ମଣ ପ୍ରଚୁର ଧନ ପୋତି ରଖିଛି । ଦିନେ ଦଶ ବାର ଜଣ ସିନ୍ଧି କାଟି ସେହି ଘରେ ପଶିଗଲେ । ଯାହା ପାଇଲେ ସେ ସବୁ ଚୋରାଇ ନେଲେ । ପରଦିନ ବ୍ରାହ୍ମଣ ସେଇ ଘରକୁ ଦେଖିବାକୁ ଯାଇ ଦେଖେ ତ ଘରଟା ଖୋଳାଖୋଳି ହୋଇଛି, ମାଲପତ୍ର ଚାଲିଯାଇଛି ।

ବ୍ରାହ୍ମଣ ଅତ୍ୟନ୍ତ କାତର ହୋଇଗଲା । ହେଲେ ମୁହଁ ପୋତି ରହିଗଲା । କହିଲେ ବି କାହାକୁ କୁହନ୍ତା ! ବରଂ ତାକୁ ସମସ୍ତେ ଦେଖି ହସିଥାନ୍ତେ । ତେଣୁ କାହାକୁ ହେଲେ ସେ ଏ କଥା କହିପାରିଲା ନାହିଁ ।''

ଲୋକମାନେ ତା' ପ୍ରତି ବସ୍ତୁତ କଳହୋପଜୀବୀ ଥିଲେ । କୌଣସି ପ୍ରକାର ଅଭିଯୋଗ ହେଲେ ସେମାନେ କିଛି ଫାଏଦା ଉଠାନ୍ତେ । ସେମାନେ ଯୋଜନା କରି ଦିନେ ଜଣେ ଗୁଣ୍ଡା ଶ୍ରେଣୀର ବଳବାନ୍ ଲୋକକୁ ମନ୍ତ୍ରଣାଦେଇ କୃପଣ ବ୍ରାହ୍ମଣକୁ ଖୁବ୍ ମାଡ଼ ମାରିଲେ, ଆଉ ରାଜଦ୍ୱାରରେ ତା' ନାମରେ ଅଭିଯୋଗ ବି କରିଦେଲେ । ତା' ଉପରେ ସମସ୍ତେ ଚିଡ଼୍ ଚିଡ଼୍ ହେଉଥିଲେ, ସେମାନଙ୍କ ଭିତରୁ କେହି ବ୍ରାହ୍ମଣ ପାଇଁ ସାକ୍ଷୀ ହେଲେ ନାହିଁ । ରାଜା ବ୍ରାହ୍ମଣକୁ ଜଣେ ମହତ କୃପଣ ବୋଲି ଜାଣି ମାତ୍ରାଧିକ ଦଣ୍ଡ ଦେଲେ । ରାଜାଙ୍କ ପାଖରେ ସେ ଅବା କ'ଣ କରନ୍ତା ! ବହୁ କଷ୍ଟରେ ରାଜାଙ୍କୁ ଅର୍ଥଦଣ୍ଡ ଦେଲା । ଏଣିକି କୃପଣର ଦିନ ଗଡ଼ି ଆସିଲା ।

ଗୋଟିଏ ଗାତରେ ସେ ପ୍ରଚୁର ଧନ ପୂରାଇ ଥିଲା । ସେ ଧନ କୁଆଡ଼େ ଉଭାନ୍ ହୋଇଗଲା ଯେ ସେ ପତ୍ତା ପାଇଲା ନାହିଁ । ଆଉ ଗୋଟିଏ ଗାତରେ ପୋତିଥିବା ଧନ କୋଇଲା ହୋଇଗଲା । ଯେଉଁମାନେ କୃପଣଠାରୁ ଋଣ ନେଇଥିଲେ, ସେ ଧନ ସେଇଆଡ଼େ ରହିଲା । କେହି କିଛି ଦେଲେ ନାହିଁ । ଏଣେ ବ୍ୟବସାୟ ପତ୍ରରେ କ୍ଷତି ତଥା ମାନ୍ଦା ହୋଇଗଲା । ଯେଉଁମାନଙ୍କର କିଛି ଦେବାକୁ ଥିଲା, ସେମାନେ ରାଜାଙ୍କ ସହାୟତାରେ ତାହା ଆଉ ଦେଲେ ନାହିଁ । କୃପଣର ଘର ଦ୍ୱାର ବିକ୍ରିବଟା ଆରମ୍ଭ ହୋଇଗଲା । ସ୍ତ୍ରୀ ଓ ପୁଅମାନେ ଟଙ୍କା ପାଇବାକ୍ଷଣି ତା'ଠାରୁ ଅଲଗାହୋଇ ଚଳିବାରେ ଲାଗିଲେ । ଏବେ ଆଉ ତା' ପାଖରେ ପଇସାଟିଏ ରହିଲା ନାହିଁ । ଗାଁ ଲୋକମାନେ, ଘର ଲୋକମାନେ ତା'ର କୃପଣ ଆଚରଣରେ ତ ଅତି ବିମୁଖ ଥିଲେ, ତା'ର ବି କାହାସହିତ ସାମାନ୍ୟମାତ୍ର ସହାନୁଭୂତି ନଥିଲା । ଧନ ଥିବା ପର୍ଯ୍ୟନ୍ତ ସେ କାହାକୁ ପଦେବୋଲି ପଚାରୁ ନଥିଲା, କି ଖାତିର କରୁ ନଥିଲା । ତା'ର ଏବେ ସବୁ ଚାଲିଯିବା ପରେ ସେ କୁଟୁମ୍ବଲୋକଙ୍କର ସହାୟତା ଚାହିଁଲା । ହେଲେ ସହାୟତା ଆଶାରେ ଯୁଆଡ଼େ ଗଲା କେବଳ ଜଘନ୍ୟ ତିରସ୍କାର ମିଳିବା ହିଁ ସାର ହେଲା ଲୋକମାନେ ତା' ସହିତ ଥଟ୍ଟାପରିହାସ କରିବାରେ ଲାଗିଲେ, ଆଉ ଅକଥନୀୟ ଭର୍ତ୍ସନା ମଧ୍ୟ କଲେ । ଧନ ଥିବାବେଳେ ତ ସେ କେବେହେଲେ ଘୃତ ଦଧି ଆଦି ପୌଷ୍ଟିକ ଖାଦ୍ୟ ଖାଇ ନଥିଲା, ଖାଇଥିଲେ ବୃଦ୍ଧାବସ୍ଥାରେ କିଛି ସହାୟତା ମିଳିଥାନ୍ତା, ସ୍ୱାସ୍ଥ୍ୟର ଘୋର ଅବନତି ଘଟିଲା, ଶିଥିଳ ହୋଇଗଲା । ସବୁଆଡୁ ତିରସ୍କାର ମିଳୁଥିବାରୁ ତା'ର ଶ୍ରୀ ବି ନଷ୍ଟ ହୋଇଗଲା । ଧର୍ମହୀନ ହୋଇଯିବାରୁ ସେ ପ୍ରଭାବହୀନ ଓ ଅଳ୍ପଦିନରେ ପୂରା ନିସ୍ତେଜ ହୋଇଗଲା । ଧର୍ମରେ ସେ କିଛି ଅର୍ଥ ବ୍ୟୟକରିଥିଲେ ତାକୁ ସନ୍ତୋଷ ମିଳିଥାନ୍ତା ଯେ ସେ ତା'ର କିଛି ପଇସା ସୁକୃତିରେ ବିନିଯୋଗ କରିଛି । ସେ ଯେଉଁ ଧନ ଚିନ୍ତା କରି କରି ସମୟ ବ୍ୟତୀତ କରିଦେଇଛି ବର୍ତ୍ତମାନ ତାହା ତା'ର କାଳ ହୋଇଗଲା । ତା'ର ଏବେ ଦୁଃଖ, ଦୁଶ୍ଚିନ୍ତା ଆଉ ବିଷର୍ଣ୍ଣତାର ସୀମା ନାହିଁ । ତା'ର ହୃଦୟ ଏବେ ନିରନ୍ତର ରଡ଼ ନିଆଁରେ ପଡ଼ିଥିବା ଚକ୍ଷୁ ଭଳି ଦଗ୍ଧ ହେବାରେ ଲାଗିଲା । ଅନ୍ତଃକରଣ ସତତ ସନ୍ତପ୍ତ ହେବାରେ ଲାଗିଲା । ଚିତ୍ତ ସବୁବେଳେ ଖିନ୍ନ ରହିଲା । ସ୍ୱଜନଙ୍କ ତିରସ୍କାରରେ, ନିଜର କୁକର୍ମ ଯୋଗୁ ତା' ଆଖିରୁ ଅନବରତ ନିରାଶାର ନୀର ପ୍ରବାହିତ ହେବାରେ ଲାଗିଲା । କଣ୍ଠ ବାଷ୍ପରୁଦ୍ଧ ରହୁଥିବାରୁ ସେ କାହାକୁ

କିଛି କହିପାରୁ ନ ଥାଏ ; କେହି ବି ତା' ସହିତ କଥା ହେବାକୁ ଚାହୁଁ ନଥାନ୍ତି। ଚାହୁଁ ନଥାନ୍ତି। ସାଧାରଣତଃ ଦେଖାଯାଏ ସ୍ନେହୀ ଜନଙ୍କ ପାଖରେ ଦୁଃଖ ପ୍ରକାଶ କରିଦେଲେ ହୃଦୟ ହାଲକା ହୋଇଯାଏ। ସେ କିନ୍ତୁ କାହା ପାଖରେ କ'ଣ କହନ୍ତା, ଅବା କିଏ କାହିଁକି ତା' କଥା ଶୁଣନ୍ତା— ସେ ତ ପୂର୍ବେ କାହାକଥା ଶୁଣିନାହିଁ! ସମସ୍ତଙ୍କ ପାଇଁ ତ ସେ ଦାଣ୍ଡଦ୍ୱାର ବନ୍ଦ କରିଦେଉଥିଲା! ତା'ର ବିପତ୍ତିରେ ତେଣୁ ସମସ୍ତେ ବସ୍ତୁତଃ ପ୍ରସନ୍ନ ଥିଲେ। ଆଶା କରି ଯେଉଁଆଡ଼େ ବି ଯାଉଥିଲା, ଦୂର୍ ଦୂର୍ ମାର୍ ମାର୍ ଶୁଣୁଥିଲା। ଏପରି ପରିସ୍ଥିତିରେ, ସଂସାରରେ ରହିବା ପାଇଁ ତା'ର ଆଉ ମନହେଲାନାହିଁ। ତା' ମନରେ ଧୀରେ ଧୀରେ ଘୋର ବୈରାଗ୍ୟ ଜାତ ହେଲା। ସେ କ୍ରମେ ହୃଦ୍‌ବୋଧ କଲା ଯେ ଏହି ସଂସାର ହେଉଛି ଦୁଃଖମୟ; ସେ ଅନୁଭବ କଲା, ଏହି ସଂସାରରେ ସୁଖ ଆଶା କରିବା ଘୋର ମୂର୍ଖତା। ଏପରି ବୈରାଗ୍ୟ ଭାବ ଆସିଯିବା ପରେ ପରେ ସେହି କୃପଣ ବ୍ରାହ୍ମଣର ଅଶାନ୍ତ ଚିତ୍ତ କ୍ରମେ ଶାନ୍ତ ହୋଇଗଲା। ଏଣିକି ସେ 'ମୋ' କଥା ଭାବିବାରେ ଲାଗିଲା।''

ଉଦ୍ଧବଙ୍କୁ ଭଗବାନ୍ କହୁଛନ୍ତି, ''ହେ ଉଦ୍ଧବ! ଯେକୌଣସି ଉପାୟରେ ହେଉ, ଜୀବର ମୋ କଥା ମନେପଡ଼ିଗଲେ ହେଲା। ତେଣିକି ମୁଁ ତା'ର ଉଦ୍ଧାର କରିଦେବି।''

ଉଦ୍ଧବ ପଚାରିଲେ, ''ତାହାହେଲେ କ'ଣ ଭଗବନ୍, ଆପଣ ସେହି ଦାନ-ଧର୍ମହୀନ କୃପଣ ବ୍ରାହ୍ମଣକୁ ଉଦ୍ଧାର କଲେ ?''

ଭଗବାନ୍ କହିଲେ, ''ହଁ! କ'ଣ ହେଲା! ମୁଁ ତା' ଉଦ୍ଧାର ଯେଉଁଭଳି କଲି ତୁମକୁ କହୁଛି ଶୁଣ।''

ମହାପ୍ରାଜ୍ଞ ସୂତ କହୁଛନ୍ତି— ''ହେ ମୁନିଗଣ! ଏବେ ଆପଣମାନେ ସେହି କୃପଣ ଦ୍ୱିଜର ଅଭ୍ୟୁଦୟ ପ୍ରସଙ୍ଗ ଶୁଣନ୍ତୁ। ତା'ର କିପରି ବୈରାଗ୍ୟ ଆସିଲା ସେହି କଥା କହିବି।''

## ଛପ୍‌ପୟ

ଭୟୌ କୃପନ ଧନ ରହିତ ବାତ ଅବ କୋଇ ନ ବୁଝୈ।
ମାରେ୍ୟା ମାରେ୍ୟା ଫିରୈ ନ ମାରତା ସୁଖକର ସୁଝୈ॥
ଆଶା କରିକେ ଜାଇ ଜହାଁ ତହଁ ଧକ୍‌କା ପାବୈ।
ହ୍ୱୈ ଚିନ୍ତା ମହଁ ଗ୍ରସ୍ତ ନୟନ ତେ ନୀର ବହାବୈ॥
ଅବ ପଛିତାବତ କୃପନ ଅତି, ଲଈ ଉକ୍ତ ଚରନନି ଶରନ।
ଗହି ପଦ ଗଦ୍‌ଗଦ୍ କଂଠ ତୈ, ବିକଲ ବିଲଖି ବୋଲ୍ୟୋ ବଚନ॥



# କୃପଣର ବୈରାଗ୍ୟ

ତସ୍ୟୈବଂ ଧ୍ୟାୟତୋ ଦୀର୍ଘଂ ନଷ୍ଟରାୟସ୍ତପସ୍ୱିନଃ ।
ଖିଦ୍ୟତୋ ବାଷ୍ପକଣ୍ଠସ୍ୟ ନିର୍ବେଦଃ ସୁମହାନଭୂତ୍ ।। ★

[ଶ୍ରୀଭା.୧୧ସ୍କ.୨୩ଅ.୧୩ ଶ୍ଳୋକ]

**ଛପ୍ପୟ**

ମୈ ନହିଁ କୀୟୋ ଧରମ କରମ କଛୁ ଦ୍ରବ୍ୟ କମାୟୌ ।
ସୋଉ ସବ ନସି ଗୟୌ କାମ ମେରେ ନହିଁ ଆୟୌ ।।
କୃପନନି କୋ ଧନ ଧରମ ଭୋଗ ମହଁ କାମ ନ ଆବୈ ।
ଦୁଖ କୋ କାରନ ବନୈ ଲୋକ ପରଲୋକ ନସାବୈ ।।
ଧନ ଅର୍ଜନ ବ୍ୟୟ ନାଶ ମହଁ, ଶ୍ରମ ଭ୍ରମ ଭୟ ମଦ ହୋହି ଦୁଖ ।
ଚିତ ଚିନ୍ତିତ ସବ ଜନ କୁଢ଼ୈ, କହୋ ଦ୍ରବ୍ୟ ମହଁ କୌନ ସୁଖ ।।

ଯେଉଁ ଦୁଃଖରେ ଦୁଃଖହାରୀ ଦୟାନିଧି ମନେ ପଡ଼ନ୍ତି, ଯେଉଁ ଦୀନତାରେ ଦୀନବନ୍ଧୁଙ୍କ ସ୍ମରଣ ହୁଏ, ଯେଉଁ ଚିନ୍ତାରେ ଚିତ୍ତଚୋର ଚିନ୍ତାମଣିଙ୍କ ଚିନ୍ତନ ହୁଏ, ଆଉ ଯେଉଁ ନିର୍ଦ୍ଧନତାରେ ନିଷ୍କିଞ୍ଚନଙ୍କର ପରମଧନ ଧନେଶ୍ୱର ପରମେଶ୍ୱରଙ୍କ ପାଦପଦ୍ମରେ ପ୍ରେମ ଜାତ ହୁଏ– ସେ ସମସ୍ତକୁ ପରମାତ୍ମାଙ୍କର ପରମ କୃପା ବୋଲି ଅନୁଭବ କରିବା ଉଚିତ । ସାଧାରଣତଃ ଦୁଃଖରେ ଲୋକମାନଙ୍କୁ ପାପ ସୁହାଏ । ସେମାନଙ୍କର ପ୍ରବୃତ୍ତି ଅନ୍ୟାୟ କାର୍ଯ୍ୟଆଡ଼କୁ ସ୍ୱତଃ ମୁହାଁଏ । ଯେଉଁ ଦୁଃଖର ଚିନ୍ତାରେ କୌଣସି ପ୍ରେମୀ ଆଶ୍ରୟ ଦିଅନ୍ତି ନାହିଁ, ଆଉ ଭଗବଦ୍‌ଭକ୍ତଙ୍କର ଶରଣ ସେ ପାଇଯାଏ, ସେତେବେଳେ ଜାଣିବାକୁ ହେବ ଯେ ଅନନ୍ତ ଜନ୍ମର ମହାନ୍ ପୁଣ୍ୟ ତା'ର ଉଦୟ ହୋଇଯାଇଛି । ଭଗବଦ୍‌ଭକ୍ତଙ୍କ ଶରଣ ନେବାପରେ କେହି କେବେ ଦୁଃଖୀ ରହିପାରେ ? ଅସମ୍ଭବ । ତା'ର ଇହଲୋକ ଓ ପରଲୋକ ଉଭୟ ନିର୍ମଳ ହୋଇଯାଏ ।

ମହାପ୍ରାଜ୍ଞ ସୂତ କହୁଛନ୍ତି– ଉଦ୍ଧବଙ୍କୁ ସେହି କୃପଣ ବିପ୍ର କଥାପ୍ରସଙ୍ଗରେ ଭଗବାନ୍ କହୁଛନ୍ତି, ''ହେ ଉଦ୍ଧବ ! ସଂସାରରେ ଲୋକମାନଙ୍କ ପ୍ରେମ ସ୍ୱାର୍ଥମୂଳକ ହୋଇଥାଏ, ଅହୈତୁକ ହୋଇଥାଏ । କେତେକ ଧନ ପାଇଁ ଧନୀଙ୍କୁ ପ୍ରେମ କରନ୍ତି– ଯେ ପର୍ଯ୍ୟନ୍ତ ଧନ ଥାଏ

---

★ ଏମନ୍ତେ ବିପ୍ର ଦୁଃଖଚିତ୍ତେ । ରାତ୍ର ଦିବସ ଭାଳେ ନିତ୍ୟେ ।।
ବିକଳ ଚିତ୍ତେ ଦୁଃଖେ କାନ୍ଦେ । ନିର୍ଦ୍ଧନେ ବାନ୍ଧବ ବିଚ୍ଛେଦେ ।।
ଏମନ୍ତେ ଚିନ୍ତା-ଶୋକଭରେ । ପଡ଼ିଲା ତୀବ୍ର-ତାପଜ୍ୱରେ ।।
ଭାଳଇ ଅତି ଭୟଚିତ୍ତେ । ମୁଁ ଏବେ ବଞ୍ଚିବି କେମନ୍ତେ ।।
ଏମନ୍ତେ ଭାଳୁ ଭାଳୁ ଦିନେ । ବୈରାଗ୍ୟ ଉପୁଜିଲା ମନେ ।।

[ଭାଗବତ : ଜଗନ୍ନାଥ ଦାସ : ୧୧ ସ୍କନ୍ଧ ୨୪ ଅ]

ସେ ପର୍ଯ୍ୟନ୍ତ କହୁଥାନ୍ତି— ତୁମେ ଇନ୍ଦ୍ର, ତୁମେ କୁବେର, ବରୁଣ ଇତ୍ୟାଦି ଇତ୍ୟାଦି। ହେଲେ ଯେତେବେଳେ ଧନ ନଷ୍ଟ ହୋଇଯାଏ, ସେତେବେଳେ ସେମାନେ ଦେଖି ନଦେଖିବା ଭଳି ମୁହଁ ମୋଡ଼ି, ବାଟ କାଟି ଚାଲିଯାଆନ୍ତି। ଅନେକ ରୂପାସକ୍ତି ହେତୁ ପ୍ରେମ କରନ୍ତି। ସୁନ୍ଦର ରୂପ ଦେଖିଲେ ସେମାନେ ଆକର୍ଷିତ ହୋଇଯାଆନ୍ତି। ତାଙ୍କ ପାଇଁ ସର୍ବସ୍ୱ ଉତ୍ସର୍ଗ କରି ଦିଅନ୍ତି, ଆଉ ପ୍ରତିବଦଳରେ, ଧନେଚ୍ଛାରେ ସେମାନେ ବି ଯାକୁ ପ୍ରେମ ପ୍ରଦର୍ଶନ କରନ୍ତି। ଆଉ ଯେତେବେଳେ ରୂପ ନଷ୍ଟ ହୋଇଯାଏ, ଯାର ପ୍ରେମ କରିବା ବି ସରିଯାଏ। ଅଥବା ପ୍ରେମିକର ଧନ ସରିଗଲେ ତେଣେ ପ୍ରେମ ବି ସରିଯାଏ— ପ୍ରେମ ତ ନୁହେଁ, ପ୍ରେମର ଅଭିନୟ ସରିଯାଏ। ଆଉ ଅନ୍ୟ ସ୍ଥଳରେ, ସୁନ୍ଦର ମଧୁର କଣ୍ଠସ୍ୱର ଶୁଣି ଅଥବା ଅନ୍ୟ କୌଣସି କଳା ଦେଖି ଲୋକମାନେ ପ୍ରେମ କରିବାରେ ଲାଗନ୍ତି। କଳା ଯେତେବେଳେ ଆଉ ରହେ ନାହିଁ,କଳା ପ୍ରଦର୍ଶନର ଶକ୍ତି ହ୍ରାସ ହୋଇଯାଏ, ସେତେବେଳେ ପ୍ରେମ ବି ନଷ୍ଟ ହୋଇଯାଏ। କିନ୍ତୁ ଏକମାତ୍ର ମୋ ଭକ୍ତମାନେ ହୃଦୟର ସହିତ ନିସ୍ୱାର୍ଥ ପ୍ରେମ କରିଥାନ୍ତି। ଅତି ଦୁଃଖୀ ଦରିଦ୍ରଙ୍କୁ ବି ସେମାନେ ପଚାରନ୍ତି, ଭଲ ମନ୍ଦ ବୁଝନ୍ତି, ଧୈର୍ଯ୍ୟ ଦିଅନ୍ତି, ନିଜର ଯୋଗ୍ୟତା ଅନୁସାରେ ମଙ୍ଗଳପ୍ରଦ ବାଟ ଦେଖାନ୍ତି, ଦୁଃଖ ନିବୃତ୍ତିର ଉପାୟ ବତାନ୍ତି, ତଥା ସମ୍ବେଦନଶୀଳ ହୋଇଥାନ୍ତି। ବୈରାଗ୍ୟ ଆସିଯିବା ପରେ ପରେ ସେହି କୃପଣ ବିପ୍ରର ସୌଭାଗ୍ୟକ୍ରମେ ଜଣେ ଭଗବଦ୍‌ଭକ୍ତଙ୍କ ଦର୍ଶନ ହୋଇଗଲା।

''ଧନ ନଷ୍ଟ ହୋଇଯିବା ପରେ ସେହି କୃପଣ ବିପ୍ର ଅତି ଦୁଃଖରେ କାଳାତିପାତ କରୁଥିଲା, ଦିନେ ଦିନେ ଭୋକ ଉପାସରେ କଟାଉ ଥିଲା, କାହାକୁ ମୁହଁ ଦେଖାଇବାକୁ ସେ ଲାଜ କରୁଥିଲା ଓ ଅନବରତ ଆଖିରୁ ଲୁହ ଗଡ଼ାଇ ଗଡ଼ାଇ ଇତସ୍ତତ ବୁଲୁଥିଲା।

ଦିନେ ବୁଲୁ ବୁଲୁ ସୌଭାଗ୍ୟକ୍ରମେ ସେ ଜଣେ ପରମ ଭାଗବତ ଭକ୍ତଙ୍କ ଆଶ୍ରମରେ ପହଞ୍ଚିଗଲା। ମହାତ୍ମା ଥିଲେ ତ୍ରିଦଣ୍ଡୀ ସନ୍ୟାସୀ। ଅତ୍ୟନ୍ତ ଖିନ୍ନ ଚିତ୍ତରେ, ଭୋକ ଉପାସରେ ବିକଳ ହୋଇ ବିପ୍ର ସନ୍ୟାସୀଙ୍କ ଆଶ୍ରମ ସାମନାରେ ବସିଗଲା। ମହାତ୍ମା ଯେତେବେଳେ ଦେଖିଲେ, ତାଙ୍କ ଆଶ୍ରମ ଦ୍ୱାରଦେଶରେ କେହି ଜଣେ ଅତିଥି ବସିଛି, ସେ ତା' ପାଖକୁ ଆସି ପଚାରିଲେ, ''ଭାଇ! ତୁମେ କିଏ ? ଏତେ ଉଦାସ କାହିଁକି ଦେଖାଯାଉଛ ?''

ଧନ ନଷ୍ଟ ହୋଇଯିବା ପରଠାରୁ ସେହି କୃପଣ ବିପ୍ରକୁ ଆଜି ସୁଦ୍ଧା କେହି ଏପରି ସହାନୁଭୂତିରେ ପଦେ ବୋଲି କହି ନଥିଲେ। ସେ ଅତି ବିଷଣ୍ଣ ସ୍ୱରରେ କହିଲା, 'ସ୍ୱାମୀଜି! ଆପଣଙ୍କୁ କ'ଣ କହିବି! ଲୋକ ଏବଂ ବେଦ ନିନ୍ଦିତ ମୁଁ ଜଣେ ଅତି ହତଭାଗା।'

ମହାତ୍ମା ଦେଖିଲେ ତୃଷାରେ ବିପ୍ରର କଣ୍ଠ ଶୁଖିଯାଉଛି, କ୍ଷୁଧାରେ ସେ ବ୍ୟାକୁଳ ପ୍ରାୟ, ସେ ସହସା ଆଶ୍ରମରୁ ଭଗବାନଙ୍କର ପ୍ରସାଦ ଆଣି ତାକୁ ଦେଲେ। ପିଇବାକୁ ଶୀତଳ ଜଳ ଦେଲେ। ତୁଳସୀ ମିଶ୍ରିତ ପ୍ରସାଦ ପାଇ ସେହି କଦର୍ଯ୍ୟ ବିପ୍ରର କେବଳ ପେଟ ପୂରିଗଲା, ତାହା ନୁହେଁ, ତାର ଅନ୍ତଃକରଣ ମଧ୍ୟ ଶୁଦ୍ଧ ହୋଇଗଲା। ମହାତ୍ମାଙ୍କର ସହାନୁଭୂତି ଏବଂ ଅହେତୁକୀ କୃପା ଲାଭକରି ତାର ହୃଦୟ ଦ୍ରବିତ ହୋଇଗଲା। ସେ ମହାତ୍ମାଙ୍କର ପାଦତଳେ ଲୋଟିପଡ଼ି ମୁଣ୍ଡବାଡ଼େଇ ବାଡ଼େଇ କାନ୍ଦିବାରେ ଲାଗିଲା। ମହାତ୍ମା ତାକୁ ଅତ୍ୟନ୍ତ ସ୍ନେହରେ ଓ ଅତି କୋମଳ ସ୍ୱରରେ କହିଲେ, 'ଉଠ, ଉଠ! ମଙ୍ଗଳମୟ ଭଗବାନ୍ ସବୁ ଠିକ୍ କରିଦେବେ। ସେ ଅଶରଣଶରଣ, ଦୀନବନ୍ଧୁ, ଶରଣାଗତବତ୍ସଳ। ତୁମେ ମୋତେ ତୁମର ପରିଚୟ ଦିଅ। ତୁମର ଏପରି ଦୁଃଖର କାରଣ କୁହ।'

ସେହି କଦର୍ଯ୍ୟ ବ୍ରାହ୍ମଣ କାନ୍ଦି କାନ୍ଦି କହିଲା, 'ଭଗବନ୍! ମୁଁ ଜଣେ ଅତି ହୀନ ଦ୍ୱିଜାଧମ। ମୁଁ ବ୍ରାହ୍ମଣ କୁଳରେ ଜନ୍ମ ହୋଇଛି ସତ, ମାତ୍ର ମୋର ଧନ ରୋଜଗାର ନିମନ୍ତେ କୃଷି ଆଦିରେ ସମୟ କଟାଇ ଦେଇଛି। ବ୍ରାହ୍ମଣର କୌଣସି କାର୍ଯ୍ୟ କରିନାହିଁ।'

ମହାତ୍ମା କହିଲେ, 'ଭାଇ! ଧନ ଉପାର୍ଜନ କରିବା ସେପରି ଏକ ଖରାପ କାମ ନୁହେଁ। ଧନ ଦ୍ୱାରା ହିଁ ଧର୍ମ ହୁଏ। ଯଜ୍ଞ, ଦାନ, ଦେବତା, ଋଷି, ପିତରଙ୍କ ତର୍ପଣ ତ ସେହିଥିରେ ହୋଇଥାଏ।'

ବିପ୍ର ଅତି ବିକଳରେ କ୍ରନ୍ଦନ କରି କରି କହିଲା, 'ଭଗବନ୍ ତା ଯଦି କରିଥାନ୍ତି। ତେବେ ମୋର ଧନ ଉପାର୍ଜନ କରିବା ତ ସାର୍ଥକ ହୋଇଯାଇ ଥାଆନ୍ତା। ଯାହାର ଧନ ଧର୍ମ ଉପାର୍ଜନରେ ଲାଗିଥାଏ ସେପରି ଭାଗ୍ୟବାନ ସଂସାରରେ ଆଉ କିଏ ହୋଇପାରେ କି? ପ୍ରଭୁ! ମୋର ସଂଚିତ ଧନ ହିଁ ମୋର କାଳ ହେଲା। ଯେଉଁ ଧନ ପାଇଁ ମୁଁ ଏତେ ପାପ କରିଛି, ଘର ଲୋକଙ୍କର ଶତ୍ରୁ ହୋଇଛି, ଲୋକରେ ନିନ୍ଦିତ ହୋଇଛି, ସେହି ଧନ ମୋର କୌଣସି କାମରେ ଲାଗିଲା ନାହିଁ। ସେହି ଧନରେ ନା ମୁଁ କୌଣସି ଯାଗଯଜ୍ଞ କଲି, ଭଗବାନଙ୍କର ମନ୍ଦିର କଲି, ପାଠଶାଳା, ଗୋଶାଳା, ଧର୍ମଶାଳା, ବାପୀ, କୂପ, ପୁଷ୍କରିଣୀ, ଆରାମ ଉପବନ କଲି, ନା କୌଣସି ପ୍ରକାର ପରୋପକାର କଲି। ମୁଁ ନିଜେ ସୁଦ୍ଧା କୌଣସି ପ୍ରକାର ଉପଭୋଗରେ ତାହାକୁ ବିନିଯୋଗ କରିପାରିନାହିଁ, କି ପରିବାରବର୍ଗଙ୍କୁ ଭୋଗ କରିବାକୁ ଦେଇନାହିଁ। ମହାନ କୃପଣ ଭଳି କେବଳ ସଂଚୟ ହିଁ କରିଥିଲି।'

ମହାତ୍ମା ପଚାରିଲେ, 'ଆରେ ଦ୍ୱିଜ! ଏତେ ଧନ ଥିଲା, ତୁମେ ନିଶ୍ଚୟ କିଛି ସୁଖ ଭୋଗ ତ କରିଥିବ!'

କୃପଣ କହିଲା, 'ଭଗବନ୍! ସୁଖ ମିଳେ ଉଦାରତାରେ। କୃପଣ ଲୋକ ତ ତା' ଧନରେ ଇହଲୋକ ଆଉ ପରଲୋକ ଉଭୟକୁ ନଷ୍ଟ କରିଦିଏ। ତାକୁ ନା ଇହଲୋକରେ ସୁଖ ମିଳେ, ନା ପରଲୋକରେ। ସେ ଯେ ପର୍ଯ୍ୟନ୍ତ ଜୀବିତ ରହେ ସେ ପର୍ଯ୍ୟନ୍ତ ରୋଜଗାର ଚିନ୍ତାରେ ନିମଗ୍ନ ରହେ। ତାକୁ ଦିନରେ ଶାନ୍ତି ମିଳେନାହିଁ କି ରାତିରେ ନିଦ ହୁଏନାହିଁ। ବଞ୍ଚିଥିବାଯାକ ସନ୍ତପ୍ତ ହିଁ ରହିଥାଏ। ମରିବା ପରେ ନରକରେ ଅତି କଷ୍ଟ ପାଏ। ଧର୍ମ ଯଦି କରିଥାଆନ୍ତା ତେବେ ସଂସାରରେ ତାକୁ ଆତ୍ମସନ୍ତୋଷ ତ ମିଳିଥାନ୍ତା, ଆଉ ମୃତ୍ୟୁପରେ ସ୍ୱର୍ଗକୁ ଯାଇଥାଆନ୍ତା।'

ମହାତ୍ମା କହିଲେ, 'ତୁମେ ତ କେବଳ ଧନ ଉପାର୍ଜନ କରିଛ, ବ୍ରହ୍ମହତ୍ୟା, ସୁରାପାନ, ସୁନାଚୋରୀ ତଥା ଗୁରୁଶଯ୍ୟାଗମନ ଆଦି ମହାପାପ ତ କରିନାହଁ?''

କୃପଣ ବ୍ରାହ୍ମଣ କହିଲା, 'ଭଗବନ୍! ମୋ ମତରେ ଲୋଭଠାରୁ ବଳି ଆଉ ପାପ ନାହିଁ। ଲୋଭ ହିଁ ହେଉଛି ସବୁ ପାପର ମୂଳ। ଯେତେ ସବୁ ସାନବଡ଼ ପାପ ହୁଏ ସବୁ ଲୋଭ କାରଣରୁ ହିଁ ହୋଇଥାଏ। ଲୋଭୀ ଲୋଭର ବଶୀଭୂତ ହୋଇ କି ପାପ କରି ନ ପାରେ। ମଣିଷର ଯେତେ ଗୁଣ ଥାଉ, ଯଦି ତା' ମନରେ ଲୋଭର ଏତେ ଟିକିଏ ବି ଅଣୁ ଥାଏ, ତା'ର ସବୁଗୁଣ ଚୁଲିରେ ପଶିଯାଏ। ମଣିଷ ଯେଡ଼େ ସୁନ୍ଦର ହୋଇଥାଉ, ତା' ଶରୀରରେ ଏଡ଼େ ସାନ କୁଷ୍ଠ ଛଉ ଯଦି ହୋଇଯାଇଥାଏ, ତାର ସମସ୍ତ ଅଙ୍ଗ ବ୍ୟର୍ଥ ହୋଇଯାଏ। ମଣିଷ ଯେଡ଼େ ଯଶସ୍ୱୀ ହୋଇଥିଲେ ବି, ଲୋଭ ଏତେ ଟିକିଏ ବି ଥିଲେ

**ସମସ୍ତ ଯଶ ଅପଯଶରେ ରୂପାନ୍ତରିତ ହୋଇଯାଏ। ଲୋଭ ହିଁ ସମସ୍ତ ଗୁଣର ଭଣ୍ଡାରକୁ ନଷ୍ଟ କରିଦିଏ।'**

ମହାତ୍ମା କହିଲେ, ' ତାହାହେଲେ ଧନରେ ତୁମେ ଧର୍ମ କରିନାହଁ, ନିଜେ ଭୋଗ କରିନାହଁ, ସୁଖ ଭୋଗ କରିନାହଁ, ତେବେ ତୁମେ ଆତ୍ମସନ୍ତୋଷ ତ ପାଇଛ।'

ବ୍ରାହ୍ମଣ କହିଲା, 'ଆଜ୍ଞା, ସନ୍ତୋଷ କେବେ ପାଇଛି! କୃପଣର ଧନ ଯେତେ ବଢେ ତା'ର ଲୋଭ ସେତେ ଅଧିକ ବଢିବାରେ ଲାଗେ, ଲାଭରୁ ଲୋଭ ବୃଦ୍ଧି ହୁଏ ଆଉ ଅଶାନ୍ତି ମଧ୍। ଭଗବନ୍! ଧନ ଦ୍ୱାରା ଅନେକ ଅନର୍ଥ ହୋଇଥାଏ, ହେଲେ ମୁଁ ଜାଣିବାରେ ପନ୍ଦରଟି ଅନର୍ଥ ହେଉଛି ମୁଖ୍ୟ।'

ମହାତ୍ମା କହିଲେ, 'ଆଚ୍ଛା କହିଲ, ଧନର ସେ ପନ୍ଦର ଅନର୍ଥଗୁଡ଼ିକ କ'ଣ?'

ବାହ୍ମଣ କହିଲା, ''ମହାରାଜ! ମୋ ପିତା ଥିଲେ ଜଣେ ଉଚ୍ଚକୋଟୀର ସାତ୍ତ୍ୱିକ ବ୍ରାହ୍ମଣ। ମୁଁ ହିଁ ସେହି ବଂଶର ହୋଇଗଲି ଏକ କୁପୁତ୍ର। ପିଲାବେଳେ ତାଙ୍କର ଶ୍ରୀମୁଖରୁ ଧନରୁ ଉତ୍ପନ୍ନ ହେଉଥିବା ପନ୍ଦର ଅନର୍ଥ କଥା ଶୁଣିଥିଲି। ଧନର ପ୍ରଥମ ଅନର୍ଥ ହେଉଛି ଚୋରି। ଧନ ସଂଗ୍ରହାଭିଳାଷୀର ସର୍ବପ୍ରଥମ ଚିନ୍ତା ଥାଏ କିପରି ଅନ୍ୟଙ୍କୁ ଠକି ଦ୍ରବ୍ୟୋପାର୍ଜନ ଅଧିକ କରିବ। ରାଜକର୍ମଚାରୀମାନେ ଅଧିକ ଧନ ଲୋଭରେ ଉତ୍କୋଚ ଆଦି ଗ୍ରହଣ କରନ୍ତି। ପ୍ରତ୍ୟେକ ଲୋକ ଧନ ପାଇଁ କୌଣସି ନା କୌଣସି ଉପାୟରେ ଚୋରି ହିଁ କରିଥାଆନ୍ତି।''

(୨) ହିଂସା:- ଯେଉଁମାନଙ୍କର କେବଳ ଧନ ଏକତ୍ରିତ କରିବା ବ୍ୟସନ ହୋଇଯାଇଥାଏ, ସେମାନେ ଧନ ଲୋଭରେ ଅନ୍ୟର ଦୁଃଖ ଯନ୍ତ୍ରଣା ପ୍ରତି ଆଦୌ ଧ୍ୟାନ ଦିଅନ୍ତି ନାହିଁ। ଯଦି କାହାକୁ ମାରିଦେଲେ ଧନ ପାଇବାର ସଂଭାବନା ଦେଖନ୍ତି, ସେମାନେ ସେପରି ହିଂସା କରିବାକୁ ପଛାନ୍ତି ନାହିଁ। ଭୋକ ଉପାସରେ ଛୋଟ ଛୋଟ ପିଲା କାନ୍ଦୁଥିଲେ ସୁଦ୍ଧା ଋଣ ଆଦାୟ କରିବାକୁ ଯାଇଥିବା ଧନଲୋଭୀ ଲୋକ କିଛି ଚିନ୍ତା ନ କରି ତା' ଠାରୁ ସର୍ବସ୍ୱ ଛଡ଼ାଇ ଆଣନ୍ତି।

(୩) ମିଥ୍ୟା ଭାଷଣ:- ସତ୍ୟ ଭାଷଣ କରୁଥିବା ଧନୀ ଲୋକ ସଂସାରରେ ଅତି ବିରଳ। କେହି ଯଦି ପଚାରେ, 'ଆପଣଙ୍କ ପାଖରେ କେତେ ଧନ ଅଛି?' ତେବେ ଉତ୍ତର ମିଳେ 'ଆରେ ଭାଇ, ଧନ କାହିଁ! ଯେନ ତେନ ଚଳିଯାଉଛି।' ବ୍ୟବସାୟରେ ସତ୍ୟ, ଅସତ୍ୟ ଉଭୟ ଚାଲେ। କିନ୍ତୁ ଧନ ଲୋଭୀ, ଅନ୍ୟଙ୍କ କଥା କ'ଣ କହିବା, ନିଜ ସ୍ତ୍ରୀ ପିଲାଙ୍କୁ ସୁଦ୍ଧା ସତ କଥା କହେ ନାହିଁ। ଧନ ପ୍ରତ୍ୟକ୍ଷରେ ତା ଆଗରେ ସତ୍ୟର କୌଣସି ମୂଲ୍ୟ ନଥାଏ।

(୪) ପାଖଣ୍ଡ:- ଯେଉଁ କଥା ଆମ ପାଖରେ ନ ଥାଏ ତାହା ପ୍ରକଟ କରିବାକୁ ପାଖଣ୍ଡ କୁହାଯାଏ। ଧନ ପାଇଁ ଲୋକମାନେ କେତେ ଯେ ପାଖଣ୍ଡ କରନ୍ତି, କେତେ ପ୍ରକାର ବେଶ ବଦଳାନ୍ତି, ଏହା ସମସ୍ତେ ଜାଣନ୍ତି। ଲୋକଦେଖାଣିଆ ତ୍ୟାଗୀର ବେଶ ଧରନ୍ତି, ଧନକୁ ତୁଚ୍ଛ ଆଉ ମିଥ୍ୟା ବୋଲି କହିହେଉ ଥାଆନ୍ତି, ଲୋକମାନଙ୍କୁ କଥାଜାଲରେ ପକାଇ ଦିଅନ୍ତି— ଏ ସବୁ ସେମାନେ କରନ୍ତି କେବଳ ଧନ ଉପାର୍ଜନ ପାଇଁ। ଏହି ଧନ ପାଇଁ ଲୋକମାନେ ନାନା ପ୍ରକାର ସୁଆଙ୍ଗ କରନ୍ତି।

(୫) କାମ :- ଯାହାଙ୍କ ପାଖରେ ପଇସା ନ ଥାଏ, ଖାଇବା ପାଇଁ ଅନ୍ନ ନ ଥାଏ, ସେତେବେଳେ କାମ ବାସନାର ସମ୍ଭାବନା ନ ଥାଏ। ପେଟ ପୂରିଗଲେ କାମ ବାସନା ଉଠେ। ଧନୀମାନେ ଅତ୍ୟଧିକ କାମୀ ହୋଇଥାଆନ୍ତି। କାରଣ କାମ ବାସନାର ପୂର୍ତ୍ତି ନିମନ୍ତେ ଧନର ଆବଶ୍ୟକତା ଥାଏ।

(୬) କ୍ରୋଧ :- ଧନୀ ଲୋକର ଯଦି କୌଣସି ଇଛା ପୂରଣ ନ ହୁଏ, କେହି ଯଦି ତାଙ୍କ ଇଛା ବିରୁଦ୍ଧ କୌଣସି କାମ କରନ୍ତି, ସେମାନେ ସହସା ରାଗି ଯାଆନ୍ତି। ଧନର ଅଭିମାନରେ ସେମାନେ କାହାକୁ ବି ଖାତିର କରନ୍ତି ନାହିଁ। କ୍ରୋଧରେ ସେମାନେ ନିଜର ଆତ୍ମୀୟ ସ୍ୱଜନଙ୍କୁ ମଧ ମାରି ଦିଅନ୍ତି। ତାଙ୍କର କଥା ଶୁଣିବାରେ କେହି ଗାଲୁ ମାରିଲେ ସେମାନେ କ୍ରୋଧରେ ଜ୍ଞାନ ହରାଇ ପକାନ୍ତି। ଧନ ଦ୍ୱାରା ସେମାନେ ଯେଚ୍ଛାତା କରିପାରିବେ ବୋଲି ସେମାନଙ୍କର ଖୁବ୍ ଆତ୍ମଗର୍ବ ଥାଏ।

(୭) ଗର୍ବକୁ ସ୍ମୟ କୁହନ୍ତି। ଧନର ଶକ୍ତିରେ ସେମାନେ ନିଜକୁ ସର୍ବଶ୍ରେଷ୍ଠ ବୋଲି ମନେକରନ୍ତି। ନିର୍ଦ୍ଧନଙ୍କୁ ସେମାନେ ତୃଣ ସମ ବିବେଚନ କରନ୍ତି।

(୮) ଅହଂକାରୀ ଧନୀ ଯେ କୌଣସି କାମ କରିପାରିବ। ଅଥବା, କରି ନ ଥିଲେ ବି କରିଥିବା ଭଳି ପ୍ରମାଣ କରାଇ ଦେବ। ମୋ ଦ୍ୱାରା ଏତେ ଲୋକ ଚଳିଯାଇ ପାରୁଛନ୍ତି, ମୁଁ ଯଦି ସେମିତି କରି ନଥାନ୍ତି ତେବେ କାମଟି ନଷ୍ଟ ହୋଇଯାଇ ଥାଆନ୍ତା। ଅହଂକାର ଯୋଗୁଁ ହିଁ ସେ ନିଜକୁ ନିଜେ କରି କରାଉଥିବା ଭଳି ପ୍ରକାଶ କରେ।

(୯) ଭେଦବୁଦ୍ଧି :- ଧନ ଆସିବା ମାତ୍ରେ ମଣିଷର ଭେଦବୁଦ୍ଧି ହୋଇଯାଏ। ଆମର ସେ ଆତ୍ମୀୟ ସ୍ୱଜନ ସତ, ମାତ୍ର ସେ ନିର୍ଦ୍ଧନ। ସେମାନେ ନିର୍ଦ୍ଧନ, ତେଣୁ ସେମାନଙ୍କ ସଙ୍ଗରେ ଆମେ ବସିବୁ ନାହିଁ। ସେମାନେ ଛୋଟ, ଆମେ ବଡ଼। ସବୁପ୍ରକାର କାମରେ ସେମାନେ ଭେଦବୁଦ୍ଧି ଆଚରଣ କରିଥାଆନ୍ତି।

(୧୦) ବୈର :- ଧନ ରୋଜଗାରରେ ବୈରଭାବ ସୃଷ୍ଟି ହେବା ସ୍ୱାଭାବିକ କଥା। ଗୋଟିଏ ଜିନିଷକୁ ଅନେକ ଲୋକ ଆଶା କରୁଥିଲେ ପରସ୍ପର ବୈର ଭାବ ଉପୁଜି ଥାଏ। ଧନ ତ ସମସ୍ତେ ଚାହାଁନ୍ତି। ଯେଉଁମାନଙ୍କଠାରେ ଧନ ନଥାଏ ସେମାନେ ଧନୀଙ୍କୁ ମନେ ମନେ ଗାଳିଦେଇ ଥାଆନ୍ତି। ଅନ୍ୟମାନଙ୍କ କଥା କହିବା ଦରକାର ନାହିଁ, ଘର ଲୋକମାନେ ପ୍ରଥମ ଶତ୍ରୁ ହୋଇଯାଆନ୍ତି। ସେମାନେ ପ୍ରଥମେ ଧନ ଯୋଗୁଁ ବୈର ଭାବ ପ୍ରଦର୍ଶନ କରିବାରେ ଲାଗନ୍ତି। କୌଣସି ପକ୍ଷୀ ମାଂସଧରି ଉଡୁଥିବା ଦେଖି ମାଂସଧରି ନଥିବା ପକ୍ଷୀ ତା' ସହିତ କଳି କରିବାରେ ଲାଗିଯାଏ।

(୧୧) ଅବିଶ୍ୱାସ :- ଧନୀ ହଠାତ୍ କାହାକୁ ବି ବିଶ୍ୱାସ କରେ ନାହିଁ। ତାକୁ ସମସ୍ତେ ଚୋର ଆଉ ଠକ ଭଳି ଦେଖାଯାଆନ୍ତି। ନିଜର ଯେତେ ବିଶ୍ୱାସୀ ହୋଇଥିଲେ ସୁଦ୍ଧା ଧନ ପାଇଁ ସହସା ଅବିଶ୍ୱାସ ଜାତ ହୋଇଯାଏ। ମିତ୍ରତାରେ ଏହି ଧନ ପ୍ରବଳ ବାଧକ ହୋଇଥାଏ। ଆମର ଅତି ପ୍ରିୟ ମିତ୍ର ଅସମୟରେ ପଡ଼ି ଯଦି ଋଣ ନେଇଯାଏ ଏବଂ ନିର୍ଦ୍ଦିଷ୍ଟ ଦିନ ଦେଇ ନପାରେ, ତେବେ ମିତ୍ରତାରେ ମତଭେଦ ସୃଷ୍ଟି ହୋଇଯାଏ। ଆଉ କ୍ରମେ ଅବିଶ୍ୱାସ ବଢ଼ିବାରେ ଲାଗେ। ଧନ ଯିଏ ଦେଇଥାଏ, ସେ ଭାବେ ମୋ ଧନ ଦେଖି ସେ ମୋର ମିତ୍ର ହୋଇଥିଲା, ଏତେ ପ୍ରେମ କରୁଥିଲା, ମୋତେ ଏବେ ଠକି ଦେଲା। ଉଧାର ନେଇଥିବା ଲୋକର ପ୍ରକୃତ

ସ୍ଥିତିକୁ ନ ଜାଣି ଏପରି ଅବିଶ୍ୱାସ ସୃଷ୍ଟି ହୋଇଥାଏ। ଏଣୁ ନିଜର ବିଶ୍ୱାସ ସ୍ଥିର ରଖିବାକୁ ଯେଉଁମାନେ ଚାହାନ୍ତି ସେମାନେ କୌଣସି ଦ୍ରବ୍ୟ ଦିଆନିଆ ନକରିବା ଭଲ।

(୧୨) ସ୍ପର୍ଦ୍ଧା :- ଧନୀ ଲୋକମାନଙ୍କର ଔଦ୍ଧତ୍ୟ ଅତ୍ୟଧିକ। ପଇସାଟିଏ ବ୍ୟୟ କରି ନଥିଲେ ସୁଦ୍ଧା ନିଜର ପ୍ରତିସ୍ପର୍ଦ୍ଧୀକୁ ନୀଚା ଦେଖାଇ ଦେବାପାଇଁ ଯେତେ ଇଚ୍ଛା ସେତେ ଧନ ଉଡ଼ାଇ ଦିଅନ୍ତି। ସେ ବିଭାଘରେ ଲକ୍ଷେ ଟଙ୍କା ଖର୍ଚ୍ଚ କରୁଛି, ଆମେ ତ ତିନି ଲକ୍ଷ ଖର୍ଚ୍ଚ କରିଥିଲୁ। ଏହା ହେଉଛି ସ୍ପର୍ଦ୍ଧା– କାରଣ ଏଥିରେ ପଇସା ଖର୍ଚ୍ଚ ହୋଇ ନଥିଲେ ବି ଔଦ୍ଧତ୍ୟ ଅତିମାତ୍ରାରେ ପ୍ରକାଶିତ।

(୧୩) ବେଶ୍ୟା ସଂସର୍ଗ :- ଧନ ମିଳିଗଲେ ହଠାତ୍ କାମାସକ୍ତି ବଢ଼ିଯାଏ। ଖରାପ ପ୍ରକୃତିର ସ୍ତ୍ରୀମାନେ ତାକୁ ରୂପ-ଜାଲରେ ପକାଇ ଦିଅନ୍ତି। ଧନୀ ଲୋକଙ୍କ ପାଖରେ ଏପରି ଲୋକମାନେ ଯୁଟି ଯାଆନ୍ତି ଯେଉଁମାନେ ତାକୁ ଅତି ଖରାପ ଧନ୍ଦାରେ ଫସାଇ ଦିଅନ୍ତି। ଏହି ଖରାପ ବ୍ୟସନ ଧନୀ ଲୋକ ସହିତ ସେ ପର୍ଯ୍ୟନ୍ତ ରହେ ଯେ ପର୍ଯ୍ୟନ୍ତ ତା'ର ସମସ୍ତ ଧନ ନଷ୍ଟ ହୋଇ ନଥାଏ।

(୧୪) ଦ୍ୟୂତ :- ଜୁଆଖେଳାଯାଏ ଧନରେ। ଦ୍ୟୂତ ଏପରି ଏକ ବ୍ୟସନ ଯିଏ ଥରେ ଏହି କ୍ରୀଡ଼ାରେ ପଶିଯାଏ, ତହିଁରୁ ମୁକୁଳିବା ଏକପ୍ରକାର ଅସମ୍ଭବ ହୋଇଯାଏ। ସେ ସବୁ ସମୟରେ ହାରୁଥିଲେ ସୁଦ୍ଧା ଦିନେ ନା ଦିନେ ଜିତିବାର ଆଶା ରଖିଥାଏ। ଜିତିଲେ ଉତ୍ସାହ ବଢ଼େ, ହାରିଗଲେ ତହିଁରେ ତନ୍ମୟତା ହୋଇଯାଏ। ଯାହା ପାଖରେ ଧନ ନ ଥାଏ, ସେ ଜୁଆ ଖେଳିପାରେ ନାହିଁ।

(୧୫) ମଦ୍ୟପାନ :- ମଦ୍ୟ ଯେଉଁ ପର୍ଯ୍ୟନ୍ତ ପିଆଯାଇ ନ ଥାଏ ସେ ପର୍ଯ୍ୟନ୍ତ ଏଥିରୁ ବିରତ ରହିହୁଏ। ଦୁଇ ଚାରି ଥର ପିଇବା ଆରମ୍ଭ କରିଦେବା ପରେ ମଦ ବିନା ମଦ୍ୟପ ଆଉ ରହିପାରେ ନାହିଁ। ମଦ୍ୟପାନ କରିବା ବ୍ୟସନ ଧନ ସଂଚୟ କରିବା ବ୍ୟସନଠାରୁ ଅଧିକ ମାରାତ୍ମକ ହୋଇଥାଏ।

କୃପଣ ବ୍ରାହ୍ମଣ ମହାତ୍ମାଙ୍କୁ କହୁଛି– "ହେ ଭଗବନ୍! ଏହି ଅନର୍ଥର ମହିମା ଏହିପରି। ଲୋକମାନେ ଏହାକୁ ଅର୍ଥ ବୋଲି କହୁଥିବା ବେଳେ ମୋ ମତରେ ଏହା ଘୋର ଅନର୍ଥ। ଧନ ଯୋଗୁଁ ଉପରୋକ୍ତ ପନ୍ଦର ଦୋଷ ଦେଖାଦିଏ। ଯେଉଁମାନେ ଇହଲୋକ ଓ ପରଲୋକର ମଙ୍ଗଳ ଚାହାନ୍ତି ସେମାନେ ଧନର ଆଶା ତ୍ୟାଗ କରିଦେବା ଉଚିତ। ଭାଗ୍ୟବଶତଃ ଯେତିକି ଧନ ମିଳେ ତହିଁରେ ସନ୍ତୁଷ୍ଟ ରହି ତାକୁ ଯଥାଶୀଘ୍ର ସତ୍‌କର୍ମରେ ବ୍ୟୟ କରିଦେବା ଉଚିତ।"

ମହାତ୍ମା ପଚାରିଲେ, "ଆରେ ଭାଇ! ତୁମ ଘର ଲୋକମାନେ କ'ଣ ତୁମକୁ କୌଣସି ପ୍ରକାର ସହାୟତା କରୁନାହାନ୍ତି। ତୁମ ଘରେ କିଏ କିଏ ଅଛନ୍ତି?"

ବ୍ରାହ୍ମଣ କହିଲା, "ସମସ୍ତେ ଅଛନ୍ତି ମହାରାଜ୍। ଭାଇ, ବନ୍ଧୁ, ସ୍ତ୍ରୀ, ପୁତ୍ର, କନ୍ୟା– ହେଲେ ସେମାନେ ମୋର କୌଣସି କାମକୁ ନୁହନ୍ତି। ଅବଶ୍ୟ ମୁଁ ବି ତ ସେମାନଙ୍କ ପାଇଁ କିଛି କରିନାହିଁ। ମୁଁ କିଛି କରିଥିଲେ ସିନା ସେମାନେ ମୋ ପାଇଁ କିଛି କରିଥାଆନ୍ତେ। ମୁଁ ମୋ ଧନ ସେମାନଙ୍କ ପାଖରେ ଲୁଚାଇଥିଲି, ଏବେ ସେମାନେ ସେମାନଙ୍କର ଧନ ମୋତେ କାହିଁକି ଦେବେ!"

ମହାତ୍ମା କହିଲେ, "କୁଟୁମ୍ବ ଲୋକଙ୍କର ସ୍ନେହ ତ ସବୁବେଳେ ରହିଥିବା କଥା।"

ବ୍ରାହ୍ମଣ କହିଲା, ''ସହଜ ସ୍ନେହଥିବା କୁଟୁମ୍ବ ଲୋକ ସହଜେ ବିରଳ। ବାସ୍ତବରେ କହିବାକୁ ଗଲେ, ସମସ୍ତେ ସ୍ୱାର୍ଥୀ। ଭାଇ-ବନ୍ଧୁ, ମାତା-ପିତା, ସ୍ତ୍ରୀ-ପିଲା ତଥା ଅନ୍ୟ କୁଟୁମ୍ବ-ଜନ ସେ ପର୍ଯ୍ୟନ୍ତ ସଂପର୍କ ରଖି ଥାଆନ୍ତି ଯେଉଁ ପର୍ଯ୍ୟନ୍ତ ସେମାନଙ୍କର ସ୍ୱାର୍ଥରେ ବା ଅର୍ଥରେ ବାଧା ପଡୁ ନଥାଏ। ସ୍ୱାର୍ଥର ବାଧା ପଡ଼ିବାର ସମ୍ଭାବନା ଏତେ ଟିକିଏ ଦେଖିଲେ ସେମାନେ ଆଉ ଧରାଛୁଆଁ ଦିଅନ୍ତି ନାହିଁ। ଅଧିକ ଧନ କଥା କ'ଣ କହିବା, ପାଞ୍ଚ ଦଶ ଟଙ୍କା ପାଇଁ ନିଜଲୋକ ପର ହୋଇଯାଆନ୍ତି, ମିତ୍ର ଶତ୍ରୁ ହୋଇଯାଏ।''

ମହାତ୍ମା କହିଲେ, ''ଆରେ ଭାଇ। ପୁଅ ତ ନିଜର ଆତ୍ମା ସଦୃଶ। ପୁତ୍ର ତ ସାମାନ୍ୟମାତ୍ର ମୋହ ରଖେନାହିଁ।''

କୃପଣ ବ୍ରାହ୍ମଣ କହିଲା, ''ଭଗବନ୍! ଏହି ପୁତ୍ର ପୌତ୍ରାଦି ମାନେ ମାଂସ ଝୁଣିବା ଜନ୍ତୁ। ଯେଉଁ ପର୍ଯ୍ୟନ୍ତ ସେମାନଙ୍କ ପାଇଁ ଆପଣ ରୋଜଗାର କରୁଥିବେ ସେ ପର୍ଯ୍ୟନ୍ତ ବାପା-ନନା ହେଉଥିବେ। ରୋଜଗାର ପାଇଁ ଅସମର୍ଥ ହୋଇଯିବା ମାତ୍ରେ, ଦୁଆର ବନ୍ଧରେ କୁକୁର ଜଗାଇବା କାମରେ ଲଗାଇଦେବେ। କୁକୁର ସହିତ ଯେଉଁଭଳି ବ୍ୟବହାର ଦେଖାଯାଏ, ସେହିଭଳି ବ୍ୟବହାର ଦେଖାଇବେ। ଆପଣଙ୍କ ପାଖରେ ଧନ ଥିଲେ, ସେମାନେ ଚାହିଁବା ସମୟରେ ଆପଣ ଯଦି କୌଣସି କାରଣରୁ ମନା କରି ଦିଅନ୍ତି ତେବେ ସହସା କ୍ଷୁବ୍ଧ ହୋଇ ଯାଆନ୍ତି, ମନେ ମନେ ଅନିଷ୍ଟ ଚିନ୍ତା କରିବାରେ ଲାଗନ୍ତି। ମୋ ପୁଅମାନଙ୍କ କଥା କ'ଣ କହିବି! ସେମାନେ ଡାକୁଙ୍କ ଭଳି ମୋତେ ବାନ୍ଧି ପକାଇଲେ, ପ୍ରହାର କଲେ, ଆଉ ମୋ ଠାରୁ ସବୁ ଧନ ଛଡ଼ାଇ ନେଲେ। ଏବେ ସେମାନେ ମୋର ସଂଚିତ ଧନରେ ମଉଜ କରୁଛନ୍ତି। ଆଉ ମୁଁ ଭୋକ ଉପାସରେ ବାର ଦୁଆର ବୁଲି ବୁଲି ଏଠାରେ ପହଞ୍ଚିଛି। ଧନ, ଆଜ୍ଞା ଏଡ଼େ ଖରାପ ବସ୍ତୁ ଯେ ମଣିଷ ଯା ପାଇଁ ସବୁପ୍ରକାର ନ କରିବା କାର୍ଯ୍ୟ କରିପକାଏ। ସ୍ୱାର୍ଥ ସିଦ୍ଧ ନ ହେବା ଦେଖି ମହାନ୍ ମହାନ୍ ପ୍ରେମୀମାନେ ମଧ୍ୟ କ୍ରୁଦ୍ଧ ହୋଇଯାଆନ୍ତି। ସମସ୍ତ ପ୍ରେମ ଭାବକୁ ତିଳାଞ୍ଜଳି ଦେଇଦିଅନ୍ତି। ସ୍ପର୍ଦ୍ଧା କରନ୍ତି, ସର୍ବନାଶ କରିବା ପାଇଁ ସାମାନ୍ୟ ମାତ୍ର କୁଣ୍ଠା କରନ୍ତି ନାହିଁ। ଏ ସମସ୍ତ କଥାର ମୋର ଅତ୍ୟନ୍ତ କଟୁ ଅନୁଭୂତ ହୋଇଯାଇଛି।''

ମହାତ୍ମା କହିଲେ, ''ତୁମେ ବ୍ରାହ୍ମଣ ହୋଇ ଧନ ପଛରେ କାହିଁକି ପଡ଼ିଲ? ବ୍ରାହ୍ମଣଙ୍କ ଧନ ହେଉଛି ତପ। ଏଥିପାଇଁ ବ୍ରାହ୍ମଣଙ୍କୁ ତପୋଧନ କୁହାଯାଏ।''

ଅତି ଆତ୍ମଗ୍ଲାନିପୂର୍ଣ୍ଣ ସ୍ୱରରେ କୃପଣ ବ୍ରାହ୍ମଣ କହିଲା, ''ଭଗବନ୍! କ'ଣ ଆଉ କହିବି? ମୋର କୁମତୀର ପ୍ରକୃତି ଏହିପରି। ଅତି ଭାଗ୍ୟବଳରେ ବ୍ରାହ୍ମଣ ଶରୀର ପାଇଛି। ମଣିଷ ଶରୀରରେ ଏହା ଅତି ଦୁର୍ଲଭ। ଦେବତାମାନେ ବି ଏହି ଶରୀର ପାଇଁ ଆଶାୟୀ ଥାଆନ୍ତି। ମଣିଷ ଶରୀର ପାଇ ମୁଁ ମୋକ୍ଷ ନିମନ୍ତେ ଆଦୌ ଉଦ୍ୟମ କଲିନାହିଁ। ବ୍ରାହ୍ମଣ ହୋଇ ଅବ୍ରାହ୍ମଣର ପ୍ରୀତିଥିବା ଜଡ଼ ପଦାର୍ଥରେ ଆସକ୍ତ ହୋଇଗଲି। ମୁଁ ମୋର ସର୍ବନାଶ କରିପକାଇଛି। ମୁଁ ପ୍ରକୃତ ସ୍ୱାର୍ଥକୁ ଛାଡ଼ି ତୁଚ୍ଛ ସ୍ୱାର୍ଥ ପଛରେ ଗୋଡ଼ାଇଥିଲି। ଏବେ ମୋର ଦୁର୍ଗତି କ'ଣ, ତାହା ମୁଁ ଜାଣେନା। କୌଣସି ଏକ ମହାନୀଚ ଗତି ମୁଁ ପାଇବି।''

ମହାତ୍ମା କହିଲେ, ''ଭାଇ: ଭବିଷ୍ୟତ ଅନାଦୃଷ୍ଟ। କ'ଣ ହେବ କିଏ କହିପାରିବ? ତୁମେ ତୁମର ଅଜ୍ଞାତସାରରେ ଭଗବାନଙ୍କ କୃପା ପାଇସାରିଛ। ତୁମେ ଉତ୍ତମ ଗତି ଲାଭ କରିବ।''

ବ୍ରାହ୍ମଣ କହିଲା, ''ଭଗବନ୍ ! ଜନ୍ମଜନ୍ମାନ୍ତର କଥା ଆମେ ଜାଣିପାରିବା ହୁଏତ ସମ୍ଭବ ହୋଇ ନପାରେ । ତେବେ ପ୍ରତ୍ୟେକ ଲୋକ ଅନ୍ୟୂନ ତିନି ଜନ୍ମର କଥା ତ ନିଶ୍ଚୟ ଜାଣିପାରିଥାଆନ୍ତି । ଏହି ଜନ୍ମରେ ମୁଁ କୃପଣତା କରିଛି, କାହାକୁ କିଛି ଦେଇନାହିଁ, ଦେବତା, ପିତର ଋଷିଙ୍କ ନିମିତ୍ତ ଶ୍ରାଦ୍ଧ-ତର୍ପଣ ବି କରିନାହିଁ, କାହାରି ପ୍ରତି ସାମାନ୍ୟମାତ୍ର ପ୍ରେମ ପ୍ରଦର୍ଶନ କରିନାହିଁ, ଆତ୍ମୀୟସ୍ୱଜନଙ୍କୁ ବି ସହାୟତା କରିନାହିଁ, ଏବଂ ଧନର ପ୍ରକୃତ ଭାଗୀଦାରଙ୍କୁ ସ୍ୱେଚ୍ଛାରେ କିଛି ଦେଇନାହିଁ । ଆଉ ଏହି ସମସ୍ତ କାରଣ ହେତୁ ସମସ୍ତେ ମୋ ପ୍ରତି ଅସନ୍ତୁଷ୍ଟ । ଏଥିରୁ ସହଜରେ ଅନୁମାନ କରାଯାଇପାରେ ଯେ ପୂର୍ବଜନ୍ମରେ ମୁଁ କୌଣସି ପ୍ରକାର ପୁଣ୍ୟ ଅର୍ଜନ କରି ନଥିଲି । ପୂର୍ବଜନ୍ମରେ ପୁଣ୍ୟ କରିଥିଲେ ଏହି ଜନ୍ମରେ ଦାନାଦି କରିବା ପାଇଁ ସ୍ୱତଃ ପ୍ରବୃତ୍ତି ହୋଇଥାଆନ୍ତା, ସ୍ୱାଭାବିକ ରୁଚି ହୋଇଥାଆନ୍ତା । ଏହି ଜନ୍ମରେ କିଛି କଲେ ଭବିଷ୍ୟତ ଜନ୍ମରେ ତାହା ଫଳ ସ୍ୱରୂପ ମିଳିଥାନ୍ତା । ଏହି ଜନ୍ମରେ ବି ମୁଁ କିଛି କର୍ମ କରିନାହିଁ । ଯକ୍ଷଙ୍କ ଭଳି କେବଳ ଧନରକ୍ଷା କରିବାରେ ସମୟ କଟାଇ ଦେଇଛି । ଏଣୁ ମୋର ଅଧୋଗତି ନିଶ୍ଚୟ ହେବ, ଏହା ମୁଁ ଜାଣୁଛି । ସ୍ୱର୍ଗ ଓ ଅପବର୍ଗର ଦ୍ୱାର ସଦୃଶ ଏହି ମାନବ ଶରୀର ପାଇ ଯେଉଁମାନେ ଅନର୍ଥର ଆଶ୍ରୟଭୂତ ଧନର ସୁରକ୍ଷା ନିମନ୍ତେ ଲାଗିରହିଥାନ୍ତି, ଦାନ, ପୁଣ୍ୟ ତଥା ଅନ୍ୟାନ୍ୟ ଶୁଭକର୍ମ କରନ୍ତି ନାହିଁ, ସେମାନେ ପରଜନ୍ମରେ ସର୍ପ ହୋଇଥାନ୍ତି । ଆଉ ସେହି ଧନ ଉପରେ ଜଗି ବସି ରହିଥାନ୍ତି ।''

ମହାତ୍ମା କହିଲେ, ''ଆରେ ଭାଇ ! ଏବେ ତୋ'ର କ'ଣ ହୋଇଯାଇଛି ? ଗତସ୍ୟ ଶୋଚନା ନାସ୍ତି– ଯାହା ଅତୀତ ହୋଇଯାଇଛି ସେ କଥା ଭୁଲି ଭବିଷ୍ୟତ ବିଷୟ ଚିନ୍ତା କରିବା ଉଚିତ । ବର୍ତ୍ତମାନ ଏଇ ମୁହୂର୍ତ୍ତରୁ ଧର୍ମ, ପୁଣ୍ୟ କରିବାରେ ଲାଗିଯାଅ ।''

ଅବହେଳା ସ୍ୱରରେ ବ୍ରାହ୍ମଣ କହିଲା, ''ଆଜ୍ଞା ମହାଶୟ ! ଯାହା ନ ହୋଇଛି ବାଳୁତକାଳେ, ତାହା କି ହୋଇବ ପାଚିଲାବାଳେ । ଘରେ ନିଆଁ ଲାଗିଯାଇ ଥିବାବେଳେ କୂଅ ଖୋଳିବା କାମ ଆରମ୍ଭ କଲେ କିଛି ଲାଭ ହୁଏ କି ? ପରମାର୍ଥ ସାଧନ ନିରୋଗ ଶରୀରରେ କରାଯାଇପାରେ ଯେତେବେଳେ ଇନ୍ଦ୍ରିୟମାନେ ଶିଥିଳ ହୋଇ ନଥାନ୍ତି, ବୃଦ୍ଧାବସ୍ଥା ହୋଇ ନଥାଏ । ବୁଢ଼ା ବଳଦ ହାତରେ କିଛି ହୋଇପାରେ ନାହିଁ । ମୁଁ ମୋର ସୁବର୍ଣ୍ଣ ସମୟ, ମୋହ, ଲୋଭରେ ଅତିବାହିତ କରିଦେଇଛି । ମୋର ସାଧନ କରିବାର ସମୟକୁ ମୁଁ ଉନ୍ମାଦରେ ନଷ୍ଟ କରିଦେଇଛି । ଏବେ ପୁରୁଷାର୍ଥ କ୍ଷୀଣ ହୋଇଗଲାଣି । ସେହି ସମୟରେ ବିବେକୀ ପୁରୁଷ ସାଧନ-ସମ୍ପନ୍ନ ହୋଇ ସିଦ୍ଧିଲାଭ କରିଥାନ୍ତି । ମୋର ସେହିସମୟ ତ ଅନର୍ଥ ରୂପରେ, ଅର୍ଥ-ସଂଚୟରେ ଅତିବାହିତ ହୋଇଯାଇଛି । ଏବେ ଏହି ବୁଢ଼ା ବୟସରେ ମୁଁ କି ସାଧନ କରିପାରିବି ?''

ମହାତ୍ମା କହିଲେ, ''ଭାଇ ! ତୁମେ ଏତେ କଥା ଜାଣି ସୁଦ୍ଧା କେବଳ ଅର୍ଥ ସଂଚୟରେ ଏତେ ବ୍ୟସ୍ତ ରହିଲ କାହିଁକି ?''

ବ୍ରାହ୍ମଣ ଦୁଃଖରେ ବିମର୍ଷପ୍ରାୟ ହୋଇପଡ଼ି କହିଲା, ''ଏହା ତ ଆଜ୍ଞା ଭଗବାନଙ୍କର ମୋହିନୀ ମାୟା । ଲୋକମାନେ ସବୁ ଜାଣି ସୁଦ୍ଧା ଅଜ୍ଞାନୀ ହୋଇଯାଆନ୍ତି । ସକଳ ଅନର୍ଥର ମୂଳ ଯାହା ତାକୁ ହିଁ ନିଜର ସର୍ବସ୍ୱ ମନେକରନ୍ତି । ମୂର୍ଖ ଯଦି ଏହା କରେ ତେବେ ତାହା ଅଜ୍ଞାନ ବୋଲି କୁହାଯିବ ; ହେଲେ ବିବେକୀ ପୁରୁଷ ଧନର ବ୍ୟର୍ଥ ତୃଷ୍ଣାରେ ନିରନ୍ତର ସନ୍ତପ୍ତ କାହିଁକି ହେଉଥାଏ ? ମହାରାଜ ! ଆମେ ମନେରଖିବା ଉଚିତ, ଏହି ଶରୀରକୁ ଆମେ କଦାପି ବିଶ୍ୱାସ କରିବା ଉଚିତ ନୁହେଁ, ଯେତେବେଳେ ଇଚ୍ଛା ସେତେବେଳେ ନଷ୍ଟ ହୋଇଯାଇ ପାରେ ।

ଏହି ଦଶା ଧନର ବି ହୋଇଥାଏ। ଆଜି ଯିଏ କୋଟିପତି କାଲି ସିଏ ଦାଣ୍ଡର ଫକୀର ହୋଇଯାଏ। ଲୋକମାନେ ଧନ ପାଇଁ ଇନ୍ଦ୍ର, ବରୁଣ, କୁବେରଙ୍କୁ ଉପାସନା କରନ୍ତି, ହେଲେ ସେହି ଦେବତାମାନେ ବି ସବୁବେଳେ ଦୁଃଖୀ ରହିଥାଆନ୍ତି, ଅନ୍ୟଙ୍କୁ ତପ କରୁଥିବା ଦେଖି ସେମାନଙ୍କର ହୃଦୟ ଜଳିବାରେ ଲାଗେ। ଅନେକ ଲୋକ ସେମାନଙ୍କର କାମନାର ପୂର୍ତ୍ତି ନିମନ୍ତେ ବିବିଧ କର୍ମ କରନ୍ତି, ହେଲେ ଆଜି ସୁଦ୍ଧା କୌଣସି ଲୋକର ସମସ୍ତ କାମନା ପୂରଣ ହୋଇଛି କି? ମୁଁ ଏତେ ଧନ ସଂଗ୍ରହ କଲି, ସେଥିରେ ମୋତେ କ୍ଲେଶ ବ୍ୟତୀତ ଆଉ କିଛି ମିଳିଛି କି?''

ମହାତ୍ମା କହିଲେ, ''ଭାଇ! ତୁମେ ବଡ଼ ଦୁଃଖୀ। ତୁମ ଉପରେ ନିଶ୍ଚୟ କୌଣସି ଦେବତାଙ୍କର କୋପଦୃଷ୍ଟି ପଡ଼ିଯାଇଛି। ତା' ନ ହୋଇଥିଲେ ତୁମେ ଏଡ଼େ ଦୁର୍ଦ୍ଦଶାରେ କାହିଁକି ପଡ଼ିଥାଆନ୍ତ।''

ବ୍ରାହ୍ମଣ ଏ ପର୍ଯ୍ୟନ୍ତ ମହାତ୍ମାଙ୍କ ସହିତ କଥା ହେଉଥିଲା। ଠାକୁରଙ୍କ ପ୍ରସାଦ ପାଇଲା, ଅତି ଦୁଃଖରେ ତା'ର ହୃଦୟ ବ୍ୟାକୁଳିତ ହୋଇଯାଇଥିଲା। ମହାତ୍ମାଙ୍କର ପ୍ରେମ ଲାଭକରି ତା'ର ହୃଦୟ ଫାଟି ପଡ଼ିଲା। ପଶ୍ଚାତାପ ରୂପୀ ଔଷଧ ପାଇ ସେ ଶାନ୍ତି ଲାଭ କଲା। ଏଥର ସେ ଧୀର ସ୍ୱରରେ କହିଲା, ''ପ୍ରଭୁ! ଏହାକୁ ମୁଁ ଏବେ ସର୍ବଦେବମୟ ଶ୍ରୀହରିଙ୍କ ଅନୁଗ୍ରହ ମନେକରୁଛି। ମୋର ସେହି ସଂଚିତ ଧନ ଯଦି ନଷ୍ଟ ହୋଇ ନଥାନ୍ତା, ତେବେ ମୁଁ ସେହି ପାପ ପଙ୍କରେ ବୁଡ଼ି ରହିଥାନ୍ତି। ଧନ ପାଇଁ କେଜାଣି ଆହୁରି କେତେ ନା କେତେ ଅନର୍ଥ କରିପକାଇ ଥାଆନ୍ତି। ଭଗବାନଙ୍କର ଅମାପ କୃପା, ଆଜି ମୋତେ ଏହି ଦଶାରେ ପହଞ୍ଚାଇ ଦେଇଛନ୍ତି। ମୋର ଏବେ ଯେଉଁ ପଶ୍ଚାତାପ ହେଉଛି, ମୋ ହୃଦୟରେ ଏବେ ଯେଉଁ ଗ୍ଲାନି ହେଉଛି, ସଂସାର ପ୍ରତି ଯେଉଁ ନିର୍ବେଦ ଜାତ ହେଉଛି, ସଂସାର ସାଗରରେ ବୁଡ଼ିଯାଉଥିବା ମୋ ଭଳି ପ୍ରାଣୀ ପାଇଁ ଏହା ପରମ ସହାୟକ ହୋଇଛି। ସଂସାର ସାଗର ପାରି ହେବା ପାଇଁ ମୋର ଏହି ପଶ୍ଚାତାପ ନୌକାର କାମ ଦେବ।''

ମହାତ୍ମା ପଚାରିଲେ, ''ତାହାହେଲେ ତୁମେ ଏବେ କ'ଣ ସ୍ଥିର କରୁଛ?''

କୃପଣ ବିପ୍ର କହିଲା, ''ଭଗବନ୍! ମୁଁ ସ୍ଥିର କଲେ କ'ଣ ହେବ, ଆପଣ କୃପା ଯଦି କରନ୍ତି ତେବେ କିଛି ହୋଇପାରିବା ସମ୍ଭବ ହୁଅନ୍ତା। ଭଗବାନଙ୍କର ଅନୁଗ୍ରହ ହେଲା, ମୋର ବି ଆଉ କେତେ ଦିନ ଆୟୁଷ ଅଛି, ଏହି ସମୟତକ ସକଳପ୍ରକାର ଧର୍ମ ସାଧନ ପ୍ରତି ସାବଧାନ ଓ ସନ୍ତୁଷ୍ଟ ଚିତ୍ତ ହୋଇ ଘୋର ତପସ୍ୟା କରିବି। ତପ କରି କରି, ଏହି ଶରୀରକୁ ଶୁଖାଇ ଶୁଖାଇ ପୂର୍ବ ପାପର ପ୍ରାୟଶ୍ଚିତ କରିବି।''

ମହାତ୍ମା କହିଲେ, ''ଭାଇ! ତୁମର ଆୟୁ ତ ସରିଆସିଲାଣି।''

ବିପ୍ର କହିଲା, ''ଭଗବନ୍! ଆପଣ କୃପା କଲେ ଆଉ ଦେବତାମାନେ ମୋର ଏହି ସଂକଳ୍ପକୁ ଅନୁମୋଦନ କଲେ ଏଇ ଅଳ୍ପ ସମୟ ଭିତରେ ମୁଁ ସବୁ କରିପାରନ୍ତି। ମହାରାଜ ଖଟ୍ୱାଙ୍ଗ ତ ଗୋଟିଏ ମୁହୂର୍ତ୍ତରେ ବ୍ରହ୍ମଲୋକକୁ ଯାଇପାରିଥିଲେ। ମୋର ଆୟୁଷ କିଛି ଦିନ ତ ଅଛି।''

ମହାତ୍ମା ପଚାରିଲେ, ''ହଉ! କୁହ, ତୁମେ କ'ଣ ଚାହୁଁଛ?''

କୃପଣ ବିପ୍ର କହିଲା, ''ପ୍ରଭୁ! ମୋତେ ଆପଣ ଶରଣ ଦେବା ହୁଅନ୍ତୁ। ମୋତେ ସନ୍ୟାସ ଦୀକ୍ଷା ଦିଅନ୍ତୁ।''

ଭଗବାନ୍ କୃଷ୍ଣଚନ୍ଦ୍ର ମହାଭାଗ ଉଦ୍ଧବଙ୍କୁ କହୁଛନ୍ତି, ''ହେ ଉଦ୍ଧବ! ବ୍ରାହ୍ମଣ ସେହି ମହାତ୍ମାଙ୍କର ଶରଣ ଗ୍ରହଣ କରିବା ପରେ ମହାତ୍ମା ତାକୁ କୃପା ପ୍ରଦାନ କଲେ। ସେ ତାକୁ ସନ୍ୟାସ ଦୀକ୍ଷା ଦେଲେ। ସେ ପରକ୍ଷଣଠାରୁ ତ୍ରିଦଣ୍ଡୀ ମୌନୀ ଭିକ୍ଷୁ ସନ୍ୟାସୀ ହୋଇଗଲା। ସନ୍ୟାସୀ ହୋଇ ସେ ଯେପରି ଅପୂର୍ବ ସହନଶୀଳତା ପ୍ରଦର୍ଶନ କଲା ତାହାର ବର୍ଣ୍ଣନା କରୁଛି, ଶୁଣ।''

ମହାପ୍ରାଜ୍ଞ ସୂତ କହିଲେ, ''ହେ ଋଷିଗଣ! ଏବେ ଆପଣମାନେ ସେହି କଦର୍ଯ୍ୟ ବ୍ରାହ୍ମଣଶ୍ରେଷ୍ଠର ସହନଶୀଳତା ପ୍ରସଙ୍ଗ ଧ୍ୟାନ ପୂର୍ବକ ଶୁଣନ୍ତୁ।''

## ଛପ୍ପୟ

ଚୋରୀ, ଜାରୀ, କାମ, କ୍ରୋଧ, ମିଥ୍ୟା ଭାଷଣ ଅତି।
ଈସ୍ମୟ, ମଦ, ପାଖଣ୍ଡ, ବୈର ଅରୁ ଭେଦ ବ୍ୟସନ ଗତି॥
ଈର୍ଷା, ବିଶ୍ୱାସହୀନତା, ହିଂସା, ଅନରଥ।
ହୋହି ଅର୍ଥ ତେ ସକଲ ସଧେ କା ଧନ ତେ ସ୍ୱାରଥ॥
ସବ ବ୍ୟସନନି କୋ ଧନ, ତୃଷ୍ଣା ଅବ ନହିଁ କରୁଙ୍ଗେ।
କରେ କୃପା କରୁଣାୟତନ, ତୋ ସବ ତଜି ହରି ଭଜଙ୍ଗେ॥



# କୃପଣ ସନ୍ନ୍ୟାସୀର ସହନଶୀଳତା

ତଂ ବୈ ପ୍ରବୟସଂ ଭିକ୍ଷୁମବଧୂତମତଜ୍ଜନାଃ ।
ଦୃଷ୍ଟ୍ୱା ପର୍ଯଭବନ୍ ଭଦ୍ର ବହ୍ୱୀଭିଃ ପରିଭୂତିଭିଃ ।। ★

[ଶ୍ରୀଭା.୧୧ସ୍କ.୧୩ଅ. ୩୩ଶ୍ଳୋକ]

### ଛପ୍‌ପୟ

ୟୋ ନିଶ୍ଚୟ କରି ବିପ୍ର ଭୟୋ ଦଣ୍ଡୀ ସଂନ୍ୟାସୀ ।
ପ୍ରାନ, କରନ, ମନ ସାଧି ବନ୍ୟୋ ଭଗବତ ବିଶ୍ୱାସୀ ।।
ଭିକ୍ଷା କୁଁ ଜବ ଜାଇ କରୈ ଅପମାନ ଅସଜ୍ଜନ ।
ଛିନୈ କନ୍ଥା, ଦଣ୍ଡ, କମଣ୍ଡଲୁ, ମାଳା, ଆସନ ।।
କରନ ଲଗୈ ଭିକ୍ଷା ଜବହିଁ, ତ୍ୟାଗି ଦେହିଁ ମଲ ମୂତ୍ର ଖଲ ।
ଦେହିଁ ବିବିଧି ବିଧି ୟାତନା, ତଜ ନ ହୋବୈ ଦ୍ୱିଜ ବିକଲ ।।

ସଂସାରରେ ଦୁଷ୍ଟ ଲୋକ ନ ଥିଲେ ସଜ୍ଜନଙ୍କ ସଜ୍ଜନତାର ପରୀକ୍ଷା ହୋଇପାରନ୍ତା ନାହିଁ। ବିପତ୍ତି ନ ପଡ଼ିଲେ ଧୈର୍ଯ୍ୟର ପରୀକ୍ଷା କିପରି କରାଯାଇ ପାରନ୍ତା । ଅଗ୍ନି ନଥିଲେ ସୁବର୍ଣ୍ଣର ପରୀକ୍ଷା କିପରି କରାଯାଇ ପାରନ୍ତା ? ଅଗ୍ନିଦେବ କେବଳ ସୁବର୍ଣ୍ଣର ଶୁଦ୍ଧତା କୁହନ୍ତି ନାହିଁ, ତାହାର ମଳକୁ ବି ଭକ୍ଷଣ କରିଦିଅନ୍ତି। ଏହିଭଳି ଦୁଷ୍ଟ ଲୋକମାନେ ସଜ୍ଜନଙ୍କ ସଜ୍ଜନତାକୁ କେବଳ ପ୍ରମାଣ (ସିଦ୍ଧ) କରନ୍ତି ନାହିଁ, ଏହା ସହିତ ସେମାନଙ୍କ ପାପକୁ ବି ନେଇ ଯାଆନ୍ତି। ଯିଏ ଅନ୍ୟଜଣଙ୍କର ଗୁଣର ପ୍ରଶଂସା କରେ, ସେହିଁ ପ୍ରଶଂସକ ପାଖକୁ ଗୁଣଗୁଡ଼ିକ ଚାଲିଆସେ । ଠିକ୍ ସେହିଭଳି ନିନ୍ଦୁକ ପାଖକୁ ନିନ୍ଦା ପାଉଥିବା ଲୋକ ପାପଗୁଡ଼ିକ (ନିନ୍ଦନୀୟ କଥା) ଗୁଡ଼ିକ ମଧ୍ୟରୁ ଏକ ଚତୁର୍ଥାଂଶ ପାପ ଚାଲିଆସେ । କୌଣସି ଲୋକର ବସ୍ତ୍ରକୁ କେହି ଧୋଇଲେ ସେହି ଧୋଇବା ଲୋକକୁ ପାରିଶ୍ରମିକ ମିଳେ। କାହାର ଫଳକୁ କେହି କାଟିକୁଟି ଧୁଆଧୋଇ କରି ଶୁଦ୍ଧ କଲେ ତାକୁ କିଛି ଫଳ ଦିଆହୁଏ। ଏହିଭଳି ଯଦି କେହି ଅନ୍ୟ ଜଣଙ୍କୁ ନିନ୍ଦାକରି ତା'ର ପାପକୁ ଧୌତକରେ ତେବେ ତାକୁ କିଛି ପାପର ଭାଗୀଦାର ହେବାକୁ ପଡ଼େ। ଏଣୁ ପରମାର୍ଥ ପଥର ପଥିକକୁ ନା ନିନ୍ଦିତର ନିନ୍ଦା କରିବା ଉଚିତ, ନା ତାକୁ ନିଜର ଶତ୍ରୁ ବୋଲି ଭାବିବା ଉଚିତ। ନିନ୍ଦୁକ ତ ଆମର ହୈତେଷୀ ହୋଇଥାଏ । ସେ ନିନ୍ଦାକରି, ଆମକୁ କଷ୍ଟଦେଇ, ଆମର ହୃଦୟକୁ ବି ଶୁଦ୍ଧ କରିଦିଏ, ଆଉ ନିଜେ ପାପର ଭାଗୀଦାର ହୋଇଯାଏ ।

---



| | | | |
|---|---|---|---|
| ଗୁପତେ ଅବଧୂତ ବେଶେ | । | ବୁଲଇ ପୁର-ଗ୍ରାମ-ଦେଶେ | ।। |
| ସ୍ୱଭାବେ ଦିଶେ କୁଗନଟ | । | ବୃଦ୍ଧ ଭିକ୍ଷୁକ ସେ ବ୍ରାହ୍ମଣ | ।। |
| ଗୁପତ ଦେଖି ତାର ଚିହ୍ନ | । | ଲୋକେ କରନ୍ତି ଅପମାନ | ।। |
| ଭୟେ କରାଇ ତାକୁ ତ୍ରାସ | । | କରନ୍ତି ହାସ ପରିହାସ | ।। |

[ଭାଗବତ : ଜଗନ୍ନାଥ ଦାସ :୧୧ସ୍କନ୍ଧ, ୨୪ଅ]

ମହାପ୍ରାଜ୍ଞ ସୂତ କହୁଛନ୍ତି– ହେ ମୁନିଗଣ ! ସେହି ବ୍ରାହ୍ମଣ ଯେତେବେଳେ ଦୁଃଖରେ ମ୍ରିୟମାଣ ହୋଇଗଲା, ଆଉ ଧନର କୁ ପ୍ରଭାବ, ଏଥିରୁ ଉତ୍ପନ୍ନ ହେଉଥିବା ଅନର୍ଥ ବିଷୟରେ ଯଥାର୍ଥଭାବରେ ପରିଚିତ ହୋଇଗଲା, ସେ ସେହି ମହାତ୍ମା ସନ୍ୟାସୀଙ୍କଠାରୁ ଦୀକ୍ଷା ଗ୍ରହଣ କଲା । ଏହି କଥା ବର୍ଣ୍ଣନା କରିବାକୁ ଯାଇ ଭଗବାନ୍ କୃଷ୍ଣଚନ୍ଦ୍ର ଉଦ୍ଧବଙ୍କୁ କହୁଛନ୍ତି, ''ହେ ଉଦ୍ଧବ ! କୃପଣ ବ୍ରାହ୍ମଣ ଅସହାୟ ଭାବରେ ଯେତେବେଳେ ସେହି ବୈଷ୍ଣବ ମହାତ୍ମାଙ୍କର ଶରଣ ପଶିଲା, ସେତେବେଳେ ମହାତ୍ମା ତାଙ୍କର ଯୋଗବଳରେ ଜାଣିଗଲେ ଯେ, ବ୍ରାହ୍ମଣ ବାସ୍ତବିକ ପଶ୍ଚାତ୍ତାପ କରୁଛି, ତା' ହୃଦୟରେ ବୈରାଗ୍ୟ ଆସିଗଲାଣି, ଏବେ ଇଏ ଭଜନର ଅଧିକାରୀ ହୋଇଗଲାଣି । ମଣିଷ ଯେତେ ପାପୀ ହୋଇଥାଉ ପଛେ, ଯେତେ ମହାନ୍ ଘୋର ପାପ କରିଥାଉ ପଛେ, ଯଦି ସେ ନିର୍ମଳ ହୃଦୟରେ ପଶ୍ଚାତ୍ତାପ କରି ପ୍ରଭୁଙ୍କ ଶରଣ ଗ୍ରହଣ କରେ, ସେ ପରମ ସାଧୁ ହୋଇଯାଏ । ଏହାପରେ ତା'ର ଉଦ୍ଧାରର ଆଉ ସାମାନ୍ୟମାତ୍ର ସନ୍ଦେହ ରହେନାହିଁ । ହୃଦୟରେ ନିଜର କୁକୃତ୍ୟର ଆତ୍ମଗ୍ଲାନି ହୋଇଯାଇଛି, ଯାକୁ ମୁଁ ସନ୍ୟାସଧର୍ମରେ ଦୀକ୍ଷିତ କରିଦେବି ।' ଏପରି ଦୃଢ଼ ନିଶ୍ଚୟ କରି ମହାତ୍ମା ତାକୁ ବୈଷ୍ଣବ-ବିଧିରେ ସନ୍ୟାସ ଦୀକ୍ଷା ପ୍ରଦାନ କଲେ । ଶରୀର, ବାଣୀ ଆଉ ମନ, ଏହି ତିନିଦଣ୍ଡର ପ୍ରତୀକ ତାକୁ ବିଧିଅନୁସାରେ ଦେଲେ । ବ୍ରାହ୍ମଣ ତା' ଗୁରୁଦେବଙ୍କୁ ପଚାରିଲା, 'ପ୍ରଭୁ ! ମୁଁ ଏବେ କ'ଣ କରିବି ?''

ମହାତ୍ମା କହିଲେ, ''ତୁମେ ମୌନବ୍ରତ ଧାରଣ କର । ସାଂସାରିକ କଥାବାର୍ତ୍ତା କଲେ ସାଧାରଣତଃ କଳି ତକରାଳ, ବାକ୍‌ବିତଣ୍ଡା, ଝଗଡ଼ାଝାଟି ହୋଇଥାଏ । ତୁ ଭଗବାନଙ୍କର ସୁମଧୁର ନାମ ବ୍ୟତୀତ କୌଣସି ପ୍ରକାର ସାଂସାରିକ କଥାବାର୍ତ୍ତା କାହା ସାଙ୍ଗରେ ହେବୁନାହିଁ । ତୋତେ କେହି ଅତି କଟୁ କହିଲେ କି ଅତି ପ୍ରଶଂସା କଲେ ବି ତୁ ତୋ ମନରେ ଏତେ ଟିକିଏ ବି ବିଷମ ଭାବ ଆଣିବୁ ନାହିଁ । ତୋତେ କେହି ପିଟିଲେ ବା ମାରିଲେ ସୁଦ୍ଧା ତୁ କାହାର ଟିକିଏ ବୋଲି ଅପକାର କରିବୁ ନାହିଁ କି ଅପକାର ଭାବିବୁ ବି ନାହିଁ । ଗୃହସ୍ଥଙ୍କ ଘରୁ ଭିକ୍ଷା ଆଣି ତହିଁରେ ଚଳିବୁ । କେହି ସମ୍ମାନର ସହିତ ଯଦି ଦିଅନ୍ତି ତେବେ ତାକୁ ପ୍ରଶଂସା କରିବୁ ନାହିଁ । କେହି ଅପମାନର ସହିତ ଘୃଣାପୂର୍ବକ ଦେଲେ ଅଥବା ନ ଦେଲେ ବି ତାଙ୍କୁ କୌଣସି ପ୍ରକାର କଟୁ କଥା କହିବୁ ନାହିଁ, କି ତାଙ୍କ କଥାରେ ରୋଷ ପ୍ରକାଶ କରିବୁ ନାହିଁ । ମନେରଖ ! ସହନଶୀଳତା ହିଁ ସାଧୁତା । କ୍ଷମା ହେଉଛି ସାଧୁମାନଙ୍କର ଭୂଷଣ । ନିଜ ଆଡୁ କାହାପ୍ରତି ଉଦ୍‌ବେଗ ନ ପହଞ୍ଚିବା ଉଚିତ । ସ୍ୱଭାବାନୁସାରେ କେହି ପୀଡ଼ା ଦେଲେ ତାହାକୁ ପ୍ରାରବ୍ଧର ଫଳ(ଭୋଗ) ବୋଲି ଜାଣି ସହ୍ୟ କରିବୁ ।'

''ଗୁରୁଦେବଙ୍କ ମୁହଁରୁ ଏପରି କଥା ଶ୍ରବଣ କରି ସେହି ସନ୍ୟାସୀ ବ୍ରାହ୍ମଣ ମନ, ଇନ୍ଦ୍ରିୟ ଆଉ ପ୍ରାଣ– ଏହି ତିନୋଟିକୁ ଦୃଢ଼ତାର ସହିତ ସଂଯମ କରି, ସବୁ ଆଡୁ ଅନାସକ୍ତ ହୋଇ, ବିରକ୍ତ ବୈଷ୍ଣବଙ୍କ ଭଳି ପୃଥିବୀରେ ବିଚରଣ କରିବାରେ ଲାଗିଲା । ସତ୍‌ପାତ୍ର ଗୃହସ୍ଥଙ୍କ ଘରୁ ଭିକ୍ଷା ଆଣି, ନଦୀଜଳରେ ଧୋଇ ପାଉଥିଲା ଓ ମୌନ ରହି ସବୁ ସମୟରେ ମୋ କଥା ଚିନ୍ତା କରିବାରେ ଲାଗିଥିଲା । କେତେଦିନ ଭ୍ରମଣ କରିବା ପରେ ସେ ପୁଣି ଉଜ୍ଜୟିନୀକୁ ଆସିଲା । ଏବେ ଲୋକମାନେ ତାକୁ ଯେତେବେଳେ ସନ୍ୟାସୀ ବେଶରେ ଦେଖିଲେ, ସମସ୍ତେ ପରିହାସ ବ୍ୟଞ୍ଜକ ଭାବେ ହସିବାରେ ଲାଗିଲେ । କେତେକ କହିବାରେ ଲାଗିଲେ–

'ନାରୀ କାମୀ ଘର ସଂପତି ନାଶୀ । ମୁଣ୍ଡ ଲଣ୍ଡାଇ ହେଲା ସନ୍ୟାସୀ ।।' ଦେଖ ! ଦେଖ ! କିପରି ବେଶ ଧରିଛି ଶଠ । ଧନ ରୋଜଗାର କରିବାର ଇଏ ଆଉ ଏକ ଉପାୟ ଧରିଛି ।''

''ପୁଣି କେହି କହୁଥାଏ, 'ଆରେ ଭାଇ, ଜାଣିନ କି—

'ଚାକିରି କଲେ ମିଳେ କଷଣ। ଭିକ ମାଗିଆଣି କର ଭୋଜନ।' ବୁଢ଼ା ହେଲା, ବାବାଜୀ ହୋଇଗଲା।

ଆଉ କେହି କେହି କହୁଥାନ୍ତି, 'ଚାରି ପଇସାରେ ଲଣ୍ଡା ହେଲେ ଖୁବ୍ ଲାଭ ମିଳେ।'

ଆଉ ଜଣେ କହିଲା, 'ଆରେ ଭାଇ! ଏହି ସାଧୁ ବେଶ ଅତି ସରଳ, ଏଥିରେ ସମସ୍ତ ପାପ ଲୁଚିଯାଇପାରେ। କାଲି ପର୍ଯ୍ୟନ୍ତ ଯିଏ ଥିଲା ମହାଠକ, ଚୋର, ବଦ୍‌ମାସ, କୃପଣ, ଆଜି ସେ ନିଜର ବସ୍ତ୍ରକୁ ଗେରୁ କରି, ସ୍ୱାମୀ ହୋଇଯାଇଛି। ଓଠ ହଲାଇବାରେ ଲାଗିଛି, ସତେ ଯେପରି ଲୋକମାନେ ଭାବିବେ ଯେ ସେ ଭଜନ କରୁଛି। ହେଲେ ଏହି ସ୍ୱାମୀଙ୍କର ଭଜନ ହେଉଛି ଅଲଗା—

ରାମ ନାମ ଜପ୍‌ନା। ପରାୟା ମାଲ ଅପନା॥ ଗେରୁଆ ବସ୍ତ୍ର ପିନ୍ଧି ପକାଅ, ଯେ କୌଣସି ଜାତିର ହୋଇଥିଲେ ହୋଇଥାଅ ପଛେ, ସମସ୍ତେ ତୁମର ପାଦ ଛୁଇଁବେ। ଏଇ କୃପଣକୁ ଦେଖ! କାଲି ପର୍ଯ୍ୟନ୍ତ ଛଦାମ ଛଦାମ ପାଇଁ ଯାର ପ୍ରାଣ ଛାଡ଼ିଯାଉଥିଲା; ଯା ଏକମାତ୍ର ଧର୍ମ ଥିଲା— ପ୍ରାଣ ପଛେ ଯାଉ, ପଇସାଟିଏ ନ ଯାଉ— ସେ ପୁଣି ଆଜି ତ୍ରିଦଣ୍ଡୀ ସନ୍ୟାସୀ ହୋଇଯାଇଛି। ଭିକ ମାଗିବା ପାଇଁ ବଡ଼ ସୁନ୍ଦର ବେଶ ଧରିଛି। କିଛି ଖାଇବ, ଆଉ କିଛି ସଂଚୟ କରିବ। କଥାରେ ଅଛି, ପ୍ରକୃତି ନ ଏବ ମୃତ୍ୟୁତେ। କୃପଣ ଯେତେ ସାଧୁ ବେଶ ଧରୁ ପଛେ ତା' ସ୍ୱଭାବ ତ କଦାପି ପରିବର୍ତ୍ତନ ହେବନାହିଁ। ଯଦି କିଛି ନ ମିଳେ ତେବେ ସେ ନିଜର ରୁଟି, ଅନ୍ନକୁ ବିକ୍ରି କରିଦେବ।'

''ଆଉ କେତେକ କହିଲେ, 'ଇଏ ଯଦି ସାଧୁ, ତେବେ ଚାଲ ତା'କୁ ପରୀକ୍ଷା କରିବା। ସାଧୁ ଭାବ ଦେଖାଇ ହେଉଛି କି ପ୍ରକୃତରେ ଯାର ବିରାଗ ଆସିଯାଇଛି, ଠିକ୍ ଜଣାପଡ଼ିବ।''

ଭଗବାନ୍ ଉଦ୍ଧବଙ୍କୁ କହୁଛନ୍ତି, ''ହେ ଉଦ୍ଧବ! କେତେକ ଲୋକ ଏପରି ଥାଆନ୍ତି, ଯେଉଁମାନେ ଅନ୍ୟର ନିନ୍ଦା ନ କଲେ ଖାଇବା ହଜମ କରିପାରନ୍ତି ନାହିଁ। ସେମାନେ ଅନ୍ୟର ନିନ୍ଦା କରି କରି ଦିନଟିଯାକ କଟାଇ ଦିଅନ୍ତି। ଆଉ କେତେକ ଅଛନ୍ତି ଯେଉଁମାନେ ଅନ୍ୟଙ୍କୁ ଦୁଃଖ ଦେଇ ଅମାପ ଆନନ୍ଦ ଅନୁଭବ କରନ୍ତି। ସେମାନେ ନିଜର ଆନନ୍ଦ ନିମନ୍ତେ ଅନ୍ୟ ଦୁଇଜଣଙ୍କ ମଧ୍ୟରେ ଝଗଡ଼ା ଲଗେଇ ଦିଅନ୍ତି। ଅନ୍ୟର ଜୀବନ ନଷ୍ଟ କରିଦିଅନ୍ତି। ଏ ଭଳି ଖଳ ପ୍ରାୟ ସବୁ ସ୍ଥାନରେ ଥାଆନ୍ତି।

''ସେହି ବ୍ରାହ୍ମଣ ବୁଢ଼ା ହୋଇଯାଇଥିଲା। ତା କୁକୃତ୍ୟ ପାଇଁ ସେ ଗଭୀର ପଶ୍ଚାତାପ କରିଥିଲା। ଧନ ଆଶା ତା'ର ସଂପୂର୍ଣ୍ଣ ବିନିଷ୍ଟ ହୋଇଯାଇଥିଲା। କଥା କହିବା ପୂରାପୂରି ବନ୍ଦ କରିଦେଇଥିଲା। ମନ ଓ ପ୍ରାଣକୁ ସଂଯମ କରି ମନେ ମନେ ଗୁରୁମନ୍ତ୍ରକୁ ମନନ ଚିନ୍ତନ କରିବାରେ ଲାଗିଥିଲା। କେବଳ ଭିକ୍ଷାରେ ଜୀବନ ନିର୍ବାହ କରୁଥିଲା। ହେଲେ ଦୁଷ୍ଟମାନେ ତାକୁ ପ୍ରଚୁର ଦୁଃଖ ଦେବାରେ ଲାଗିଥିଲେ।

''ସେ ତା'ର ଦଣ୍ଡ କମଣ୍ଡଳୁ ଧରି ବାଟେ ବାଟେ ଯାଉଥିଲା। କେହି ଜଣେ ଦୁଷ୍ଟ ତା' ଦଣ୍ଡ ଛଡ଼ାଇ ନେଲା। ଏଥିରେ ସେ ଚୁପ୍‌ଚାପ୍ ସେହି ସ୍ଥାନରେ ବସିଗଲା। କେହି

ଜଣେ କହିଲା– 'ଆରେ ଭାଇ, ଦେଇ ଦେ, କାହିଁକି ତାକୁ ହିନସ୍ତା କରୁଛୁ ! ଯାରି ସହାୟତାରେ ତ ସେ ମାଗି ଚଳୁଛି ।'

''ଏପରି କଥା ଶୁଣି ଆଉ ଜଣେ କହିଲା– 'ଆରେ, ତା' ବାଉଁଶ ବାଡ଼ିଟା ନେଇ ଲାଭ କ'ଣ ମିଳିବ ; ବାବାଜୀଙ୍କର କମଣ୍ଡଳୁ ହେଉଛି ସର୍ବୋତ୍ତମ । ମୁଁ ଏଥିରେ କ୍ଷୀର ପୂରାଇ ପିଇବି । ଏପରି କହି ସେହି ଦୁଷ୍ଟ କମଣ୍ଡଳୁଟି ନେଇ ପଳାଇଯାଉଥାଏ ।

''ଅନ୍ୟ ଜଣେ କହିଲା, 'କ'ଣ ହୋ ବାବାଜି ! ଏଇ ଶୟନାସନ କେଉଁଠୁ ମାଗିଛ ? ଏଇଟା ଆମର କାମରେ ଆସିବ । ଏପରି କହି ବାବାଜୀର କମଳାସନ ନେଇ ପଳାଇ ଯାଉଥାଏ ।

''କେହି ତା'ର ରୁଦ୍ରାକ୍ଷ ମାଳାକୁ ଚାହିଁ କହୁଥାଏ– ବାବାଜି ! ଆମକୁ ଆପଣଙ୍କର ଚେଲା କରିଦିଅନ୍ତୁ ନା ! ଏହି ମାଳା ଭାରି ସୁନ୍ଦରିଆ ହୋଇଛି । ଆସ ଆମ ସହିତ ଭୋଜନ କରିବ ।'

''କେହି ତା'ର ଭିକ୍ଷା ପାତ୍ର ଧରି ପଳାଇ ଯାଉଥାଏ । କେହି ତାର କଟିବସ୍ତ୍ରକୁ ଧରି ପଳାଇଯାଉଥାଏ, ପୁଣି କିଛି ଦୂରରୁ ଫେରି ଆସି କହୁଥାଏ– 'ଓଃ ତୁମେ ବାବାଜୀ ପରା ! ତୁମର ଗେରୁଆ ଲୁଗା ଆମର କ'ଣ ହେବ । ନେଇ ଯା, ନେଇ ଯା !' ଏପରି କହି ସେ ଦେଇ ଦେଉଥାଏ । ସନ୍ୟାସୀ ତାକୁ ନେବା ପାଇଁ ହାତ ବଢ଼ାଇବା କ୍ଷଣି ସେହି ବସ୍ତ୍ରଧରି ଲୋକଟି ପଛକୁ ଘୁଞ୍ଚିଯାଉଥାଏ । ଏହିଭଳି ନାନା ପ୍ରକାର ଭାବରେ ତା' ସହିତ ପରିହାସ କରିବାରେ ଲାଗିଥାଆନ୍ତି ।

''କେହି କହୁଥାଏ– 'ବାବାଜୀ କେତେ ଟଙ୍କା ଜମେଇଲଣି । ଠିକ୍ ଠିକ୍ କୁହ, ମିଛ କହିବନିଟି !' ଆଉ କିଏ ମିଛିମିଛିକା ଦଣ୍ଡକମଣ୍ଡଳୁ ଧରି ତା' ଆଗରେ ଅବିକଳ ଅଭିନୟ କରି କରି ଚାଲି ଦେଖାଉଥାଏ । କେହି କହୁଥାଏ– ବାବାଜୀ, ତୁମେ ତୁମର ବ୍ରାହ୍ମଣୀଙ୍କୁ ମାତାଜୀ କରିନିଅ । ଦୁହେଁ ମିଶିଲେ ଅଧିକ ଭିକ ପାଇପାରନ୍ତ ।' ସମସ୍ତେ ଅତି ଅକୁହା ଅଶ୍ରାବ୍ୟ କଥା ସେହି ବାବାଜୀକୁ କହି ହସରେ ଗଡ଼ିଯାଉଥାଆନ୍ତି । କିନ୍ତୁ ସେ ରହିଥିଲା ମୌନ ହୋଇ ! ସତେ ଯେପରି କାହାରି ବି ବ୍ୟଙ୍ଗୋକ୍ତି ତା' କାନରେ ପଶୁନାହିଁ ।

ସେ ଯେତେବେଳେ ଭିକ୍ଷା ପାଇଁ ବାହାରୁଥାଏ ଲୋକମାନେ ନାନା ପ୍ରକାର ଯାତନା ଦେବାରେ ଲାଗନ୍ତି । ସେ କୌଣସି ପ୍ରକାର ଲୋକଙ୍କର ବକ୍ରୋକ୍ତି, ବ୍ୟଙ୍ଗୋକ୍ତିକୁ ସହ୍ୟକରି ଭିକ୍ଷା ସଂଗ୍ରହ କରୁଥାଏ– ତେବେ ବି ଏପରି କେତେକ ଲୋକ ଥାଆନ୍ତି ଯେଉଁମାନେ ସେ ଭିକ୍ଷା ପାଉଥିବା ସ୍ଥାନରେ ପହଞ୍ଚି କି ହିନସ୍ତା କରନ୍ତି । ଭିକ୍ଷା ଉପରେ ନିର୍ବାହ କରୁଥିବା ଯତିଙ୍କର ପ୍ରଧାନ ନିୟମ ହେଉଛି ଯେ ସେମାନେ ଖଟା, ମିଠା, ଅନ୍ନ, ରୁଟି ଯାହା ପାଆନ୍ତି ଗୋଟିଏ ଝୁଲାରେ ହିଁ ସଂଗ୍ରହ କରନ୍ତି । ଫଳରେ ସବୁ ପ୍ରକାର ଜିନିଷ ଗୋଟିକରେ ମିଶି ରହେ । ସେହି ଭିକ୍ଷାପୂର୍ଣ୍ଣ ଝୁଲାକୁ ନଦୀଜଳରେ ତିନିଥର ବୁଡ଼ାଇ ଧୌତ କରିବାପରେ, ଯେତେବେଳେ ବିଭିନ୍ନ ପ୍ରକାରର ସ୍ୱାଦ ମିଶି ଏକାକାର ହୋଇଯାଏ, ଝୁଲାରୁ ବାହାର କରି ଗୋ ଆଦିଙ୍କ ଭାଗ ତହିଁରୁ ପୃଥକ୍ ରଖିବା ପରେ ଆଉ ଯାହା ବଳକା ରହେ ତାକୁ ଅମୃତ ସମ ମନେକରି ଅତି ପ୍ରେମର ସହିତ ପାଇବେ । ଏବଂ ରାତିପାଇଁ ସେଥିରୁ କିଛି ବଳକା ରଖିବେ ନାହିଁ ।

ଏହି ଭିକ୍ଷୁ ବ୍ରାହ୍ମଣ-ଯତି ମଧ ଏହି ନିୟମ ପାଳନ କରୁଥିଲା। ସେ ଭିକ୍ଷା ଧରି ନଦୀତଟକୁ ଯାଉଥିବା ବେଳେ ସେହି ଦୁଷ୍ଟ ଲୋକମାନେ ସେଠାରେ ବି ପହଞ୍ଚି ଯାଉଥିଲେ। ସେମାନେ କହୁଥିଲେ, 'ବାବାଜି! କ'ଣ ଏକା ଏକା ଏତେ ସ୍ୱାଦିଷ୍ଟ ଭିକ୍ଷାନ୍ନ ଖାଇଯିବ! ଆମକୁ ବି କିଛି କିଛି ଭାଗ ମିଳୁ।' ସେ କିନ୍ତୁ କହିବ ବା କ'ଣ? ଏମାନେ ବେଶୀ ଲାଗିଲେ ସେ ଗୋଟିଏ ରୁଟି ଏମାନଙ୍କୁ ବଢ଼ାଇ ଦିଏ। ଦୁଷ୍ଟଲୋକମାନେ କିନ୍ତୁ ସେହି ରୁଟିକୁ ଗ୍ରହଣ ନ କରି କୁହନ୍ତି– 'ହଉ ହଉ! ହେଲା! ଆମେ ସେଇଟିକୁ ତୁମକୁ ଭିକ୍ଷା ଦେଲୁ। ସନ୍ୟାସୀଙ୍କୁ ଭିକ୍ଷା ଦେବାପରେ ଆଚମନୀୟ ଜଳ ଦେବା ଉଚିତ। ଏଇ ନିଅ ଆଚମନୀୟ ଜଳ।' ଏପରି କହି ସେମାନେ ତା' ଉପରେ ମୂତି ଦେଉଥିଲେ। କେତେକ ତା' ଉପରେ ମଳ ମଧ ଛାଟି ଦେଉଥିଲେ। ପୁଣି କେତେକ ତା' ଆଡ଼କୁ ହସି ହସି ଆସି ତା' ଉପରେ ଛେପ ଖଙ୍କାର ପକାଇ ଦେଉଥିଲେ।''

ଉଦ୍ଧବ କହିଲେ, ''ପ୍ରଭୁ! ଦୁଷ୍ଟମାନେ ଏପରି କାମ କାହିଁ କରୁଥିଲେ? ଏଥିରେ ତ ସେମାନଙ୍କର କୌଣସି ଲାଭ ହେବାର ନାହିଁ।''

ଭଗବାନ୍ କହିଲେ, ''ଭାଇ ଉଦ୍ଧବ! ପରଙ୍କୁ ପୀଡ଼ା ଦେବା ହିଁ ଦୁଷ୍ଟଙ୍କର ହେଉଛି ଲାଭ। ଅନ୍ୟ ଲୋକର କଷ୍ଟ ଦେଖି ସେମାନେ ପ୍ରସନ୍ନ ହୁଅନ୍ତି। କୌଣସି ଲୋକ କିଛି ଶୁଭ କାମ କରୁଥିବା ଦେଖିଲେ ଦୁଷ୍ଟମାନଙ୍କର ଦେହ ଜଳେ। ସେହି ଶୁଭ କର୍ମରେ କୌଣସି ପ୍ରକାର ବିଘ୍ନ ସୃଷ୍ଟି କରିବାପାଇଁ ସେମାନେ ଚେଷ୍ଟା କରନ୍ତି। ଯଦି ଶୁଭ କର୍ମରେ କିଛି ବିଘ୍ନ ହୋଇଯାଏ, ସେମାନଙ୍କୁ ଜଣାପଡ଼େ ସତେ ଯେପରି ସେମାନେ ତ୍ରିଭୁବନ ଜୟ କରିଛନ୍ତି। ତ୍ରିଭୁବନର ସମ୍ପତି ପାଇ ଯାଇଛନ୍ତି। ସେହି ବ୍ରାହ୍ମଣ କିନ୍ତୁ ମୌନବ୍ରତ ଧାରଣ କରିଥିଲା। ଦୁଷ୍ଟମାନଙ୍କର ସମସ୍ତ ଚେଷ୍ଟା ଥିଲା ତା'ର ମୌନ ଭାଙ୍ଗିବା ପାଇଁ। ଦୁଷ୍ଟମାନଙ୍କର ଏପରି ସମସ୍ତ ଚେଷ୍ଟା ବିଫଳ ହେବାରୁ– ମୌନୀ ବାବାଜୀ ତା'ର ମୌନ ନ ଭାଙ୍ଗୁଥିବାରୁ, ସେମାନେ ଅନ୍ୟ ଉପାୟ ଚିନ୍ତା କରିବାରେ ଲାଗିଲେ।

ସେହି ଦୁଷ୍ଟଲୋକମାନେ ଏହାପରେ ଗଛର ଡାଳ ଭାଙ୍ଗି, କେତେକ ଠେଙ୍ଗାରେ କେଞ୍ଚାକେଞ୍ଚି କରିବାରେ ଲାଗିଲେ। କେତେକ ଢେଲା ପଥର ମାରିଲେ। ପୁଣି କେହି କହୁଥାଏ– 'ଏଇ ଆସନଟା ମୋର। ଇଏ କୁଆଡୁ ଆସି ବସିଯାଇଛି। ଉଠାଅ ଯାକୁ।'

ଆଉ ଜଣେ କହେ, ''ଆରେ, ଏଇଟା ବଡ଼ ଚୋର। ଏବେ ସାଧୁ ବେଶ ଧରିନେଇଛି।'

ଅନ୍ୟ ଜଣେ କହେ, 'ଇଏ ଯଦି ଚୋର, ତେବେ ମୁଁ ଆଦେଶ ଦେଉଛି, ଯାକୁ ବାର୍ନ୍ଧିନିଅ।'

ଏହି କଥା ଶୁଣି ସମସ୍ତେ ତାଳିମାରି କୁହନ୍ତି– ଠିକ୍ କଥା କହିଚ ଭାଇ। ଯାକୁ ବାନ୍ଧ। ଦେଖ, ଇଏ ଯେପରି ପଳାଇ ନ ଯାଏ।' ଏପରି କହି ସମସ୍ତେ ମିଶି ଦଉଡ଼ିରେ ତାକୁ ବାନ୍ଧିପକାଉଥିଲେ। କେତେ ସମୟ ତାକୁ ମାଙ୍କଡ଼ ଭଳି ନଚାଇ ଛାଡ଼ି ଦେଉଥିଲେ।

କେତେକ କହୁଥାନ୍ତି, 'ଦେଖ' କିପରି ଅଭିନୟ ନିପୁଣ ହୋଇଯାଇଛି। କାଲି ପର୍ଯ୍ୟନ୍ତ ଅସତ୍ୟ, ପ୍ରପଞ୍ଚ ଠକ ଆଦି କେଜାଣି କେତେ ପ୍ରକାର କୁକୃତ୍ୟରେ ଲିପ୍ତଥିବା ଏହି ଭଣ୍ଡ ଆଜି ମୌନୀ ବାବା ହୋଇଯାଇଛି, କିଛି ବି କହୁନାହିଁ।'

ଏହା ଶୁଣି ଆଉ ଜଣେ କୁହେ, 'ଆରେ ଭାଇ, ଇଏ ବିଚରା ଆଉ କ'ଣ କରନ୍ତା। ବୁଢ଼ା ହୋଇଗଲା, ପୌରୁଷ ଚାଲିଗଲା। ଦୁଧରେ ପଡ଼ିଥିବା ମାଛି ଭଳି ଘର ଲୋକମାନେ ଯାକୁ ବାହାରକୁ ଫୋପାଡ଼ି ଦେଲେ। ଯିଏ କୌଣସି କାମ ପାଇଁ ଅସମର୍ଥ ହୋଇଯାଏ ସେ ତିଳକ ଲଗାଇ ବୈଷ୍ଣବ ହୋଇଯିବା ସହଜ ହୋଇଥାଏ। ଅଳସୁଆ, ଅକର୍ମଣ୍ୟ, ଭଣ୍ଡମାନେ ତ ସାଧୁ ବୈଷ୍ଣବ ବେଶ ଧରିବା ବେଶ୍ ଜାଣନ୍ତି। ଯାକୁ ଆମେ ଧନ୍ୟବାଦ ନ ଦେଇ ରହିପାରୁନେ। କାରଣ ସେ ଏବେ ଯେଉଁ ଭଣ୍ଡାମି କରୁଛି ସେଥିରେ ପୂରାମାତ୍ରାରେ କୃତକାର୍ଯ୍ୟ ହେଉଛି। ଭିକ୍ଷା ରୁଟି ଖାଇ ସେ ବେଙ୍ଗ ଭଳି କିପରି ଫୁଲିଚି ଦେଖୁନ। ପୁଣି ହିମାଳୟ ଭଳି ସହନଶୀଳ ବି ହୋଇ ଯାଇଛି। ପୂରା ବଗ ଭଳି ବୈଷ୍ଣବ ହୋଇଯାଇଛି। ବଗ ଗଙ୍ଗାକୂଳରେ ଆଖି ଯୋଡ଼ିକ ବନ୍ଦକରି ଚୁପ୍‌ଚାପ୍ ଠିଆ ହୋଇଯାଏ। ସତେ ଯେପରି ଜଣେ ହଠଯୋଗୀ ମହାତ୍ମା। ଚାଲିବ କିପରି, ପାଦକୁ ଗଣି ଗଣି, ଦେଖି ଦେଖି ଧୀରେ ଧୀରେ ପକାଉଥିବା ଆଉ ମାଛଟିଏ ଦେଖିବା ମାତ୍ରେ 'ଗୋବିନ୍ଦାୟ ନମୋ ନମଃ'– ଗପ୍‌ପ କିନା ଗିଳି ଦେଉଥିବ। ଠିକ୍ ସେହିଭଳି ଇଏ ମୌନ ରହି ତା'ର ସମସ୍ତ ସ୍ୱାର୍ଥ ହାସଲ କରିଦେଉଛି। କଥାରେ ଅଛି, ଜଣେ ମୌନୀ ହଜାରେ କୁହାଳିଆଙ୍କ ଠାରୁ ହେଲେ ଶ୍ରେଷ୍ଠ।'

ଆଉ ଜଣେ କହେ, 'ଆରେ, ଇଏ ଆମ ସହିତ ସିନା କଥା ହେଉନି, ହେଲେ ତା' ପାଟିଟା ସବୁବେଳେ ଚାଲିଛି, କିଛି ନା କିଛି ସବୁବେଳେ ପାକୁଳେଉଛି।' ଏହା ଶୁଣି ଅନ୍ୟଜଣେ କହେ, 'ଅରେ, ଇଏ ତ ବିଚିତ୍ର ଜନ୍ତୁ, ଯାକୁ ପଞ୍ଜୁରୀରେ ବନ୍ଦ କରିଦେବା ଉଚିତ। ପୁଣି କିଏ କହେ, 'ଯାକୁ ଚାଲ ଗୋଟିଏ ଘରେ ବନ୍ଦ କରିଦେବା।' କେତେକ ତାକୁ ବନ୍ଦକରି ରଖି ବି ଦେଇଥିଲେ। ଏଥିରେ ସୁଦ୍ଧା ସେ ଆପତ୍ତି କରୁ ନଥିଲା। ଏହିଭଳି ଦୈବିକ, ଦୈହିକ ତଥା ଭୌତିକ– ଯେତେ ପ୍ରକାର ପୀଡ଼ା ଦିଆହେଉଥିଲା, ସେ ସେ ସମସ୍ତକୁ ଅତି ଧୈର୍ଯ୍ୟର ସହିତ ସହ୍ୟ କରୁଥିଲା। ସେ ଭାବୁଥିଲା– 'ଆମ ପ୍ରାରବ୍ଧରେ ଯାହା ଥାଏ, ତାହା ଅବଶ୍ୟ ଆମକୁ ଭୋଗ କରିବାକୁ ହୁଏ; ଭାଗ୍ୟର ଲେଖା କେହି ବି ଆନ କରିପାରିବେ ନାହିଁ। ଏମାନେ ତ ମୋର ବଡ଼ ଉପକାର କରୁଛନ୍ତି। ମୋର ପୁରୁଣା ପାପର ପ୍ରାୟଶ୍ଚିତ କରିଦେଉଛନ୍ତି।''

ଏପରି କଥା ଶୁଣି ଉଦ୍ଧବ କହିଲେ, ''ଭଗବାନ୍! ମୋତେ ତ ଏହି କଥାରେ କିଛି ଅତ୍ୟୁକ୍ତି ଜଣାପଡୁଛି। କାରଣ ବିବେକୀ ପୁରୁଷମାନେ ଦୁଷ୍ଟଲୋକମାନଙ୍କର ଦୁଇ ଚାରିଥର ଅପମାନକୁ ଉପେକ୍ଷା କରିପାରନ୍ତି, କିନ୍ତୁ ଅନବରତ ଦୁଃଖ ଦେବାଦ୍ୱାରା ମନରେ ବିକାର ନ ହେବା ଅତି କଠିନ କଥା। ମଣିଷ ସବୁ ଜାଣେ, ତେବେ ସୁଦ୍ଧା କ୍ରୋଧ ତ କରିଥାଏ ନା।''

ଭଗବାନ୍ କହିଲେ, ''ଉଦ୍ଧବ! ତୁମ କଥା ଠିକ୍। ମୋର ମୋହିନୀ ମାୟା ଏପରି ଯେ ବଡ଼ ବଡ଼ ଜ୍ଞାନୀମାନଙ୍କ ମନରେ ବି ମୋହ ହୋଇଥାଏ। ଏହି ସଂସାର ସର୍ପ ସମସ୍ତଙ୍କୁ ଦଂଶନ କରିଥାଏ। କିନ୍ତୁ ଯିଏ ସବୁବେଳେ ସଚେଷ୍ଟ ଥାଏ, ବିଷର ଔଷଧ ସବୁବେଳେ ପାଖରେ ରଖିଥାଏ, ତାକୁ ସର୍ପ ଦଂଶନର ଭୟ ନଥାଏ, ସାପ ବି ସେମାନଙ୍କୁ ସହଜରେ ଦଂଶନ କରେନାହିଁ। ତେବେ ବି ଧର୍ମରୁ ପତିତ ହୋଇଥିବା ସେହି ଦୁଷ୍ଟମାନଙ୍କ ଦୁରାଚାରକୁ ଧୈର୍ଯ୍ୟପୂର୍ବକ ନିଜର ଯତିଧର୍ମରେ ସ୍ଥିର ରହି, ମନକୁ ବୁଝାଇ ମୌନ ରହିଥାଏ। ମନେ ମନେ ସେ ସବୁବେଳେ

ଏକ ବିବେକପୂର୍ଣ୍ଣ ଗୀତ ଗାନ କରୁଥାଏ। ସେହି ଗୀତରୂପୀ ଔଷଧର ପ୍ରଭାବରେ ତାଙ୍କୁ କ୍ରୋଧରୂପୀ ସର୍ପ ଦଂଶନ କରିବାକୁ ସମର୍ଥ ହୋଇପାରୁ ନ ଥାଏ।''

ଉଦ୍ଧବ ପଚାରିଲେ, ''ଭଗବନ୍! ସେହି ଗୀତଟି କ'ଣ ଯେ ତାକୁ ଗାଇବା ଦ୍ୱାରା ଦୁଷ୍ଟମାନଙ୍କ ଏଭଳି ନିର୍ଯ୍ୟାତନାରେ ସୁଦ୍ଧା ସେହି ଭିକ୍ଷୁ କ୍ରୋଧ ହେଉ ନଥିଲା ?''

ଭଗବାନ କହିଲେ, ''ଭିକ୍ଷୁ ଯେଉଁ ଗୀତ ଗାଉଥିଲା, ତା'ର ନାମ ହେଉଛି ଭିକ୍ଷୁ-ଗୀତ। କୃପଣ ବ୍ରାହ୍ମଣ ଦୀକ୍ଷା ନେବାବେଳେ ତା' ଗୁରୁ ତାକୁ ଏହି ଗୀତ ଶିଖାଇ ଦେଇଥିଲେ। ବ୍ରାହ୍ମଣ ସେହି ଗୀତକୁ ମନେରଖି ଥାଏ। ତେଣୁ କୌଣସି ପ୍ରକାର ବୈଦିକ, ଦୈହିକ, ଭୌତିକ ନିର୍ଯାତନା ତାକୁ ପ୍ରଭାବିତ କରିପାରୁ ନଥିଲା।''

ଉଦ୍ଧବ କହିଲେ, ''ଭଗବନ୍! ସେହି ଭିକ୍ଷୁ-ଗୀତ ମୋତେ ଶୁଣାନ୍ତୁ। ମୁଁ ମଧ୍ୟ ସେହି ଗୀତ ମନେରଖି ସହନଶୀଳ ହେବି।''

ଭଗବାନ୍ କହିଲେ, ''ଠିକ୍ ଅଛି। ଏହି ଭିକ୍ଷୁ-ଗୀତ ତୁମକୁ ଶୁଣାଉଛି। ତୁମକୁ ବି ଏବେ ସେପରି ବୃତ୍ତି ଧାରଣ କରିବାକୁ ପଡ଼ିବ। ତୁମେ ଏହି ପୁଣ୍ୟ ପ୍ରସଙ୍ଗକୁ ପ୍ରେମପୂର୍ବକ ଏକାଗ୍ର ଚିତ୍ତରେ ଶ୍ରବଣ କର।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ! ଭଗବାନ୍ ଉଦ୍ଧବଙ୍କୁ ଭିକ୍ଷୁଗୀତ ପ୍ରସଙ୍ଗ ଯେଉଁଭଳି ଶୁଣାଇଥିଲେ ତାହା ଆପଣମାନଙ୍କୁ ଶୁଣାଉଛି, ଆପଣମାନେ ଏକାଗ୍ର ଚିତ୍ତରେ ତାହା ଶ୍ରବଣ କରନ୍ତୁ।''

## ଛପ୍ପୟ

ଡାଁଟେ ଡପଟେଂ ଦୁଷ୍ଟ ବାଁଧି କପି ସରି ନଚାବୈଂ।
ନିତ କଟୁ କହେଂ କୁବାକ୍ୟ ଧୂର୍ମ, ଖଲ, ଚୋର ବତାବୈ॥
କହୈ ଦ୍ରବ୍ୟ ହିତ କୃପନ ଫିରୈ ନିତ ବେଷ ବନାୟେ।
ତଜୈ ମୌନ ଖଲ କରୈ ୟତନ ନହିଁ ଡଗୈ ଡ଼ିଗାୟେ॥
ବୈଦିକ ଦୈହିକ ପରହିଁ ଦୁଖ, ଭାଗ୍ୟ ସମୁଝି ସବକୁଁ ସହୈ।
ଗୀତ ଗାଇ ସମୁଝାଇ କେ, ବାର ବାର ମନ ତେ କହୈ॥



# ଭିକ୍ଷୁ-ଗୀତ ଆରମ୍ଭ

ନାୟଂ ଜନୋ ମେ ସୁଖଦୁଃଖହେତୁ-
ର୍ନ ଦେବତାତ୍ମା ଗ୍ରହକର୍ମକାଲାଃ ।
ମନଃ ପରଂ କାରଣମାମନନ୍ତି
ସଂସାରଚକ୍ରଂ ପରିବର୍ତ୍ତୟେଦ୍ ଯତ୍ ॥ ★
[ଶ୍ରୀଭା.୧୧ସ୍କ.:୨୩ଅ.-୪୩ଶ୍ଳୋକ]

**ଛପ୍‌ପୟ**

ଦେବୈ ଦୁଖ ସୁଖ କୌନ ଦୈବ ଗତି ତୈ ସବ ହୋବୈ ।
ଅମୁକ ଦେହି ଦୁଖ ସମୁଝି ଅଜ୍ଞ ପଛିତାବୈ ରୋବୈ ॥
ସ୍ୱଜନ, ଦେବଗତ, କାଲ, କରମ କାରନ ସବ ନାହୀ ।
ମନ ହୀ ସୁଖ ଦୁଖ ରଚୈ ଘୁମାବୈ ଜଗ କେ ମାହୀ ॥
ଗୁନ ବୃତ୍ତିନ ଉପଜାଇ ମନ, ତ୍ରିବିଧ କରମ କରବାଇ କେ ।
ଆତ୍ମା ନିତ୍ୟ ନିରୀହ, ପରି, ବଁଧେ ଗୁନକି ମନବାଇ କେ ॥

ଶରୀରକୁ ଯେତେବେଳେ ସୁଖ କି ଦୁଃଖ ହୁଏ ସେତେବେଳେ ଆମେ ଅଧୀର ହୋଇଯାଉ । ଏପରି ସୁଖ ବା ଦୁଃଖ ଯଦି କୌଣସି ମଣିଷଦ୍ୱାରା ଘଟିଥାଏ, ଆମେ ତାକୁ ସ୍ତୁତି କରୁ ବା ନିନ୍ଦା କରୁ । କିନ୍ତୁ ବାସ୍ତବରେ ସୁଖ କ'ଣ ଦୁଃଖ କ'ଣ ତାହା ଆମେ ଅନୁଧ୍ୟାନ କରିବା ଉଚିତ । ଜଣେ ଯାହାକୁ ସୁଖ ମନେକରେ, ଅନ୍ୟ ଜଣେ ତାକୁ ଦୁଃଖ ମନେକରିଥାଏ । ଗୋଟିଏ ଘଟଣା ଜଣକୁ ସୁଖୀ କରୁଥିବା ବେଳେ ତାହା ଅନ୍ୟଜଣକୁ ଦୁଃଖୀ କରିଥାଏ । ଗୋଟିଏ ଘର । ଋଣ କାରଣରୁ ସେହି ଘରଟି ବିକ୍ରୀ ହେବାକୁ ଯାଉଛି । ସେତେବେଳେ କିଣିବା ଲୋକ ସୁଖ ଅନୁଭବ କରୁଥିବା ବେଳେ ବିକିବା ଲୋକ ଦୁଃଖ ଅନୁଭବ କରୁଥାଏ । କୌଣସି ବିରାଗୀ ତ୍ୟାଗୀ ପାଖରେ ଟଙ୍କା ଥଳିଟିଏ ଥୋଇଦେଲେ ସେ ତାହା ଦେଖି କିଛି ବିଛା ବା ସାପକୁ ଦେଖି ସଂକିତ ହେବାଭଳି ଭୟଭୀତ ହୋଇଯାଏ । ସେହି ଥଳିକୁ କୌଣସି କୃପଣ ପାଇଲେ

---


ଅଦୃଷ୍ଟ ମାନି କହେ କଥା । କେ ଅଛି ଦୁଃଖସୁଖଦାତା ॥
ଗ୍ରହ ଦେବତା କାଳଧର୍ମ । ଆତ୍ମା କି ଅବା କେହି ଜନ ॥
ନୁହନ୍ତି ସୁଖ ଦୁଃଖ ଦାତା । ମନଟି ପରମ କରତା ॥
ଜନ୍ମମରଣ ବେନିପଥେ । ଯେ ମନ ଭ୍ରମାଏ ନିରତେ ॥
ଏଣୁ ମନର ଏ ସଂସାର । ସଂସାରୁ ବିଲଗ ଈଶ୍ୱର ॥
[ଭାଗବତ : ଜଗନ୍ନାଥ ଦାସ : ୧୧ ସ୍କନ୍ଧ ୨୪ ଅ]

ଆନନ୍ଦ ବିଭୋର ହୋଇଯାଏ । ଟଙ୍କା ଗୋଟିଏ ବସ୍ତୁ। ଏହା ଯଦି ପ୍ରକୃତରେ ସୁଖର କାରଣ ହୋଇଥାନ୍ତା ତେବେ ସମସ୍ତଙ୍କୁ ଏକାପ୍ରକାର ସୁଖ ଦେଉଥାନ୍ତା । ଏଥିରୁ ଜଣାଯାଉଛି ଯେ ବସ୍ତୁରେ ସୁଖ କି ଦୁଃଖ ନଥାଏ । ମନ ଯାହାକୁ ସୁଖ ବୋଲି ଗ୍ରହଣ କରିଥାଏ ତାହା ସୁଖ ଦିଏ, ଯାହାକୁ ଦୁଃଖ ବୋଲି ମନେକରେ ତାହା ଦୁଃଖ ଦେଇଥାଏ। ଯାହାର ମନ ନିଜ ଅକ୍ତିଆରରେ ଥାଏ ତାକୁ ବାହାରର କୌଣସି ଘଟଣା ନା ସୁଖ ଦିଏ ନା ଦୁଃଖ ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ! ଦୁଷ୍ଟମାନେ କୃପଣ ବ୍ରାହ୍ମଣ ସନ୍ୟାସୀଙ୍କୁ ନାନା ଦୁଃଖ କଷ୍ଟ ଦେଉଥିବା ବେଳେ ସେ ତା' ମନକୁ ବୁଝାଇ ଦେଉଥାଏ । ସେ ନିଜେ ତା' ମନକୁ ପ୍ରଶ୍ନ କରୁଥାଏ ଓ ବିବେକ ବୁଦ୍ଧିଦ୍ୱାରା ସମୁଚିତ ଉତ୍ତର ମାଧ୍ୟମରେ ସମାଧାନ କରି ଦେଉଥାଏ । ସେ ନିଜକୁ ନିଜେ ପଚାରେ– 'ମୋତେ କିଏ ଦୁଃଖ ଦେଉଛି ? ଏହି ଦୁଃଖର କାରଣ କ'ଣ ?'

ସେତେବେଳେ ତା' ମନ ତାକୁ କହେ, 'ଦୁଃଖର କାରଣ ହେଉଛନ୍ତି ଏହି ଘରର ବନ୍ଧୁ-ବାନ୍ଧବ ତଥା ପୁରଜନ ପରିଜନ। ପିଲାମାନେ ଧନ ନ ଛଡ଼ାଇଥିଲେ, ସମ୍ବନ୍ଧୀୟମାନେ ମୋ ସହିତ ଅନ୍ୟାୟ ନ କରିଥିଲେ, ରାଜା ମୋତେ ଦଣ୍ଡ ଦେଇ ନଥିଲେ, ଚୋର ମୋର ଧନ ଚୋରି କରି ନଥିଲେ, ମୋତେ ଦୁଃଖ ହୋଇ ନଥାନ୍ତା ।'

''ସେ ଭାବିଲା, 'ନା, ଏକଥା ଠିକ୍ ନୁହେଁ। ସ୍ୱଜନ, ପୁରଜନ ତଥା ପରଜନ ମୋର ଦୁଃଖର କାରଣ ନୁହଁନ୍ତି। ମୋ ପାଖରେ ଧନ ଥିବାବେଳେ ବି କ'ଣ ସୁଖ ଥିଲା ? ଏବେ ଯାହା ଯାହା ଖାଉଛି ସେତେବେଳେ ଯା ଠାରୁ ଭଲ ଜିନିଷ ତ ଖାଉ ନଥିଲି କି ପିନ୍ଧୁ ନଥିଲି। ଏତିକି କଥା ଯେ, ସେତେବେଳେ ମୋ ପାଖରେ ଧନ ଥିଲା, ଏବେ ନାହିଁ। ଆଉ ଏବେ ଧନ କ'ଣ କୁଆଡ଼େ ସତରେ ପଳାଇ ଯାଇଛି ? ସେତେବେଳେ ମାଟି ଭିତରେ ପୋତି ହୋଇ ରହିଥିଲା, ଏବେ ବି କୌଣସିଠାରେ ପୋତା ହୋଇଥିବ। ପୋତା ହୋଇ ନଥିଲେ ବି ଏହି ପୃଥିବୀ ଉପରେ କୌଣସି ଠାରେ ଥିବ। ସେତେବେଳେ ମୋ ଧନ ବୋଲି ମୋର ମାନସିକ ସନ୍ତୋଷ ଥିଲା । ମୋର ସର୍ବସ୍ୱ ଲୁଣ୍ଠନ ହୋଇଯାଇଛି ବୋଲି ଏବେ ମାନସିକ ଅସନ୍ତୋଷ ହେଉଛି। ଏଥିରୁ ସ୍ପଷ୍ଟ ଜଣାପଡୁଛି ଯେ ସୁଖଦୁଃଖର କାରଣ ହେଉଛି ଏହି ମନ ।'

ମନ କହିଲା, 'ନା ; ଏ କଥା ଠିକ୍ ନୁହେଁ। ତୁମ ଦୁଃଖର କାରଣ ଦେବତାମାନେ। ତୁମେ ସେମାନଙ୍କୁ ଆଦୌ ଆରାଧନା କରିନାହଁ। ସେମାନଙ୍କର ପୂଜା ଆଦିରେ ଆଦୌ ଧନ ଖର୍ଚ୍ଚ କରିନାହଁ। ଏଣୁ ସେମାନେ କୁପିତ ହୋଇ ତୁମର ଧନ ନାଶ କରିଦେଇଛନ୍ତି ।'

ପୁଣି ସେ ମନେ ମନେ ଭାବିଲା, 'ଦେବତାମାନେ ମୋର ବୈରି କାହିଁକି ହେବେ! ଦେବତାମାନେ କାହିଁକି ମୋ ଧନ ନଷ୍ଟ କରନ୍ତେ। ଦେବତାମାନେ ତ ପ୍ରତ୍ୟେକ ମଣିଷଙ୍କର ଇନ୍ଦ୍ରିୟମାନଙ୍କର ଅଧିଷ୍ଠାତୃ ଦେବଙ୍କ ସହିତ ରହିଥାନ୍ତି। ସେମାନେ ଏବେ ବି ମୋ ସହିତ ବିରାଜମାନ କରୁଛନ୍ତି। ଯଦି ସେମାନେ ପ୍ରକୃତରେ କୁପିତ ହୋଇଥାନ୍ତେ ତେବେ ସେମାନେ ଇନ୍ଦ୍ରିୟଙ୍କୁ ଛାଡ଼ି ଚାଲିଯାଇ ଥାଆନ୍ତେ। ପୂର୍ବେ ମୋର ଧନ ନଥିଲା। ଏବେ ବି ମୋର ଧନ ନାହିଁ। ଯାହା 'ଆଦ୍ୟରେ' ଆମର ହୋଇ ନଥାଏ, 'ଅନ୍ତରେ' ଆମର ହୋଇ ରହେନାହିଁ, ତାହା 'ମଧ୍ୟରେ' ଆମର ହୋଇ ରହନ୍ତା କିପରି ! ଭୁଲକ୍ରମେ ମନ ଏହାକୁ ନିଜର ବୋଲି ମାନିନେଇ ଥିଲା । ଏଣୁ ଦୋଷ ହେଉଛି ମନର। ଦେବତାଙ୍କର ନୁହେଁ।'

ଏହା ଜାଣି ମନ କହିଲା, 'ନାହିଁ ହେ ! ଦୋଷ ହେଉଛି ଗ୍ରହମାନଙ୍କର । ଜନ୍ମ ଜାତକରେ ଧନର ସ୍ଥାନ ଦ୍ୱିତୀୟରେ । ଧନ ସ୍ଥାନକୁ ଏପରି କ୍ରୂରଗ୍ରହ ଆସିଗଲେ ଯେ ସେମାନେ ତୁମର ଧନ ନଷ୍ଟ କରିଦେଲେ ।'

ଏହାପରେ ସେ ମନେ ମନେ ଭାବିଲା, 'ଗ୍ରହମାନଙ୍କର ତ ମୁଁ କିଛି ଖରାପ କରିନାହିଁ ଯେ ସେମାନେ ମୋ ଉପରେ କ୍ରୋଧ କରିବେ । ମୋର ଅନିଷ୍ଟ କରିବେ । ମୁଁ ଯେବେ ଯେପରି ଥିଲି ଏବେ ବି ସେହିପରି ଅଛି । ପୂର୍ବେ ଖିଆପିଆ ଯେପରି କରୁଥିଲି, ଏବେ ବି ତ ଖିଆପିଆ କରୁଛି । କେବଳ ଏତିକି ଅସନ୍ତୋଷ ହେଉଛି ଯେ ଏବେ ମୁଁ ଅନ୍ୟର ଅନ୍ନ ଉପରେ ନିର୍ଭର କରୁଛି । ବାସ୍ତବରେ ଦେଖିଲେ, ଅନ୍ନ ତ ସବୁ ଏକ । ମନ ହିଁ ଭେଦବୁଦ୍ଧି ସୃଷ୍ଟି କରିଛି । କହୁଛି, ଏହା ମୋର ଅନ୍ନ, ଏହା ତା'ର ଅନ୍ନ । ସବୁ ଅନ୍ନ ଏକ ବୋଲି ମନ ଯେତେବେଳେ ମାନି ନିଏ, ଆଉ ସୁଖ କି ଦୁଃଖର କୌଣସି କାରଣ ରହେନାହିଁ । ଏଣୁ ଆପଣା-ପର ଏପରି ଭାବନା ସୃଷ୍ଟି କରୁଥିବା ମନ ହେଉଛି ପ୍ରକୃତରେ ଦୋଷୀ ।'

ଏହା ଜାଣି ମନ କହେ, 'ଆରେ ନା ! ଆତ୍ମା ହିଁ ଦୁଃଖର କାରଣ ।''

ଏହାପରେ ସେ ଭାବିଲା, 'ଆତ୍ମା କିପରି ଦୋଷ କଲା ? ଆତ୍ମାର ଏଥିରେ ଯାଏ-ଆସେ କେତେ ? ସେ ତ ସୁଖ-ଦୁଃଖର ଉର୍ଦ୍ଧ୍ୱରେ । ତା'ର ନା ସୁଖ ଥାଏ ନା ଦୁଃଖ । ସେ କାହିଁକି ମୋତେ ଦୁଃଖ ଦେବ ?

ମନ କହିଲା, 'ହଉ, କର୍ମ ଦ୍ୱାରା ତ ସୁଖ-ଦୁଃଖ ମିଳିଥାଏ । ଭଲ କାମ କଲେ ସୁଖ ମିଳେ, ଖରାପ କାମରେ ଦୁଃଖ ମିଳେ । ଏଣୁ ସୁଖ-ଦୁଃଖର ପ୍ରଧାନ କାରଣ ହେଉଛି କର୍ମ ।'

ସେ ଭାବିଲା, 'କର୍ମ ଯଦି ସୁଖ-ଦୁଃଖର କାରଣ ହୋଇଥାଆନ୍ତା ତେବେ ଗୋଟିଏ କର୍ମରେ ଗୋଟିଏ ମାତ୍ର ଫଳ ମିଳନ୍ତା । ଗୋଟିଏ କାମ କରୁଥିବା ଦୁଇଜଣ ବ୍ୟକ୍ତିଙ୍କୁ ଭିନ୍ନ ଭିନ୍ନ ସୁଖ-ଦୁଃଖ ହୋଇଥାଏ । ଯେପରି ଭୋଜନ ଏକା ଭଳି ହୋଇଥାଏ । ଜଣଙ୍କୁ ଏହା ଅତି ସୁଖ ଦେଉଥିବା ବେଳେ ଅନ୍ୟ ଜଣଙ୍କୁ ଅତି ଦୁଃଖ । ଭୋଗ୍ୟ ବସ୍ତୁ ଏକ । ଏହାକୁ ଭୋଗରୂପୀ କର୍ମ ଦ୍ୱାରା ଜଣଙ୍କୁ ଆନନ୍ଦ ମିଳୁଥିବା ବେଳେ ଅନ୍ୟ ଜଣଙ୍କୁ ଅତ୍ୟନ୍ତ କ୍ଲେଶ ମିଳେ । ଏଥିରୁ ଜଣାପଡୁଛି ଯେ କର୍ମ ସୁଖ-ଦୁଃଖ ହେତୁ ନୁହେଁ । ସୁଖ-ଦୁଃଖର ହେତୁ ହେଉଛି ମନ । ମନର ଭାବନା ଯେପରି ହେବ ତାକୁ ସେହିଭଳି ସୁଖ କି ଦୁଃଖ ହେବ ।'

ଏହା ଜାଣି ମନ କହିଲା, 'ସୁଖ-ଦୁଃଖର କାରଣ ହେଉଛି କାଳ । ଶୀତ ଦିନରେ ସମସ୍ତଙ୍କୁ ଶୀତ ହୁଏ । ଗରମ ଦିନରେ ଗରମ । ଯୁବାବସ୍ଥାରେ ସମସ୍ତେ ମଦମସ୍ତ ଥାଆନ୍ତି ।'

ଏହା ବୁଝି ସେ ଭାବିଲା, 'କାଳ ଯଦି ସୁଖ-ଦୁଃଖର କାରଣ ହୋଇଥାନ୍ତା, ତେବେ ସୁଖ କାଳରେ ସମସ୍ତେ ସୁଖୀ ରହିବା ଉଚିତ ଥିଲା, ଦୁଃଖ ସମୟରେ ସମସ୍ତଙ୍କୁ ଦୁଃଖ ରହିଥିବା ଉଚିତ, ଥିଲା, ଦୁଃଖ ସମୟରେ ସମସ୍ତଙ୍କୁ ଦୁଃଖ ହେବା ଅନିବାର୍ଯ୍ୟ ହୋଇଥାନ୍ତା । ହେଲେ ଏପରି ତ ଦେଖାଯାଉ ନାହିଁ । ଏକ ସମୟରେ କେତେକ ସୁଖୀ ହେଉଥିଲେ, ଆଉ କେତେକ ଦୁଃଖୀ ଥାଆନ୍ତି । ଶୀତ ଆସିଲେ କେତକଙ୍କୁ ଭଲ ଲାଗେ ତ ଆଉ କେତକଙ୍କୁ ଖରାପ ଲାଗେ । ଏହି କଥାରୁ ଜଣା ଯାଉଛି ଯେ, ସୁଖ ଦୁଃଖର କାରଣ କାଳ ନୁହେଁ,

ମନ। ମନ ଯେଉଁ ସମୟରେ ଯେଉଁ ଘଟଣାରେ ସୁଖ ଅନୁଭବ କରେ ତାହା ହେଉଛି ସୁଖର ସମୟ; ଆଉ ଦୁଃଖ ଅନୁଭବ କରିବା ସମୟ ଦୁଃଖର ସମୟ ବୋଲି କୁହାଯାଏ। ଏକମାତ୍ର ମନ ଦ୍ୱାରା ହିଁ ଏହି ସଂସାର ଚକ୍ର ଚାଲିଛି।'

ମନ କହିଲା, ''ଆରେ ବାଃ ! ମୋ ଯୋଗୁ ଏହି ସଂସାର ଚକ୍ର ଚାଲିଛି କିପରି ?''

ସେ ମନକୁ କହିଲା, ''ଦେଖ ! ସମୁଦ୍ରରେ ଅନବରତ ଢେଉ (ଉର୍ମି) ଉଠେ। ସେଗୁଡ଼ିକ ମଧ୍ୟରୁ କେତେକ ଛୋଟ, କେତେକ ବଡ଼, କେତେକ ଉଚ୍ଚା, କେତେକ ନିଚା। ଠିକ୍ ସେହିଭଳି ତୋର ବି ଢେଉ (ଉର୍ମି) ଉଠେ। ତୋର, ମନରେ ଯେତେବେଳେ ସାତ୍ତ୍ୱିକ ଉର୍ମି ଉଠେ, ସେତେବେଳେ ସାତ୍ତ୍ୱିକ କର୍ମ ହୁଏ, ରାଜସ ଉର୍ମି ଉଠିଲେ ରାଜସ କର୍ମ ହୁଏ, ଆଉ ତାମସ ଉର୍ମି ଉଠିଲେ ତାମସ କର୍ମ ହୋଇଥାଏ। ଗୁଣମାନଙ୍କର ବୃତ୍ତି ତ ତୁ ହିଁ ଭାଇ ଉତ୍ପନ୍ନ କରିଥାଉ। ସାଧାରଣତଃ ଲୋକମାନେ କହିଥାନ୍ତି— 'ସେ ମୋତେ ମାଇଲା, ଅମୁକ ମୋତେ ସମ୍ମାନ କଲା।' ସମ୍ମାନ ଓ ଅପମାନ କରିବାବାଲା ବ୍ୟକ୍ତି ନୁହନ୍ତି। ମନରେ ସାତ୍ତ୍ୱିକ ବୃତ୍ତି ଉତ୍ପନ୍ନ ହୋଇଗଲେ ସମ୍ମାନ କରିଦିଏ। ରାଜସ ତାମସ ଉତ୍ପନ୍ନ ହେଲେ ଅପମାନ କରିଦିଏ। ଏ ସମସ୍ତର କାରଣ ହେଉଛି ମନ। ଅର୍ଥାତ୍ ତୁ। ତୋର ବଳ ଅମାପ, ଅନନ୍ତ, ତାକୁ କେହି କଳନା କରିପାରନ୍ତି ନାହିଁ। ତୋର ବେଗ ମଧ୍ୟ ଅତି ପ୍ରଖର, ଅପାର; ତୋ ବେଗ ଆଗରେ ପବନ, ହନୁମାନ୍ ତଥା ଗରୁଡ଼ ଆଦି ମହାବେଗଶାଳୀ ବି ହାର ମାନିଥାନ୍ତି। ସେମାନେ ଚେଷ୍ଟାକରି ସୁଦ୍ଧା ତୋର ସମକକ୍ଷ ହୋଇପାରନ୍ତି ନାହିଁ। ଏଣୁ ଜୀବର କର୍ମାନୁସାର ହେଉଥିବା ବିବିଧ ଗତିର ସମସ୍ତ ଉତ୍ତର ଦାୟିତ୍ୱ ତୋ ଉପରେ ଥାଏ।''

ମନ କହିଲା, ''ଆରେ ଭାଇ ମୁଁ ତ ଜଡ଼। ଜଡ଼ ପୁଣି କି କାର୍ଯ୍ୟ କରିପାରେ ?''

ସେହି ବ୍ରାହ୍ମଣ ଭିକ୍ଷୁ ତା' ମନକୁ କହିଲା, ''କାର୍ଯ୍ୟ ତ ସବୁ ଜଡ଼ ଦ୍ୱାରା ହିଁ ହୋଇଥାଏ। ଚୈତନ୍ୟ ତ କେବଳ ସାକ୍ଷୀ ରହିଥାଏ। ବୈଜ୍ଞାନିକ ପ୍ରୟୋଗଶାଳାରେ ଜଣେ ବୈଜ୍ଞାନିକ ବସିଛି। ସେ ବିଦ୍ୟୁତ୍ ଦ୍ୱାରା ଗୋଟିଏ ଯନ୍ତ୍ର ଆବିଷ୍କାର କଲା। ଗୋଟିଏ ଜଡ଼ ଯନ୍ତ୍ର ରୂପେ ତିଆରି ହୋଇଗଲା। ବୈଜ୍ଞାନିକ ନିଜର ପ୍ରୟୋଗଶାଳାରେ ଚୁପ୍‌ଚାପ୍ ବସିଥାଏ। ଏବେ ସେହି ଜଡ଼ ଯନ୍ତ୍ର ସ୍ୱୟଂ ଯାଇ ଶତ୍ରୁ ସେନା ଉପରେ ଗୁଳି ବର୍ଷା କରି ଫେରିଆସେ। ବୈଜ୍ଞାନିକ ତ କେବଳ ସାକ୍ଷୀ ରୂପରେ ବସିଥାଏ। କାର୍ଯ୍ୟ ତ କରୁଥାଏ ସେହି ଜଡ଼ ଯନ୍ତ୍ର। ଜଣେ ରାଜକର୍ମଚାରୀ, ସେ ମାସକୁ ଦଶଟଙ୍କା ଦରମା ପାଏ। ହେଲେ ବଡ଼ ବଡ଼ ଲକ୍ଷପତି, କୋଟି ପତିଙ୍କୁ ଆଖି ଦେଖାଇ ଦିଏ। ଡରାଇ ଦିଏ। ସେମାନଙ୍କୁ ଧରିନିଏ। ଯଦିଓ ତା' ନିଜର ଶକ୍ତି ନାହିଁ, ହେଲେ ରାଜାର ଶକ୍ତିରେ ସେ ଶକ୍ତିଶାଳୀ ହୋଇ ବଡ଼ ବଡ଼ କାମ କରି ନିଏ। ଏହିଭଳି, ତୁ ଯଦିଓ ଜଡ଼, କିନ୍ତୁ ତୋ ସହିତ ନିୟନ୍ତା ରୂପରେ ଆତ୍ମା ବର୍ତ୍ତମାନ ଅଛି। ଯଦ୍ୟପି ଆତ୍ମା ନିଷ୍କ୍ରିୟ, ନିରୀହ ତଥା ସାକ୍ଷୀମାତ୍ର, ତାହା ବିଦ୍ୟାଶକ୍ତି ପ୍ରଧାନ, ଅର୍ଥାତ୍ ହିରଣ୍ୟମୟ ଆଉ ମୋ ଭଳି ଜୀବର ପ୍ରକୃତ ସଖା। ସେ କିଛି ଧରେ ନାହିଁ କି କରେ ନାହିଁ। ଚୁପ୍ ଚାପ୍ ସାକ୍ଷୀ ରୂପରେ ସ୍ଥିତ ଥାଏ। ତାର ସ୍ଥିତି ମାତ୍ରରେ ହିଁ ସବୁକାର୍ଯ୍ୟ ହେଉଅଛି। ଯେପରି ଗୋଟିଏ ଭବନରେ ଦୀପଟିଏ ଜଳୁଛି। ବିଦ୍ୟାର୍ଥୀ ପଢୁଛି, ଭୋଗୀ ସେହି ଆଲୁଅରେ ଭୋଗ ଉପଭୋଗ କରୁଛି। ପୁଣ୍ୟାତ୍ମା ସେହି ଆଲୋକରେ ପୁରାଣ ପଢ଼ି ପୁଣ୍ୟ ଅର୍ଜନ କରୁଛି। ଦୀପ ପାପୀକୁ ପାପ କରିବାକୁ ମନାକରୁନାହିଁ କି ପୁଣ୍ୟାତ୍ମାକୁ ପୁଣ୍ୟ କରିବା ପାଇଁ ପ୍ରୋତ୍ସାହିତ କରୁନାହିଁ। ସେ ସାକ୍ଷୀରୂପରେ ସମସ୍ତଙ୍କୁ ଆଲୋକ ଦେଉଛି। ତା'ରି ଆଲୋକରେ

ସବୁ କାମ ହେଉଛି। ସେହିଭଳି ଆତ୍ମାର ପ୍ରକାଶ ହେତୁ ହିଁ ଜୀବାତ୍ମା ମନର ଦ୍ୟୋତକ ତୋତେ ମନକୁ ଗ୍ରହଣ କରି ସାତ୍ତ୍ୱିକ, ରାଜସ ଆଉ ତାମସ କର୍ମ କରୁଛି। ନାନା ପ୍ରକାର ଭୋଗକୁ ଭୋଗ କରୁଛି। ଆଉ ଶେଷରେ କର୍ମକୁ ନିଜେ କରିଥିବା ମାନି ତହିଁରେ ଆସକ୍ତ ଭଳି ହୋଇ ବାନ୍ଧି ହୋଇଯାଉଛି। ଗୋଟିଏ ଯୋନିରୁ ଆଉ ଗୋଟିଏ ଏପରି ଘୂରିବାରେ ଲାଗିଛି।''

ମନ କହିଲା, ''ଜୀବ ତ କେବଳ ଖରାପ କର୍ମ କରେ ନାହିଁ। ସେ ଶୁଭ କର୍ମ ବି କରେ। ଏହାଦ୍ୱାରା ତା'ର ଚୌରାସୀ ଚକ୍ର ଘୂରିବା ସାରିପାରେ।''

ଭିକ୍ଷୁ କହିଲା, ''ଯେତେ ସବୁ ଦାନ, ଧର୍ମ, ଯମ, ନିୟମ ବେଦାଧ୍ୟୟନ ତଥା ସ୍ୱଧର୍ମ ପାଳନ ଆଦି ଶୁଭ କର୍ମ ଅଛି, ସେ ସମସ୍ତର ଏକମାତ୍ର ଲକ୍ଷ୍ୟ ତୋତେ ନିରୋଧ କରିବା। ସମସ୍ତ କର୍ମ ମନକୁ ବଶୀଭୂତ କରିବା ପାଇଁ କରାଯାଇଥାଏ। ତୋର ଯେଉଁ ବିଛାଇ ହୋଇଥିବା ବିବିଧ ବୃତ୍ତି ଅଛି ସେ ସମସ୍ତକୁ ନିରୋଧ କରିବା ପାଇଁ ଅଷ୍ଟାଙ୍ଗ ଯୋଗ ଆଦି ସାଧନ କରାଯାଏ। ତୁ ଯାହାର ବଶୀଭୂତ ହୋଇଯାଉ, ତା'ର ସମସ୍ତ ସାଧନ ସଫଳ ହୋଇଯାଏ। ତୁ ଯାହାର ବଶୀଭୂତ ହୋଇ ନଥାଉ, ତାର ସମସ୍ତ ସାଧନ ବ୍ୟର୍ଥ ହୋଇଯାଏ। ଯେଉଁମାନଙ୍କର ମନ ଶାନ୍ତ ତଥା ସମାହିତ, ସେମାନଙ୍କର ବିବିଧ ସାଧନର କି ଆବଶ୍ୟକତା ଅଛି? ଦାନ, ଧର୍ମ, ଯମ, ନିୟମାଦିର କି ପ୍ରୟୋଜନ? ଆଉ ଯିଏ ସବୁବେଳେ ଦାନ, ଧର୍ମ, ଯମ, ନିୟମାଦି ପୁଣ୍ୟ ତଥା ଅନ୍ୟ ଶୁଭ କର୍ମ କରୁଥାଏ, କିନ୍ତୁ ମନ ଶାନ୍ତ ସମାହିତ ହେଉ ନଥାଏ, ଚଞ୍ଚଳ ରହିଥାଏ, ତେବେ ତା'ର ସାଧନ କରିବାରେ କି ଲାଭ? ଯିଏ ଉପର ଦେଖାଣିଆ ଶୁଭକର୍ମ କରୁଥାଏ, କିନ୍ତୁ ତା'ର ମନ ବିଷୟ ବାସନାରେ ମଜ୍ଜି ରହିଥାଏ, ଆଳସ୍ୟ ପ୍ରମାଦରେ ସମୟ ବିତାଉ ଥାଏ ତା'ର ସମସ୍ତ ଶୁଭ କର୍ମ ବ୍ୟର୍ଥ ହୋଇଥାଏ, ସେ ସମସ୍ତ 'କେବଳ ଲୋକଦେଖାଣିଆ ଅଭିନୟ ହୋଇଥାଏ।

ମନ କହିଲା, ''ବିଷୟ ଜ୍ଞାନ ଇନ୍ଦ୍ରିୟମାନେ କରିଥାନ୍ତି, ଆଉ କର୍ମ କରେ କର୍ମେନ୍ଦ୍ରିୟ। ତୁମେ ଇନ୍ଦ୍ରିୟଙ୍କୁ ଦୋଷ ନ ଦେଇ, ମୋତେ ସବୁ କର୍ମର ଦୋଷୀ କରୁଛ କାହିଁକି?''

ଭିକ୍ଷୁ କହିଲା, ''ଦେଖ! ଜଣକର ପଶୁଟିଏ ଅଛି। ସେହି ପଶୁ ଅନ୍ୟ ଜଣଙ୍କର କ୍ଷେତରେ ପଶି ଫସଲ ନଷ୍ଟ କଲା। ତେବେ ବୁଦ୍ଧିମାନ ଲୋକମାନେ ପଶୁକୁ ଦୋଷୀ କରନ୍ତି ନାହିଁ; ତା' ମାଲିକକୁ ଦୋଷୀ କହିଥାନ୍ତି। ଜଣଙ୍କର ଭୃତ୍ୟ କାହାର ଅପରାଧ କଲା। ତେବେ ଉତ୍ତରଦାୟିତ୍ୱ ସେହି ଭୃତ୍ୟର ମାଲିକକୁ କରାଯାଇ ଥାଏ। ଜଣେ ଆଉ ଜଣଙ୍କ ବାଣ(ଶର)ରେ ମରିଗଲା। ତେବେ ଦୋଷ ବାଣର ହୋଇ ନଥାଏ, ହୋଇଥାଏ ବାଣ ପ୍ରୟୋଗ କରିଥିବା ଲୋକର। ଠିକ୍ ଏହିଭଳି, ଯେ ପର୍ଯ୍ୟନ୍ତ ତୁମେ (ମନ) ପ୍ରେରଣା ଦେଇ ନ ଥାଅ ସେ ପର୍ଯ୍ୟନ୍ତ ଇନ୍ଦ୍ରିୟମାନେ କିଛି କରନ୍ତି ନାହିଁ। ଇନ୍ଦ୍ରିୟମାନେ ସମସ୍ତେ ତୁମର ଅଧୀନରେ ଥାଆନ୍ତି। ଆଖି ଫିଟାଇବ, ଦୃଶ୍ୟ ସମ୍ମୁଖରେ ଥିବ, କିନ୍ତୁ ଯେ ପର୍ଯ୍ୟନ୍ତ ତୁମେ (ମନ) ନଥିବ ଆଖି ଦେଖି ପାରେ ନାହିଁ, ଘ୍ରାଣ ଶୁଙ୍ଘି ପାରେ ନାହିଁ, ଆଉ ଚର୍ମ ତୁମ (ମନ)ର ବିନା ସ୍ପର୍ଶ ଅନୁଭବ କରିପାରେ ନାହିଁ। ଉପସ୍ଥ ତଥା ଗୁହ୍ୟ ମଳମୂତ୍ର ତ୍ୟାଗ କରି ପାରେ ନାହିଁ। ଏମାନେ ତୁମର ବଶୀଭୂତ ଥାଆନ୍ତି। ତୁମେ ଏମାନଙ୍କ ଭିତରୁ କାହାରି ବି ଅଧୀନରେ ନ ଥାଅ। ତୁମେ ସମସ୍ତଙ୍କଠାରୁ ବଳବାନ୍। ତୁମେ ସମସ୍ତଙ୍କୁ ଜିତି ଯାଇଛ। ତୁମକୁ କିନ୍ତୁ ଜିତିବା ଅତ୍ୟନ୍ତ କଠିନ କଥା।''

ମନ କହିଲା, ''ଅନେକ ଲୋକ ତ ମୋତେ ବଶୀଭୂତ କରିଦିଅନ୍ତି।''

ଭିକ୍ଷୁ କହିଲା, ''ଆହେ ମନ ଦେବତା ! ତୁମକୁ ବଶୀଭୂତ କରିବା ଏଡ଼େ ସହଜ କାମ ନୁହେଁ। ଅନେକ ଦେବତା ଚଳୁଏ ପାଣିରେ, କେତୋଟି ତୁଳସୀ ପତ୍ରରେ ପ୍ରସନ୍ନ ହୋଇଯାଆନ୍ତି, ଆଉ କେତେକ ତ ଚାରି ଛ'ଟା ବେଲପତ୍ର ଓ ପାଣିରେ ପ୍ରସନ୍ନ ହୋଇ ଯାଆନ୍ତି ; ହେଲେ ତୁମେ। ତୁମ କଥା କ'ଣ କହିବା, ତୁମେ ଅତି ଭୟଙ୍କର। ସଂସାରର ଶ୍ରେଷ୍ଠ ବଳବାନ୍ ଠାରୁ ବି ତୁମେ ଅଧିକ ବଳବାନ୍। ତୁମକୁ ବଶୀଭୂତ କରିଦେବା ଅର୍ଥ ଦେବତାଙ୍କର ଦେବତା ହୋଇଯିବା, ସବୁଠାରୁ ବଡ଼ ଜିତେନ୍ଦ୍ରିୟ ହୋଇଯିବା, ବଡ଼ ବଡ଼ ଦେବତା ଭୟଙ୍କର ଅସୁରମାନଙ୍କୁ ଜିତି ପାରନ୍ତି ମାତ୍ର ସେମାନେ ବି ତୁମ (ମନ) ସମ୍ମୁଖରେ ଅବନତ ମସ୍ତକ ହୋଇଯାଇ ଥାଆନ୍ତି। ତୁମେ ଏପରି ଜଣେ ଶତ୍ରୁ ଯାହାକୁ ସଂସାରରେ କେହି ଜିତି ପାରନ୍ତି ନାହିଁ।''

ମନ କହିଲା, ''ମୋତେ ତୁମେ କାହିଁକି ଏଡ଼େ ପ୍ରବଳ ଶତ୍ରୁ ବୋଲି କହୁଛ ? ମୁଁ ତ ଏକାକୀ ଥାଏ। ସଂସାରରେ ଅନେକ ବଡ଼ ବଡ଼ ଶତ୍ରୁ ଅଛନ୍ତି, ଯେଉଁମାନଙ୍କ ପାଖରେ କୋଟି କୋଟି ସଶସ୍ତ୍ର ସୈନିକ ଅଛନ୍ତି। ସେପରି ଶତ୍ରୁଙ୍କୁ ଜୟକର।''

ସେହି ଭିକ୍ଷୁ କହିଲା, ''ହେ ମନ ଦେବତା ! ସଂସାରରେ ଆପଣଙ୍କଠାରୁ ପ୍ରବଳ ଶତ୍ରୁ ଆଉ କେହି ନାହାନ୍ତି। ଆପଣ ଯେଉଁ ପରାକ୍ରମୀ ଶତ୍ରୁଙ୍କ କଥା କହୁଛନ୍ତି ସେମାନଙ୍କୁ ଜିତି ହୋଇପାରେ, କିନ୍ତୁ ଆପଣଙ୍କୁ ନୁହେଁ। ଆପଣ ଦୁର୍ଜୟ। ଆପଣଙ୍କ ପ୍ରବଳ ବେଗକୁ କିଏ ସମ୍ମୁଖିନ ହୋଇପାରେ ! ଆପଣଙ୍କର ବେଗ ତ ଅସହ୍ୟ। ଏହି ସଂସାରରେ ସେହି ଲୋକମାନେ ଅତ୍ୟନ୍ତ ମୂର୍ଖ ଯେଉଁମାନେ ସବୁଠାରୁ ପ୍ରବଳ ଶତ୍ରୁ ଆପଣଙ୍କୁ (ମନକୁ) ନ ଜିତି ଅନ୍ୟ ଲୋକଙ୍କ ସହିତ ଯୁଦ୍ଧ କରନ୍ତି। ଯିଏ ଆପଣଙ୍କୁ (ମନକୁ) ଜିତିଯାଏ ସେ ସଂସାର ଜୟ କରିଥାଏ। ଯିଏ ଆପଣଙ୍କୁ ଜିତି ନଥାଏ, ସେ ତ୍ରିଭୁବନର ସ୍ୱାମୀ ହୋଇଥିଲେ ବି ପରାଜିତ ରହିଥାଏ। ସଂସାରରେ ଆଉ କେହି ଶତ୍ରୁ ନଥାନ୍ତି, ନା ମିତ୍ର, ନା ଉଦାସୀନ। ସମସ୍ତଙ୍କ ମଧ୍ୟରେ ଭେଦଭାବ ଆପଣ ହିଁ କରୁଥାନ୍ତି। ଯାହାକୁ ଶତ୍ରୁ ମନେକରନ୍ତି ସେ ଶତ୍ରୁ ହୋଇଯାଏ। ଯାହାକୁ ଉଦାସୀନ ମିତ୍ର ମନେ କରନ୍ତି ସେ ଉଦାସୀନ ମିତ୍ର ହୋଇଯାଏ। ଯେପରି ଛୋଟ ଛୋଟ ପିଲାମାନେ ଓଦାମାଟିରେ ହାତୀ କରନ୍ତି, ପୁଣି ପରକ୍ଷଣରେ ତାକୁ ଚକଟି ଘୋଡ଼ା, ଓଟ ଆଦି କରନ୍ତି– ବାସ୍ତବରେ ନା ମାଟିର ହାତୀ ଅଛି, ନା ଘୋଡ଼ା, ନା ଓଟ ନା ଅନ୍ୟ କିଛି– ସେ ସବୁ ତ ବାଳକର କଳ୍ପନା ମାତ୍ର। ସେହିଭଳି ସଂସାରରେ କେହି ଶତ୍ରୁ ଥାଏ, ନା ମିତ୍ର; ନା ହାର, ନା ଜିତ। ମନ ହାରିଲେ ହାର ହେଲା ଆଉ ମନ ଜିତିଲେ ଜିତା ହୁଏ।

''ଅନ୍ଧ ବୁଦ୍ଧିଯୁକ୍ତ ଲୋକମାନେ ଏହି ମନ ମାତ୍ର ଦେହରେ 'ଏହା ମୁଁ' 'ଏହା ମୋହର'– ଏପରି ଅହଂତା, ମମତା କରି ଥାଆନ୍ତି, ଆଉ ଏଥିଯୋଗୁ ନାନା କ୍ଲେଶ ପାଇଥାଆନ୍ତି। ଏହି ମିଥ୍ୟା ଭ୍ରମ ହେତୁ ଅନନ୍ତ ଅଜ୍ଞାନାନ୍ଧକାରରେ ଏଣେ ତେଣେ ଇତସ୍ତତଃ ହେଉଥାଆନ୍ତି। ଚୌରାଶୀ ଯୋନି-ଚକ୍ରରେ ପଡ଼ି ଘାଣ୍ଟି ହେଉଥାଆନ୍ତି।''

ମନ କହିଲା, ''ନାଇଁ ଭାଇ ! ମୁଁ କାହା ସହିତ ଶତ୍ରୁତା କରେ ନାହିଁ। ଶତ୍ରୁ ତ ବାହାରେ ଥାଆନ୍ତି। ଅନ୍ୟର ପ୍ରିୟ ଜିନିଷ ଯଦି ଆମେ ନେବାକୁ ଚେଷ୍ଟା କରିବା ତେବେ ଆମେ ତା'ର ଶତ୍ରୁ ହେଉ। ଅନ୍ୟର ଘର, କ୍ଷେତ, ଧାନ, ସ୍ତ୍ରୀ ଅଥବା ଅନ୍ୟ କୌଣସି

ଭୋଗ୍ୟ ପଦାର୍ଥକୁ ତୁମେ ଯଦି ମନ କରିବ ତେବେ ସେଗୁଡ଼ିକର ପୂର୍ବସ୍ୱାମୀ ତୁମର ଶତ୍ରୁତା କରିବେ।''

ଭଗବାନ ଶ୍ରୀ କୃଷ୍ଣଚନ୍ଦ୍ର ଉଦ୍ଧବଙ୍କୁ କହୁଛନ୍ତି– ''ହେ ଉଦ୍ଧବ! ମନର ଏପରି ତର୍କ ଶୁଣି ସେହି ବ୍ରାହ୍ମଣ ଭିକ୍ଷୁ ହସିବାରେ ଲାଗିଲା। ସେ ମନକୁ ବୁଝାଇଲା ଯେ କୌଣସି ବ୍ୟକ୍ତି କେତେବେଳେ ହେଲେ କାହାର ଶତ୍ରୁ ହୋଇପାରେ ନାହିଁ। ସେ ମନକୁ ଯେଉଁ ଭଳି ବୁଝାଇଲା, ତାହା ତୁମକୁ କହୁଛି, ଶୁଣ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ! ଆପଣମାନେ ଏହି ପୁଣ୍ୟ ପ୍ରସଙ୍ଗକୁ ପ୍ରେମପୂର୍ବକ ଶ୍ରବଣ କରନ୍ତୁ।''

### ଛପ୍ପୟ

ଦାନ, ଧରମ, ଯମ, ନିୟମ, ବେଦ ପଢ଼ିବୋ ବ୍ରତ ଧାରନ।
ବରନାଶ୍ରମ ଶୁଭକରମ ସକଲ ମନ ବଶ କେ କାରନ॥
ଯଦି ମନ ବଶ ନହିଁ ଭୟୋ ନ ଫିରି ଆବଶ୍ୟକ ସାଧନ।
ହୈ ସାଧନ ସବ ବ୍ୟର୍ଥ ହୋହିଁ ନହିଁ ବଶ ଜିନି ତୈ ମନ॥
ଯହ ମନ ଅତି ବଲବାନ ରିପୁ, ସକଲ କରନ ପ୍ରେରକ ପ୍ରବଲ।
ଜାକେ ବଶମହିଁ ସବ ରହୈ, କରହିଁ ଜାହି ବଶ ନର ବିରଲ॥



# ଦେହ ଦେହକୁ ଦୁଃଖ ଦିଏନାହିଁ

ଜନସ୍ତୁ ହେତୁଃ ସୁଖଦୁଃଖୟୋଶ୍ଚେଦ୍
କିମାତ୍ମନଶ୍ଚାତ୍ର ହି ଭୌମୟୋସ୍ତଦ୍।
ଜିହ୍ୱାଂ କ୍ୱଚିତ୍‌ସଂଦଶତି ସ୍ୱଦଦ୍‌ଭି-
ସ୍ତଦ୍‌ବେଦନାୟାଂ କତମାୟ କୁପ୍ୟେତ୍॥ ★

[ଶ୍ରୀଭା.୧୧ସ୍କ.୨୩ଅ.୫୧ ଶ୍ଳୋକ]

---



ମାୟା ସଂସାରେ ଜ୍ଞାନହାରି । ଜୀବକୁ ଜୀବ ହିଂସାକରି ॥
ସ୍ୱଭାବେ ଜୀବ ନିର୍ବିକାର । ଦୋଷ ଅଦୋଷ ନାହିଁ ତାର ॥
ଆପଣା ହସ୍ତେ ଜିହ୍ୱା ଛେଦି । କେ ତାର ଅଛି ପ୍ରତିବାଦୀ ॥
ଦେବତା ବଶେ ସର୍ବଭୂତେ । ଇନ୍ଦ୍ରିୟ ଅଭେଦେ ନିଶ୍ଚିତେ ॥
କୋପଇ ଏକ ଅଙ୍ଗ ଥାଇ । ଆରକ ଅଙ୍ଗେ ପ୍ରହରଇ ॥
ଏ ଦୁଃଖ ସୁଖ ବିଚାରିଲେ । ଲାଗଇ ନାହିଁ ଆତ୍ମାତୁଲେ ॥

[ଭାଗବତ: ଜଗନ୍ନାଥ ଦାସ: ୧୧ସ୍କନ୍ଧ ୨୪ଅ]

## ଛପ୍ପୟ

ଅଜ ନ ଜୀତୈ ତାହି ବିଜୟ ହିତ ଇତ ଉତ ଅଟକୈ ।
ବିନୁ ମନ ଜୀତେ ପୁରୁଷ ବିବିଧ ଯୋନିନି ମହଁ ଭଟକୈ ॥
ଯଦି ସୁଖ ଦୁଃଖ କୋ ହେତୁ ମନୁଜ କୁଁ ହୀ· ତୁମ ମାନୋ ।
ଦେହ ପରସ୍ପର ଲଡ଼ୈ ଆତମା ନିଷ୍କ୍ରିୟ ଜାନୋ ॥
ସୋଚୋ, ଯଦି ନିଜ ଦାଁତ ତେଁ, କଟେ ଜୀଭ ଭୋଜନ ସମୟ ।
କରୌ କ୍ରୋଧ ଫିରି କୌନ ପୈ, କୌନ କରୈ ଅନୁନୟ ବିନୟ ॥

ଯେତେ ରାଗ, ଦ୍ୱେଷ, ସୁଖ, ଦୁଃଖ ଆଦିର ଅନୁଭୂତ ହେଉଥାଏ, ତାହା ସବୁ ହେଉଥାଏ ଭ୍ରମବଶତଃ । ଜଣେ ଲୋକ ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ ଚାଦର ଘୋଡ଼ାଇ ହୋଇଛି । ତା' ଚାଦରରେ ନିଆଁ ଲାଗିଗଲେ ସେ ଚିତ୍କାର କରେ– 'ମୋତେ ନିଆଁ ଲାଗିଯାଇଛି, ମୁଁ ପୋଡ଼ିଗଲି, ପୋଡ଼ିଗଲି ।' ପ୍ରକୃତରେ କ'ଣ ଲୋକଟି ପୋଡ଼ିଯାଉଥାଏ ? ଜଳୁଥାଏ ତା' ଚାଦର । ଚାଦରକୁ ନିଜ ଶରୀରଠାରୁ ପୃଥକ୍ ବୋଲି ଜାଣି ଯଦି ଫୋପାଡ଼ି ଦିଏ, ତେବେ ତାକୁ କିଛି କଷ୍ଟ ଜଣାପଡ଼େ ନାହିଁ । କିନ୍ତୁ ସେ କ'ଣ କରିଥାଏ ଭ୍ରମବଶତଃ ଚାଦରକୁ ତା' ଶରୀରରେ ଏକାତ୍ମଭାବରେ ସ୍ଥାପିତ କରିଦେଇଥାଏ । ଚାଦରକୁ ତା'ର ଆତ୍ମା ବୋଲି ଧରିନେଇଥାଏ । ହାଡ଼ ଚମର ଶରୀର । ଚାଦର ସୂତାରେ ତଆରି । ଚାଦର ହେଉଛି ନିର୍ଜୀବ ବସ୍ତୁ ଆଉ ଶରୀର ହେଉଛି ସଜୀବ । ଶରୀର ହେଉଛି ଆଚ୍ଛାଦ୍ୟ, ଆଉ ଚାଦର ହେଉଛି ଆଚ୍ଛାଦନ । ଏହାପରେ ବି ସେ ଚାଦରକୁ ତା' ଶରୀରରେ ଅତି ଜୋରରେ ଚାପିଧରି ଥାଏ ଓ ଦୁଃଖ ଅନୁଭବ କରେ । ଚାଦର ଶରୀର ଠାରୁ ଭିନ୍ନ ଆଉ ଶରୀର ସହିତ ଏହାର କୌଣସି ସମ୍ବନ୍ଧ ନାହିଁ, ଯାକୁ କାଢ଼ି ଫୋପାଡ଼ି ଦେବା ଉଚିତ– ଏପରି ଜାଣିଗଲା ପରେ ଅଗ୍ନିରେ ସେ ଆଉ ଦାହ ହୁଏ ନାହିଁ । ଠିକ୍ ଏହିଭଳି ଜୀବ ଯେ ପର୍ଯ୍ୟନ୍ତ ଆତ୍ମା ଆଉ ଶରୀରକୁ ଅଭିନ୍ନ ଭାବି ଅହଂତା ମମତାର ରଜ୍ଜୁରେ ବାନ୍ଧିରହିଥାଏ, ସେ ପର୍ଯ୍ୟନ୍ତ ଅନନ୍ତ ଅଜ୍ଞାନାନ୍ଧାକାରରେ ଏପଟ ସେପଟ ଦୁଃଖୀ ହୋଇ ହିନସ୍ତା ହୋଇଥାଏ । ଆତ୍ମା ନିରୀହ, ନିଷ୍କ୍ରିୟ, ନିର୍ଲେପ, ନିରଞ୍ଜନ, ନିଷ୍କଳ, ନିତ୍ୟ ତଥା ନିର୍ଦ୍ୱନ୍ଦ୍ୱ । ଦେହ ସହିତ ତା'ର କୌଣସି ସମ୍ବନ୍ଧ ନଥାଏ । ଭ୍ରମବଶତଃ ଅଜ୍ଞଲୋକମାନେ ଦେହକୁ ଆତ୍ମାବୋଲି ଗ୍ରହଣ କରିଥାନ୍ତି । ଏହି ଜ୍ଞାନ ହୋଇଯିବା ପରେ ଜୀବର ସମସ୍ତ ସାଂସାରିକ ସୁଖ ଦୁଃଖ ଛାଡ଼ିଯାଏ । ସେ ପରମାନନ୍ଦରେ ନିମଗ୍ନ ହୋଇଯାଏ । ଏହାହିଁ ହେଉଛି ସକଳ ଶାସ୍ତ୍ରର ସାର । ସମସ୍ତ ପ୍ରକାର ସାଧନ ହୋଇଥାଏ କେବଳ ଏଇଥିପାଇଁ । ଶାସ୍ତ୍ରମାନେ ବିବିଧ ପ୍ରକାର ଦୃଷ୍ଟାନ୍ତ ମାଧ୍ୟମରେ କେବଳ ଏହି କଥାକୁ ବୁଝାଇ ଥାଆନ୍ତି ଯେ, **ଦେହ ଆତ୍ମା ନୁହେଁ । ଦେହର ସୁଖ ଦୁଃଖ ସହିତ ଆତ୍ମାର କୌଣସି ସମ୍ବନ୍ଧ ନାହିଁ ।**

ମହାପ୍ରାଜ୍ଞ ସୂତ କହୁଛନ୍ତି– ହେ ମୁନିଗଣ ! ଉଦ୍ଧବଙ୍କୁ ଭଗବାନ୍ କହୁଛନ୍ତି, "ହେ ଉଦ୍ଧବ ! ଦୁଷ୍ଟ ଲୋକମାନେ ସେହି ଭିକ୍ଷୁ ବ୍ରାହ୍ମଣକୁ ଯେତେବେଳେ ବିବିଧ ପ୍ରକାର କ୍ଳେଶ ଦେଉଥିଲେ, ସେତେବେଳେ ସେ ଏକାନ୍ତରେ ବସି ମନକୁ ବୁଝାଇବାରେ ଲାଗିଥିଲା । ସେ ତା ମନକୁ କହିଲା– 'ଦେଖରେ ବାବୁ ମନ ! ଶତ୍ରୁ ବାହାରେ ଅଛି ବୋଲି ତୁମେ କହୁଛ, ଯାହାର ବସ୍ତୁ ଆମେ ନେଉଛେ ଅଥବା ନେବାପାଇଁ ଇଚ୍ଛା କରୁଛେ, ସେ ଆମର ଶତ୍ରୁ

ହୋଇଯାଏ। ହଉ! ତୁମ କଥା ଗ୍ରହଣ କରାଯାଉ। ମନୁଷ୍ୟ ଶତ୍ରୁ ଆଉ ମିତ୍ର। ମନୁଷ୍ୟ ହିଁ ସୁଖ ଦେଇଥାଏ, ତେବେ ଦୁଃଖ ସୁଖ ହୋଇଥାଏ କିପରି ?''

ମନ କହିଲା,''ଯାହାକୁ ଦୁଃଖ ସୁଖ ଦେଇଥାଏ ସେ ଦୁଃଖ ସୁଖର ଭୋକ୍ତା ହୁଏ; ଆଉ ଯିଏ ଦିଏ, ସେ ପ୍ରଦାନକାରୀ ହୋଇଥାଏ। ''

ଭିକ୍ଷୁ କହିଲା, ''ପ୍ରଥମେ କିଏ ଦୁଃଖ ସୁଖ ଦେଉଛି ତାହା ଚିନ୍ତାକର। ଭୋକ୍ତା କିଏ ? ଶରୀରରେ ହାତ ଅଛି, ଗୋଡ଼ ଅଛି, ଆଖି, କାନ, ନାକ, ମୁହଁ, ପେଟ, ମଳମୂତ୍ର ଦ୍ୱାର ତଥା ଅନ୍ୟାନ୍ୟ ଅନେକ ଅଙ୍ଗ ଅଛି। ରସ, ରକ୍ତ ଆଦି ଧାତୁ ଅଛି। ଯା ଭିତରୁ ସୁଖ କି ଦୁଃଖ କିଏ ଦିଏ ?''

ମନ କହିଲା, ''ସମସ୍ତ ଅଙ୍ଗ ଉପାଙ୍ଗ ମିଶି ଶରୀର କୁହାଯାଏ। ସେ ସୁଖ ଦୁଃଖ ଦିଏ।''

ଭିକ୍ଷୁ କହିଲା, ''ଯଦି ଶରୀର ସୁଖ ଦୁଃଖ ଦେଉଥାଏ ମରିଯାଇଥିବା ଲୋକର ସମସ୍ତ ଅଙ୍ଗ ଉପାଙ୍ଗ ଅକ୍ଷତ ରହିଥାଏ, ସେ କିପରି ସୁଖ କି ଦୁଃଖ ଦେଉନାହିଁ?''

ମନ କହିଲା, ''ସେ ତ ଜଡ଼, ସ୍ୱେ ପୁଣି ସୁଖ କି ଦୁଃଖ ଦିଅନ୍ତା କିପରି ? ତା' ଠାରୁ ପରା ଚୈତ୍ୟାନାଂଶ ବାହାରି ଯାଇଥାଏ ! ଯେ ପର୍ଯ୍ୟନ୍ତ ଜୀବନ ରହିଥାଏ, ସେ ପର୍ଯ୍ୟନ୍ତ କର୍ମ ସମ୍ଭବ। ମରିଗଲେ ଗଲା। ମୃତ୍ତିକା ଭଳି ହୋଇଗଲା।''

ଭିକ୍ଷୁ କହିଲା,''ଶରୀରରେ ଦୁଇଟି ବସ୍ତୁ ଅଛି ବୋଲି ଏଥିରୁ ଜଣାଗଲା। ଗୋଟିଏ ହେଉଛି ପଞ୍ଚଭୂତରେ ନିର୍ମିତ ଶରୀର, ଅନ୍ୟଟି ଜୀବାତ୍ମା। ଏବେ ପ୍ରଶ୍ନ ଉଠୁଚ, ଏହି ଦୁଇଟି ମଧ୍ୟରୁ ଦୁଃଖ ଦାତା ବା ଦୁଃଖର ଭୋକ୍ତା କିଏ ? ଆତ୍ମା ସୁଖ ଓ ଦୁଃଖ ଦେଉଥାଏ ବୋଲି ତୁମେ କହିପାର। ତେବେ ଆତ୍ମା ତ ହେଉଛି ଏକ। ଏବଂ ତାହା ସୁଖ ଦୁଃଖ ଊର୍ଦ୍ଧ୍ୱରେ। ସକଳ ଶରୀରରେ ଯେତେବେଳେ ସେହି ଏକ ଆତ୍ମା ଅଛି, ସେତେବେଳେ ଆତ୍ମା ଦୁଃଖ ଦିଏ କିପରି ? ଯଦି ତୁମେ କୁହ ଯେ ସମସ୍ତଙ୍କ ଶରୀରରେ ପୃଥକ୍ ପୃଥକ୍ ଆତ୍ମା ଅଛି, ଆତ୍ମାକୁ ଆତ୍ମା ଦୁଃଖ ଦେଉଛି, ତେବେ ଏଥିରେ କଷ୍ଟ ଅନୁଭବ କରିବାର କାରଣ କ'ଣ ଥାଇପାରେ ? ଆତ୍ମା ଯଦି ସୁଖ ଦୁଃଖ ରହିତ ବୋଲି କୁହ, ତେବେ ଏଥିରେ ଦୁଃଖ ଦେବା ଓ ଦୁଃଖ ପାଇବା ପ୍ରଶ୍ନ ହିଁ ଉଠେ ନାହିଁ। ଯଦି ଦୁଃଖ ଦେବା ଏହାର ସ୍ୱଭାବ ବୋଲି କୁହ, ସ୍ୱଭାବ ତ ଦୂରତିକ୍ରମ କୁହାଯାଇଛି। ତାକୁ କେହି ଦୂର କରିପାରିବେ ନାହିଁ। ଦୁଃଖ ଦେବା ଯଦି ଏହାର ସ୍ୱଭାବ ନୁହେଁ, ତେବେ ସେ କାହିଁକି ଦୁଃଖ ଦେବ ଯେ ?

''ଯଦି କୁହ ଯେ, ଗୋଟିଏ ଦେହ ଆଉ ଗୋଟିଏ ଦେହକୁ ଦୁଃଖ ଦେଉଛି, ତେବେ ସବୁ ଦେହ ତ ପଞ୍ଚଭୂତରେ ତିଆରି— ପଞ୍ଚଭୂତରେ ନିର୍ମିତ ହୋଇଥିବା ଗୋଟିଏ ଦେହ ଆଉ ଗୋଟିଏ ସେପରି ଦେହକୁ ସୁଖ-ଦୁଃଖ ଦେଲେ, ଦୋଷ ଦେବା କିପରି ? ଅଗ୍ନି କେବେ ଅଗ୍ନିକୁ ଜଳାଇ ପାରେ କି ? ଜଳ କେବେ ଜଳକୁ ଓଦା କରିପାରେ କି ? ବାୟୁ କେବେ ବାୟୁକୁ ଉଡ଼ାଇଦିଏ କି ? ଆକାଶ କେବେ ଆକାଶକୁ ତଳକୁ ପକାଇ ପାରିବ କି ? ଯଦି ନୁହେଁ, ତେବେ ଗୋଟିଏ ଦେହ ଆଉ ଗୋଟିଏ ଦେହକୁ ଦୁଃଖ ଦେବ କିପରି ? ହଉ, ଧରିନିଆଯାଉ ଯେ, ଗୋଟିଏ ଦେହ ଆଉ ଗୋଟିଏ ଦେହକୁ ଦୁଃଖ ଦେଲା, ତେବେ କ୍ରୋଧ କାହା ଉପରେ କରାଯିବ ? ନିଜର ଦାନ୍ତରେ ଯଦି ନିଜର ଜିଭ କଟିଯାଏ ତେବେ କିଏ

ସେପରି ବୁଦ୍ଧିମାନ ଅଛି ଯେ ପଥର ପିଟି ସେଇ ଦାନ୍ତକୁ ଭାଙ୍ଗିଦେବ ! ଚାଲୁଥିବା ସମୟରେ ଗୋଟିଏ ଗୋଡ଼ ଆରଗୋଡ଼ରେ ଛନ୍ଦି ହୋଇଗଲେ ମଣିଷ ମୁହଁମାଡ଼ି ପଡ଼ିଯାଏ। ସେପରି ସ୍ଥଳର ଛନ୍ଦିଥିବା ଗୋଡ଼କୁ ଦୋଷୀ କହି କେତେଜଣ ସେହି ଗୋଡ଼କୁ କାଟିଛନ୍ତି ! କେହି ଏପରି କରନ୍ତି ନାହିଁ। ଏହିଭଳି ଦେହ ପଞ୍ଚଭୂତରେ ତିଆରି ହୋଇଛି, ସବୁଥିରେ ସେଇ ଗୋଟିଏ ତତ୍ତ୍ୱ ଅଛି- ଗୋଟିଏ ଦେହ ଆଉ ଗୋଟିଏ ଦେହକୁ ଦୁଃଖ ଦେଉଥିଲେ କୋପ କାହା କାହା ଉପରେ କରାଯିବ ? ଆତ୍ମା ଉପରେ କୋପ କରିବା ତ ପଟେ ନାହିଁ। ଶରୀର ଉପରେ କୋପ କରିବା- ତା' ବି ନୁହେଁ- କାରଣ ଉଭୟ ଶରୀର ପୃଥିବୀ ଆଦି ପଞ୍ଚଭୂତର ବିକାର- ଉଭୟେ ଏକ ଶରୀରର ଅଙ୍ଗ, ଏଣୁ ସିଦ୍ଧ ହେଉଛି ଯେ, କୌଣସି ପୁରୁଷ ଆଉ କୌଣସି ପୁରୁଷକୁ ଦୁଃଖ ଦିଏ ନାହିଁ।''

ମନ କହିଲା ''ତେବେ ଦୁଃଖର କାରଣ ଦେବତା ଅଥବା ଆତ୍ମା, ଗ୍ରହ କର୍ମ ବା କାଳ- ଏମାନଙ୍କ ଭିତରୁ କେହି ହୋଇଥାଇପାରନ୍ତି ?''

ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ଉଦ୍ଧବଙ୍କୁ କହୁଛନ୍ତି, ''ହେ ଉଦ୍ଧବ ! ଦେବତା, ଆତ୍ମା, ଗ୍ରହ, କର୍ମ ଅଥବା କାଳ ଏମାନେ ସୁଖ ଦୁଃଖର କାରଣ ନୁହନ୍ତି— ଏହି କଥାକୁ ସଂକ୍ଷେପରେ ମନକୁ ପଚାରି ବୁଝାଇବା ପରେ ତାହାର' ସ୍ପଷ୍ଟିକରଣ କରି ସେ ମନକୁ ବୁଝାଇଲା ଯେ ଏ ସମସ୍ତ ଭିତରୁ କେହି ହେଲେ ଦୁଃଖର କାରଣ ହୋଇ ନ ଥାନ୍ତି।''

ମହାପ୍ରାଜ୍ଞ ସୂତ କହୁଛନ୍ତି,'' ହେ ମୁନିଗଣ ! ଯେପରି ଭିକ୍ଷୁ ବିପ୍ର ତର୍କ ମାଧ୍ୟମରେ ପ୍ରମାଣ କରିଥିଲା ଯେ ଦେବତା, ଗ୍ରହ କର୍ମ କାଳ ଅଥବା ଆତ୍ମା ଦୁଃଖ ସୁଖର କାରଣ ନୁହନ୍ତି- ଭଗବାନ୍ ଉଦ୍ଧବଙ୍କୁ ଯେଉଁଭଳି କହିଥିଲେ ମୁଁ ଆପଣମାନଙ୍କୁ ଅବିକଳ ସେହିଭଳି କହୁଛି, ଆପଣମାନେ ଏକାଗ୍ର ଚିତ୍ତରେ ତାହା ଶୁଣନ୍ତୁ।''

**ଛପ୍ପୟ**

ଦେହିଁ ଦେବତା ଦୁଃଖ ଲଢ଼େ ଯଦି ସ୍ୱୟଂ ପରସ୍ପର।
ଆତ୍ମା କୀ କା ହାନି ଗିରୈ ଜଲ ଜଲ କୈ ଉପର।
ସୁଖ ଦୁଃଖ ତେ ହୈ ପରେ ଆତ୍ମା କା ଦୁଃଖ ଦେବୈ।
ନିଜାନନ୍ଦ ମହଁ ତୃପ୍ତ ନହୀ ବିଷୟନି କୁଁ ସେବୈ।।
ଯଦି ଗ୍ରହଗନ ହୀ ଦେହିଁ ଦୁଃଖ, ମୁହେଁ ଦେହ ଆତ୍ମା ନହୀ।
ସ୍ୱପ୍ନ କାଲ କୋ ଅହି କହୀ, କାଟେ ଜାଗ୍ରତ ମହଁ କହୀ।



# କେହି କାହାକୁ ଦୁଃଖ ଦେଇ ନ ପାରନ୍ତି !

ନ କେନଚିତ୍ କ୍ୱାପି କଥଞ୍ଚନାସ୍ୟ
ଦ୍ୱନ୍ଦ୍ୱୋପରାଗଃ ପରତଃ ପରସ୍ୟ ।
ଯଥାହମଃ ସଂସୃତିରୂପିଣଃ ସ୍ୟା-
ଦେବଂ ପ୍ରବୁଦ୍ଧୋ ନ ବିଭେତି ଭୂତୈଃ ।। ★

[ଶ୍ରୀଭା.୧୧ସ୍କ.୨୩ଅ. ୫୭ ଶ୍ଳୋକ]

### ଛପ୍ପୟ

ନହୀଂ କରମ ସୁଖ ଦୁଃଖ ଦେହିଁ ଆତ୍ମା ହୈ ନ୍ୟାରୋ ।
ଜଡ଼ ଚେତନ ହୈ ଭିନ୍ନ ନହୀଂ ଦୁଖ ଦେହି ବିଚାରୋ ।।
କାଲ କହା ଦୁଖ ଦେହି ଅଂଶ ଆତ୍ମା କୋ ଜାନୋ ।
ଆତ୍ମା ଆଜ ନିର୍ଦ୍ୱନ୍ଦ୍ୱ ପ୍ରକୃତି ତେଁ ପର ପହିଚାନୋ ।।
ଅହଙ୍କାର ସଂସୃତି ଜନକ, ଭ୍ରମବଶ ହୋହି ପ୍ରତୀତ ଦୁଃଖ ।
ସମୁଝେ ଜୋ ଜୋ ଜ୍ଞାନ କୁଁ, ହୋବୈ ତାକୁଁ ନିତ୍ୟ ସୁଖ ।।

ଆମକୁ ଅନ୍ୟ କେହି ସୁଖ କି ଦୁଃଖ ପ୍ରକୃତରେ ଦିଅନ୍ତି ନାହିଁ। ଆମେ ନିଜେ ନିଜ କାରଣରୁ ଦୁଃଖ ଅନୁଭବ କରୁ। ନିଜେ ନିଜେ ହିଁ ସୁଖ ଅନୁଭବ କରିଥାଉ । କୁକୁର ହାଡ଼କୁ ଚୋବାଇବାରେ ଲାଗେ। ଏପରି ଚୋବାଇବାରେ ଲାଗିଥାଏ ଯେ ତା' ଦାନ୍ତମୂଳ ଓ ଓଠରୁ ରକ୍ତ ବାହାରି ଯାଏ। ସେ ନିଜେ ତା' ରକ୍ତକୁ ଚାଟିବାରେ ଲାଗେ। ଏହା ତାକୁ ଭଲ ଲାଗେ। ଆଉ ସେ ଭାବେ ଯେ ସେହି ରକ୍ତ ଚୋବାଉଥିବା ହାଡ଼ରୁ ବାହାରିଛି। ପ୍ରକୃତରେ କିନ୍ତୁ ରକ୍ତ ହେଉଛି ତା' ନିଜର। ତା' ନିଜ ଭିତରୁ ତାହା ବାହାରିଛି। ହେଲେ ଆରୋପ କରିଥାଏ ହାଡ଼ ଉପରେ। ଏହିଭଳି ଭୌତିକ ବସ୍ତୁମାନଙ୍କ ଦ୍ୱାରା ମନ ସୁଖ ଦୁଃଖ ଅନୁଭବ କରେ। ଜୀବ କିନ୍ତୁ ତା' ନିଜ ଉପରେ ଆରୋପ କରିଥାଏ। କହେ— ମୁଁ ସୁଖୀ ଅଛି, ମୁଁ ଦୁଃଖୀ ହୋଇଯାଇଛି, ଅମୁକ ମୋତେ କଷ୍ଟ ଦେଲା, ଅମୁକ ମୋର ବିପତ୍ତି ସମୟରେ ସହାୟତା କରିଛି। ଆତ୍ମଜ୍ଞାନୀ ନା କେବେ କାହାକୁ ଦୋଷ ଦିଏ, ନା କାହା ପ୍ରତି କୃତଜ୍ଞତା ଜ୍ଞାପନ କରେ। କାରଣ ସେ ଜାଣିଥାଏ, ଆତ୍ମା ତ ନିତ୍ୟ ଶୁଦ୍ଧ, ବୁଦ୍ଧ ଆନନ୍ଦସ୍ୱରୂପ। ତାକୁ ପୁଣି କିଏ ସୁଖ ଦୁଃଖ ଦେଇ ପାରିବ। ତା' ବ୍ୟତୀତ ଆଉ କିଛି ତ ନାହିଁ। ଗୁଣ ଗୁଣଗୁଡ଼ିକରେ ଚଳୁଛି ଏଥିରେ ଆତ୍ମାର ଯାଏ କେତେ, ଆସେ କେତେ ?

---



ଯେଣୁ ଏ ଅନିତ୍ୟ ସଂସାରେ । ପ୍ରାଣୀ ବନ୍ଧନ ଅହଙ୍କାରେ ।।
ଏଣୁ ଏ ମାନ ଅପମାନ । ନ ଘେନେ ଆତ୍ମଜ୍ଞାନୀ ଜନ ।।
ଶତ୍ରୁ ବାନ୍ଧବ ନିଜ ପର । ଏ ଦୁଃଖ ସୁଖ ଭ୍ରମ ମୋର ।।
ପୂର୍ବେ ଯେ ମହାଋଷିଗଣେ । ପରମ ଆତ୍ମନିଷ୍ଠା ଜ୍ଞାନେ ।।
ତରିଲେ ଏ ଘୋର ସଂସାର । ମୁଁ ଏବେ କରି ସେ ବିଚାର ।।
ଗୋବିନ୍ଦପାଦେ ସେବା କରି । ଘୋର ସଂସାରୁ ଯିବି ତରି ।।

[ଭାଗବତ : ଜଗନ୍ନାଥ ଦାସ.୧୧ ସ୍କନ୍ଦ ୨୪ ଅ]

ମହାପ୍ରାଜ୍ଞ ସୂତ କହୁଛନ୍ତି— ହେ ମୁନିଗଣ ! ସେହି କୃପଣ ବିପ୍ରର କଥା ଶୁଣାଇବାକୁ ଯାଇ ଭଗବାନ ଉଦ୍ଧବଙ୍କୁ କହିଲେ, 'ହେ ଉଦ୍ଧବ ! ସେହି ବିପ୍ର ତା' ମନକୁ ବୁଝାଇବାରେ ଲାଗିଥାଏ । ଧରିନିଅ ଇନ୍ଦ୍ରିୟଙ୍କ ଅଧିଷ୍ଠାତୃ ଦେବତାମାନେ ହିଁ ଦୁଃଖ ସୁଖର କାରଣ, ଏଥିରେ ଆତ୍ମାର କ'ଣ କ୍ଷତି ହେଲା । ଗୋଟିଏ ଦେବତା ଆଉ ଜଣେ ଦେବତାଙ୍କୁ ସୁଖ-ଦୁଃଖ ଦେଉଥାନ୍ତି । ଆତ୍ମା ତ ଦେବତାମାନଙ୍କର ଦେବ। ସେ ତ କାହାକୁ ଅପେକ୍ଷା କରେ ନାହିଁ। ସେ ସଦା ନିର୍ଲେପ। କେହି ଜଣେ ତୀକ୍ଷ୍ଣ ଛୁରୀକାରେ ଆଉ ଜଣଙ୍କର ଆଖି ତାଡ଼ିଦେଲା, ତେବେ ତୁମେ କ'ଣ କହିବ ଯେ ଆଖିର ଅଧିଷ୍ଠାତୃ ଦେବ ଇନ୍ଦ୍ର ଚକ୍ଷୁର ଅଧିଷ୍ଠାତୃ ଦେବ ସୂର୍ଯ୍ୟଙ୍କୁ ଦୁଃଖ ଦେଲା । ସମସ୍ତଙ୍କର ଶରୀରର ଇନ୍ଦ୍ରିୟମାନଙ୍କର ଅଧିଷ୍ଠାତୃ ଦେବ ଏକ । କାହାର ହାତର ଅଧିଷ୍ଠାତୃ ଦେବ ଆଖିର ଅଧିଷ୍ଠାତୃ ଦେବଙ୍କୁ ପୀଡ଼ା ଦେଲା, ତେବେ କାହା ଉପରେ କ୍ରୋଧ ପ୍ରକାଶ କରାଯିବ। ମୋଟା ଲୋକମାନଙ୍କର ଜଙ୍ଘ ଜଙ୍ଘ ଘଷି ହୋଇ ଛିଣ୍ଡିଯାଏ । ଦୁଇଟିଯାକ ଜଙ୍ଘ ହେଉଛି ତା' ଶରୀରର ଅଙ୍ଗ । ଏ ବିଷୟରେ କାହାକୁ ଦୋଷ ଦେଇ କହିବା ! ଏହି ଦୃଷ୍ଟାନ୍ତରୁ ଜଣାଗଲା ଯେ ଯଦି ଦେବତା ସୁଖ ଦୁଃଖର କାରଣ ହୋଇଥାନ୍ତି ତେବେ ଆତ୍ମାର ସେଥିରେ କିଛି କ୍ଷତି ହେବାର ନାହିଁ।

ଯଦି କୁହ ଯେ ସୁଖ ଦୁଃଖର କାରଣ ଦେବତା ନ ହୋଇ ହୋଇଥାଏ ଆତ୍ମା। ତେବେ ଏଥିରେ ବି କିଛି ଖରାପ ହେବା ଭଳି କଥା ନାହିଁ। ଆତ୍ମା ଯଦି ଦୁଇଟା ହୋଇଥାଆନ୍ତେ ତେବେ ନିଜନିଜ ଭିତରେ ଠେଲାପେଲା ହୁଅନ୍ତେ। କଳି ତକରାଳ କରନ୍ତେ। କିନ୍ତୁ ଆତ୍ମା ତ ଅଦ୍ୱୟ। ତା'ର ଅନ୍ୟ କେହି ପ୍ରତିଦ୍ୱନ୍ଦ୍ୱି ନାହିଁ। ଯେପରି ଶହେ କଳସୀରେ ପାଣି ପୂରାଇ ରଖିଲେ, ପ୍ରତ୍ୟେକରେ ସୂର୍ଯ୍ୟଙ୍କ ପ୍ରତିବିମ୍ବ ପୃଥକ୍ ପୃଥକ୍ ଦେଖାଯାଏ, ଏଥିରୁ ସୂର୍ଯ୍ୟ ଯେ ଅନେକ ଏପରି କୁହାଯାଇ ନ ପାରେ। ଏହିଭଳି ଶରୀର ଯେତେ ହେଉନା କାହିଁକି, ଆତ୍ମା କିନ୍ତୁ ଏକ। ଏଣୁ ଆତ୍ମା ବ୍ୟତୀତ ଯଦି କିଛି ଥାଏ ତେବେ ତାହା ମିଥ୍ୟା, ଅସତ୍। ସତ୍ ହେଉଛି ଏକମାତ୍ର ଆତ୍ମା। ନିଜକୁ ନିଜେ ଲଜ୍ୟା ଲାଗେନାହିଁ, ଭୟ କି ସଂକୋଚ ଲାଗେ ନାହିଁ, ଅନ୍ୟଙ୍କ ଆଗରେ ଲଙ୍ଗଳା ହେବାକୁ ସଂକୋଚ କରନ୍ତି, କିନ୍ତୁ ନିଜକୁ ନିଜେ କିଛି ଖରାପ ଲାଗେନାହିଁ। ଏଣୁ ନିଜଦ୍ୱାରା ନିଜକୁ ସୁଖ ଦୁଃଖ ହୁଏ ନାହିଁ। ଏପରି ସ୍ଥଳରେ ଚିନ୍ତା କି କ୍ରୋଧର କାମ କ'ଣ ?

ହଁ ! ତୁମେ କହିପାର, ଗ୍ରହମାନେ ହେଉଛନ୍ତି ସୁଖ ଦୁଃଖର କାରଣ। ଏବେ ଆମେ ରୋଗଗ୍ରସ୍ତ, କାରଣ ଆମ ଉପରେ କ୍ରୂର ଗ୍ରହର ଦୃଷ୍ଟି ପଡ଼ିଛି। ଶକ୍ତିର କୋପଦୃଷ୍ଟି ଏହି ରାଶିସ୍ଥିତ ବ୍ୟକ୍ତି ଉପରେ ପଡ଼ିଛି। ତେଣୁ ସାଢ଼େସାତବର୍ଷର ଶନିଶ୍ଚର ଦଶା ପଡ଼ିଛି। ତେବେ କଥା ହେଉଛି, ଏହି କ୍ରୂର ଗ୍ରହ ଅଜର, ଅମର ଆତ୍ମାରେ ତ କୌଣସି କ୍ଷତି କରି ନ ପାରନ୍ତି। ଗ୍ରହ ଯଦି ପୀଡ଼ା ଦିଏ, ତେବେ ତାହା ଶରୀରକୁ ଦିଏ– ଆତ୍ମା ଏଥିରୁ ପୃଥକ୍ ଥାଏ। ଶରୀର ହେଉଛି ଜନ୍ମ– ମରଣଶୀଳ। ଶାସ୍ତ୍ରକାରମାନେ ଶରୀରକୁ ବ୍ୟାଧିର ଆଶ୍ରୟ ସ୍ଥଳ ବୋଲି କହିଥାଆନ୍ତି। ଗ୍ରହ ଦୃଷ୍ଟିରେ ଶରୀର ଯଦି ପୀଡ଼ା ପାଉଥାଏ ତେବେ ପାଉଥାଉ– ଏଥିରେ ଆତ୍ମାର ଯାଏ କେତେ ନା ଆସେ କେତେ !

ତୁମେ ଯଦି କୁହ ଯେ ସୁଖ ଦୁଃଖର କାରଣ ହେଉଛି କର୍ମ, ତେବେ କର୍ମ ଦୁଇପ୍ରକାର ହୋଇଥାଏ। ଗୋଟିଏ ବିକାରଯୁକ୍ତ ବସ୍ତୁ ପାଇଁ, ଅନ୍ୟଟି ହିତାହିତ ଜ୍ଞାନପାଇଁ। ଯେପରି ଚାଉଳ, ଡାଲି, ଘିଅ– ଏ ସମସ୍ତ ବିକାରଯୁକ୍ତ ବସ୍ତୁରେ ସ୍ୱାଦ ନିମନ୍ତେ ବିବିଧ ପ୍ରକାର

କରି ଖାଇବା । ଅନେକ ପ୍ରକାର ଜିନିଷକୁ ଏକତ୍ରିତ କରିବା ହେଉଛି ଏହି ପ୍ରକାର କର୍ମ । ଏହି କର୍ମ ଦ୍ୱାରା ଯାହା କରାଯାଏ ତାହା ବିକାରଯୁକ୍ତ ହୋଇଥାଏ । ଏବଂ ଏହାର ପରିଣାମ ମଧ୍ୟ ବିକାର ହୋଇଥାଏ । ଇନ୍ଦ୍ରିୟ ପ୍ରୀତ୍ୟର୍ଥ ବିଷୟ ଭୋଗ ନିମିତ୍ତ କର୍ମ କରିବା ବିକାରଯୁକ୍ତ କର୍ମ ହୋଇଥାଏ । ଏ ସମସ୍ତ ବସ୍ତୁକୁ ଭଗବାନଙ୍କ ଭୋଗନିମନ୍ତେ ଏକାଠି କରିବା, ଅତି ଶ୍ରଦ୍ଧାର ସହିତ ଭୋଗ ଲଗେଇବା, ନୈବେଦ୍ୟ ରୂପେ ପ୍ରଦାନ କରିବା– ଏହା ଶାଶ୍ୱତ କର୍ମ । ବସ୍ତୁକୁ ଦେଖି ଏହା ସତ୍ କି ଅସତ୍ ତାହା ବିଚାର କରିବା ଉଚିତ୍ । ଅନ୍ନମୟ କୋଷ ସତ୍ୟ ହୋଇ ନଥାଏ । ପ୍ରାଣମୟ କୋଷ ସତ୍ୟ ହୋଇ ନଥାଏ । ମନୋମୟ କୋଷ ସତ୍ୟ ହୋଇ ନଥାଏ । ଏ ସମସ୍ତ ଜଡ଼– ଏହିପରି ବିଚାର କରି କରି ଆତ୍ମ ପର୍ଯ୍ୟନ୍ତ ପହଞ୍ଚିବାକୁ ଯେଉଁ କର୍ମ କରଯାଏ ତାହାକୁ ହିତାହିତ କର୍ମ କୁହାଯାଏ । ଏପରି ବିଚାର ରୂପୀ କର୍ମରେ ଆମ ପାଇଁ କେଉଁ କେଉଁ ବସ୍ତୁ ହିତକର ଓ କେଉଁ କେଉଁ ବସ୍ତୁ ଅହିତକର ତାହାର ନିର୍ଣ୍ଣୟ ହୋଇଯାଏ । ଏଥିରୁ ଜଡ଼ କିଏ ଆଉ ଚୈତନ୍ୟ କିଏ ସତ୍ କ'ଣ, ଅସତ୍ କ'ଣ ତାହା ଜଣାପଡ଼ିଯାଏ । ଯଦି କର୍ମ ବିକାରଯୁକ୍ତ ହୋଇଥାଏ ତେବେ ତାହା ଜଡ଼ ହୋଇଥାଏ, ତାହାର ଚୈତନ୍ୟ ଆତ୍ମା ସହିତ କୌଣସି ସମ୍ବନ୍ଧ ନ ଥାଏ । ଯଦି ଏହାର ଆତ୍ମା ସହିତ ସମ୍ବନ୍ଧ ଥାଏ, ଆତ୍ମା ନିମିତ୍ତ କର୍ମ ହୋଇଥାଏ, ତେବେ ତାହା ଜ୍ଞାନମୟ ହୋଇଥାଏ, ଚୈତନ୍ୟ ହୋଇଥାଏ– ଆଉ ଏହା କଦାପି ସୁଖ-ଦୁଃଖର କାରଣ ହୋଇପାରେ ନାହିଁ । ଏଥିରୁ ସିଦ୍ଧ ହେଉଛି ଯେ, କର୍ମକୁ ଯଦି ସୁଖ ଦୁଃଖର କାରଣ କୁହାଯାଏ ତେବେ ଏଥିରେ ଆତ୍ମାର କ'ଣ କ୍ଷତି ହେଉଛି । ଗୋଟିଏ ଗଛରେ ପକ୍ଷୀ ରୁହନ୍ତି, ଗଛଟି କଟା ହୋଇଗଲା, ତେବେ ସେହି ପକ୍ଷୀର କ'ଣ ଗଲା । ସେ ସେହି କଟା ହୋଇଯାଇଥିବା ଗଛରୁ ଯାଇ ଆଉ ଗୋଟିଏ ଗଛରେ ବସା କରିବ । ଏହି ଭଳି ଏହି ଶରୀର ହେଉଛି ଜଡ଼ । ଏଥିରେ ଚୈତନ୍ୟ ଆତ୍ମା ପକ୍ଷୀରୂପରେ ବାସ କରୁଥାଏ । ଗଛ ସୁଖ ଦୁଃଖ ପକ୍ଷୀଙ୍କୁ କିନ୍ତୁ ସ୍ପର୍ଶ କରେନାହିଁ । ଏହିଭଳି ଆତ୍ମାର କର୍ମ ସହିତ କୌଣସି ସମ୍ବନ୍ଧ ନ ଥାଏ । ଆତ୍ମା ତ ନିତ୍ୟ ଚିରନ୍ତନ ନିଷ୍କ୍ରିୟ ।''

'ତୁମେ କହିପାର ଯେ କାଳ ହେଉଛି ସୁଖ ଦୁଃଖର କାରଣ ; କିନ୍ତୁ କାଳ କେବେହେଲେ ଆତ୍ମାକୁ କୌଣସିପ୍ରକାର ସୁଖ କି ଦୁଃଖ ଦେଇ ନ ପାରେ । କାରଣ ଏହା ତ ତାର ଏକ ଅଂଶ । ବିନ୍ଦୁ କେବେ ସିନ୍ଧୁକୁ ଦୁଃଖ ଦେଇପାରେ କି ? ଅଗ୍ନି କଣାଟିଏ ଅଗ୍ନିକୁ କେବେ ଜଳାଇ ପାରେ କି ? ଏ ସବୁ କଥା ସମ୍ଭବ ହୁଏ ନାହିଁ, କାରଣ ଅଂଶ ଅଂଶୀ ତତ୍ତ୍ୱରେ ଉଭୟେ ଏକ ; ତେଣୁ ଉଭୟଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଅସମ୍ଭବ । ଦ୍ୱନ୍ଦ୍ୱ ହୋଇଥାଏ ବିରୋଧୀ ବସ୍ତୁଙ୍କ ମଧ୍ୟରେ । ଆତ୍ମା ହେଉଛି ଏକ, ଅଦ୍ୱୟ । ତହିଁରେ ଦ୍ୱନ୍ଦ୍ୱ ଯେତେବେଳେ ଅସମ୍ଭବ ସେତେବେଳେ କାଳ ଏହାର ସୁଖ ଦୁଃଖର କାରଣ କିପରି ହୋଇପାରିବ ? ପୁଣି କ୍ରୋଧ କରିବାର କାରଣ କ'ଣ ହୋଇପାରେ ?

ଭିକ୍ଷୁ ଏହିପରି ନିଜକୁ ନିଜେ ବୁଝାଇବାକୁ ଯାଇ କହୁଥାଏ– ''ରେ ମନ ! ଏ ସବୁ କଥାରୁ କ'ଣ ଜଣା ପଡ଼ିଲା ? ଏହା ନା' ଆତ୍ମା ପ୍ରକୃତରେ ଊର୍ଦ୍ଧ୍ୱରେ, ପରେ ଥାଏ । ପ୍ରକୃତିରେ ହେଉଥିବା ବିକାର ସହିତ ଏହାର ସମ୍ବନ୍ଧ ନ ଥାଏ, 'ସଂସର୍ଗ ନଥାଏ । ଏଣୁ ଏହାକୁ କେତେବେଳେ ବି କୌଣସି ପ୍ରକାର ପ୍ରକୃତି ପଦାର୍ଥ ଦ୍ୱାରା, କୌଣସି କାଳରେ ବି ସୁଖ କି ଦୁଃଖ ପ୍ରାପ୍ତ ହୋଇପାରେ ନାହିଁ । ସୁଖ ଦୁଃଖ ରୂପ ଦ୍ୱନ୍ଦ୍ୱ ତ ଏହି ସଂସୃତି ରୂପ ଅହଙ୍କାରରେ ହିଁ ପ୍ରତୀତ ହୋଇଥାଏ । ଯେଉଁମାନଙ୍କର ଏହି ଧାରଣା, ଜ୍ଞାନ ହୋଇଯାଏ, ସେମାନେ ସୁଖ-ଦୁଃଖ ପାଇଁ

କାହାକୁ ଦୋଷୀ କରିବେ ନାହିଁ। ଏହାପରେ ସେମାନଙ୍କର କୌଣସି ଭୌତିକ ପଦାର୍ଥ ଉପରେ ଭୟ, କି ଶଙ୍କା, କି ସନ୍ଦେହ ଆଉ ରହିବ ନାହିଁ।

ମନ କହିଲା, ''ସଂସାରୀ ଲୋକମାନେ ସବୁ କାମ ଇନ୍ଦ୍ରିୟ ସୁଖ ନିମନ୍ତେ– ଭୋଗ ଉପଭୋଗ କରିବା ପାଇଁ କରୁଥାନ୍ତି– ତୁମର ଉଦ୍ଦେଶ୍ୟ କ'ଣ ?

ଭିକ୍ଷୁ କହିଲା, ''ଏହି ଅନନ୍ତ ଅପାର ସଂସାର ସାଗରକୁ ପାରି କରିବା ହିଁ ମୋ ଜୀବନର ଏକମାତ୍ର ଲକ୍ଷ୍ୟ।''

ମନ କହିଲା, ''ଏଥି ସକାଶେ ତୁମେ କି ଉପାୟ ଚିନ୍ତା କରିଛ ?''

ଭିକ୍ଷୁ କହିଲା, ''ଉପାୟ ହେଉଛି– ମୁଁ ତୁମକୁ ଏତେ ଯାହା ସବୁ କହିଲି, ଏଗୁଡ଼ିକ କିଛି ହେଲେ ମୋ ମନଗଢ଼ା ନୁହେଁ। ପୂର୍ବାଚାର୍ଯ୍ୟ ମହର୍ଷିମାନଙ୍କ ଦ୍ୱାରା ଏ ସମସ୍ତ ହେଉଛି କଥିତ ଜ୍ଞାନ।

ମୁଁ ଏହି ପରମାତ୍ମ ନିଷ୍ଠା ରୂପ ଜ୍ଞାନରେ ସ୍ଥିତ ହୋଇ, ଭଗବାନ ମୁକୁନ୍ଦଙ୍କର ପଦକମଳର ସେବା ଦ୍ୱାରା ଏହି ସଂସାର ରୂପ ଅଗାଧ ଉଦଧି, କଥା କଥାରେ, ଅତି ସୁଗମତାର ସହିତ ପାରି ହୋଇଯିବି।''

ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ଉଦ୍ଧବଙ୍କୁ କହୁଛନ୍ତି, ''ହେ ଉଦ୍ଧବ! ଭାଗ୍ୟର କଥା ଦେଖ! ଯେଉଁ ଧନ ପାଇଁ ସଂସାରୀ ଲୋକମାନେ ଦିନରାତି, ସବୁବେଳେ ଲାଳାୟିତ ରହିଥାଆନ୍ତି, ସେ ଧନ ନଷ୍ଟ ହୋଇଯିବା ପରେ ସେହି କୃପଣ ବ୍ରାହ୍ମଣକୁ ପରମ ଧନ ମିଳିଗଲା। ଆଜିପର୍ଯ୍ୟନ୍ତ ଧନ ପାଇଁ ତାକୁ ପରମ କ୍ଳେଶ ଉଠାଇବାକୁ ପଡୁଥିଲା। ଧନ ସଂଗ୍ରହର, ଧନ ସଂଚୟର, ଏହାର ସୁରକ୍ଷା, ବୃଦ୍ଧି, ବ୍ୟୟ ନିମନ୍ତେ, ତଥା ଆହୁରି ଅନେକ ପ୍ରକାର ଚିନ୍ତା କରିବାକୁ ପଡୁଥିଲା। ଧନ ନଷ୍ଟ ହୋଇଯିବା ପରେ ତାକୁ ଅତ୍ୟଧିକ କଷ୍ଟ ହୋଇଥିଲା। କିନ୍ତୁ ତା'ର ଏପରି ଜ୍ଞାନ ହୋଇଯିବା ପରେ ତା'ର ସମସ୍ତ ପ୍ରକାର ଚିନ୍ତା କର୍ପୂର ଭଳି ଆପେ ଆପେ ଉଭାନ୍ ହୋଇଗଲା- ଅଦୃଶ୍ୟ ହୋଇଗଲା। ସେ କ୍ଳେଶ ରହିତ ହୋଇଯାଇ, ତଥା ଚିନ୍ତାସମୂହର ଆଳୟ ନିଜର ଘର, ପରିବାର, କୁଟୁମ୍ବ ଛାଡ଼ି, ବିରକ୍ତ ହୋଇଯାଇ ପୃଥିବୀରେ ବିଚରଣ କରିବାରେ ଲାଗିଲା। ଏହି ଅଧ୍ୟାତ୍ମ ଜ୍ଞାନଯୁକ୍ତ ଗୀତ ସେ ହୃଦୟଙ୍ଗମ କରିନେଇଥିଲା। ଏହାର ପ୍ରଭାବରେ ସେ ଦୁଷ୍ଟଙ୍କ ଦ୍ୱାରା ତିରସ୍କୃତ ହୋଇ ସୁଦ୍ଧା ନିଜର ଯତି-ଧର୍ମରେ ଅଟଳ ରହିପାରିଥିଲା। ଏହି ଅଧ୍ୟାତ୍ମ-ଗୀତକୁ ଗାନ କରିବାରେ ଲାଗିଥିଲା। ଏଣୁ ହେ ଉଦ୍ଧବ! ତୁମେ ମଧ୍ୟ ଏହି ଗୀତକୁ ପୂର୍ଣ୍ଣରୂପରେ ହୃଦୟଙ୍ଗମ କର, ଯେ କେହି କେବେ କାହାକୁ କୌଣସି ପ୍ରକାର ସୁଖ ବା ଦୁଃଖ ଦେଇପାରନ୍ତି ନାହିଁ। ଅମୁକ ଆମକୁ ସୁଖ ଦେଲା, ଅମୁକ ଆମକୁ ଦୁଃଖ ଦେଲା, ଏ ସବୁ ଚିତ୍ତର ଏକମାତ୍ର ଭ୍ରମ।

ଭଗବାନ କହୁଛନ୍ତି, ''ହେ ଉଦ୍ଧବ! ଯେପରି ଚିନିରେ ନାନା ପ୍ରକାର ଖେଳଣା ହୁଏ, ସେଇଥିରେ ମୃଗ ହୁଏ, ସେହିଥିରେ ସିଂହ, ସେଇଥିରେ ବିରାଡ଼ି ଆଉ ସେଇଥିରେ ମୂଷା ଆଦି ନାନା ଆକୃତି ତିଆରିକରି ସେଗୁଡ଼ିକ କଳ୍ପିତ ନାମରେ ନାମକରଣ କରାହୋଇଥାଏ, ଠିକ୍ ସେହିଭଳି ଅଜ୍ଞାନରେ ରଚିତ ଏହି ସଂସାରରେ ବି ନାନା କଳ୍ପନା ହୋଇଥାଏ। କାହାକୁ ଶତ୍ରୁ କରନ୍ତି କାହାକୁ ମିତ୍ର ଡାକନ୍ତି, କାହାକୁ କାହାକୁ ଉଦାସୀନ ସଂଜ୍ଞା ଦେଇ ଦିଅନ୍ତି, କିନ୍ତୁ ବାସ୍ତବରେ କେହି ଶତ୍ରୁ ନ ଥାନ୍ତି ନା କେହି ମିତ୍ର, ନା କେହି ଉଦାସୀନ। ଏକମାତ୍ର

ଆତ୍ମା ହେଉଛି ସତ୍, ଆଉ ସବୁ ଅସତ୍, ମିଥ୍ୟା, ଅଜ୍ଞାନ ତଥା ଭ୍ରମ। ତୁମେ ଏହି ସଂସାରରୁ ତୁମ ମନକୁ ଦୂରେଇ ନିଅ।''

ଉଦ୍ଧବ କହିଲେ, ''ଭଗବନ୍! କୃପାକରି ଆପଣ ମୋତେ ଯୋଗର ସାରତତ୍ତ୍ୱ ଶିଖାଇ ଦିଅନ୍ତୁ।''

ଭଗବାନ୍ କହିଲେ, ''ହେ ଉଦ୍ଧବ! ତୁମେ ସଂସାରରେ ଲଗାଇ ରଖିଥିବା ବୁଦ୍ଧିକୁ ବାହାରକରି ଆଣି ମୋ ପାଖରେ ଲଗାଇ ଦିଅ। ଆଉ ପୂରା ଶକ୍ତି ବିନିଯୋଗ କରି ଦୃଢ଼ତାର ସହିତ ଆସ୍ଥାବାନ୍ଧି ଯୁକ୍ତି ପୂର୍ବକ ମନକୁ ନିରୋଧ କରିଦିଅ। ଏହାହିଁ ହେଉଛି ଯୋଗର ସାର ସଂଗ୍ରହ। ଏହା ହିଁ ହେଉଛି ସଂସାର ସାଗରକୁ ପାର କରିଦେବାର ଅତି ସରଳ ସୁଗମ ମାର୍ଗ। ମୁଁ ତୁମକୁ ଏବେ ଏହି ଅତ୍ୟନ୍ତ ଗୂଢ଼ ଜ୍ଞାନଯୁକ୍ତ ଭିକ୍ଷୁ-ଗୀତ ଶୁଣାଇଲି। ଏହାକୁ ତୁମେ ସାଧାରଣ ଗୀତ ବୋଲି ଭାବନାହିଁ। ଏହା ବ୍ରହ୍ମନିଷ୍ଠଯୁକ୍ତ ପୁଣ୍ୟ ପ୍ରସଙ୍ଗ। ଏହାକୁ ଯିଏ ସାବଧାନର ସହିତ ସମାହିତ ଚିତ୍ତରେ ଶ୍ରଦ୍ଧା ସହିତ ଶ୍ରବଣ କରନ୍ତି ସେମାନେ ଶାଶ୍ୱତୀ ଶାନ୍ତି ପ୍ରାପ୍ତ ହୁଅନ୍ତି। ଯେଉଁମାନେ ଏହି ପ୍ରସଙ୍ଗକୁ ଜିଜ୍ଞାସୁ ମୁମୁକ୍ଷୁଙ୍କୁ ଶୁଦ୍ଧ ଚିତ୍ତରେ ଶୁଣାନ୍ତି, ସେମାନେ ବି ପରମପଦର ଅଧିକାରୀ ହୋଇଯାଆନ୍ତି, ଶୁଣି ଓ ଶୁଣାନ୍ତି ଯେଉଁମାନେ ଏହାକୁ ହୃଦୟଙ୍ଗମ କରନ୍ତି, ଧାରଣ କରନ୍ତି, ସେଇମାନଙ୍କର ବାସ୍ତବିକ ଶାନ୍ତି ଲାଭ ହୋଇଥାଏ। ଏହାପରେ ସେମାନେ କାହାକୁ ହେଲେ ଦୋଷ ଦିଅନ୍ତି ନାହିଁ– ଯେ ଅମୁକ ମୋତେ ଦୁଃଖ ଦେଲା, ନା କାହାର ସ୍ତୁତି କରନ୍ତି ଯେ ଅମୁକ ମୋତେ ସୁଖ ଦେଲା। ସୁଖଦୁଃଖ ପ୍ରଦାନକାରୀ ଆଉ କେହି ଅନ୍ୟଲୋକ ହୋଇ ନଥାନ୍ତି। ଯାହାର ଆତ୍ମଜ୍ଞାନ ହୋଇଯାଇଥାଏ, ସେ ଏହାପରେ କୌଣସି ପ୍ରକାର ସୁଖ ଦୁଃଖାଦି ଦ୍ୱନ୍ଦରେ ବଶୀଭୂତ ହୁଏନାହିଁ। ତାକୁ କାହାଦ୍ୱାରା ସମାନ୍ୟମାତ୍ର କ୍ଳେଶର ଅନୁଭବ ହୁଏ ନାହିଁ। ସଂସାରୀ ଘଟଣାବଳୀକୁ ଭାଗ୍ୟ ଉପରେ ଛାଡ଼ି ଆତ୍ମାନନ୍ଦରେ ନିତ୍ୟ ନିମଗ୍ନ ରହିଥାଏ। ମୁଁ ତୁମକୁ ଅତି ସଂକ୍ଷେପରେ ଭିକ୍ଷୁଗୀତ କହିଲି। ଏବେ ତୁମେ ଆଉ କ'ଣ ବୁଝିବାକୁ ଚାହୁଁଛ ?''

ଉଦ୍ଧବ କହିଲେ, ''ଭଗବନ୍! ସାଂଖ୍ୟ ଯୋଗର ପ୍ରକ୍ରିୟା ମୁଁ ପୁଣିଥରେ ଶୁଣିବାକୁ ଚାହୁଁଛି।''

ଭଗବାନ୍ କହିଲେ, ''ହେ ଉଦ୍ଧବ! ତୁମକୁ ତ ମୁଁ ଅନେକ ଥର ସାଂଖ୍ୟ ସମ୍ବନ୍ଧୀ ଜ୍ଞାନ ଶୁଣାଇ ସାରିଛି। ସାଂଖ୍ୟ ଶାସ୍ତ୍ରର ଜଣାଶୁଣା ତତ୍ତ୍ୱଗୁଡ଼ିକୁ ମୁଁ ତ ଅନେକ ସ୍ଥାନରେ ପ୍ରସଙ୍ଗକ୍ରମରେ ବୁଝାଇ ବି ଦେଇଛି। ଏବେ ତୁମେ ଅନ୍ୟ କିଛି ପଚାର।''

ଉଦ୍ଧବ କହିଲେ, ''ପ୍ରଭୁ! ଗୂଢ଼ ବିଷୟକୁ ବାରମ୍ବାର ଶୁଣିବା ଉଚିତ। ଏଥିରେ ପୁନରୁକ୍ତି ଦୋଷ ହୁଏନାହିଁ। ଯଦିଓ ଆପଣ ଅନେକ ଥର ଏହି ପ୍ରସଙ୍ଗ ମୋତେ ବୁଝାଇଛନ୍ତି, ତେବେ ବି ମୋର ଇଚ୍ଛା, ପୁଣିଥରେ ସାଂଖ୍ୟ ଯୋଗ ସମ୍ବନ୍ଧରେ ଶୁଣନ୍ତି। ଆପଣ କୃପାକରି ସାଂଖ୍ୟର ମୋତେ ସବିଧି ପ୍ରକ୍ରିୟା ବୁଝାଇ ଦିଅନ୍ତୁ।''

ଭଗବାନ୍ ହସିଲେ, ଏବଂ କହିଲେ ''ଠିକ୍ ଅଛି। ଏବେ ମୁଁ ତୁମକୁ ସାଂଖ୍ୟ ଯୋଗ ସମ୍ବନ୍ଧରେ ଅତି ସଂକ୍ଷେପରେ ବୁଝାଇ ଦେଉଛି, ତୁମେ ଏଥର ମନଚୈତନ୍ୟ ସହିତ ଏକନିଷ୍ଠ ଭାବେ ଏହାକୁ ହୃଦୟରେ ଧାରଣ କର।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ଆପଣମାନେ ଭଗବାନ ଉଦ୍ଧବଙ୍କୁ କହିଥିବା ସାଂଖ୍ୟ ଯୋଗ ଉପଦେଶ ସମାହିତ ଚିତ୍ତରେ ଶୁଣନ୍ତୁ ।''

**ଛପ୍‌ପୟ**

ନହିଁ ଦୁଃଖ ସୁଖ ଦେହି କବହୁଁ କାହୂ କୁଁ କୋଇ ।
ଦୁଖ କୀ କାରନୀ ଅନ୍ୟ ବତାବେ ତିନ୍ନି ମତି ଖୋଇ ।।
ମାରେ ବାଧେ ଚାହିଁ ଦେହିଁ ଦୁଖ ମୋକୁଁ ସବଜନ ।
ସମୁଝି ଦୈବଗତି କବହୁଁ ହୋହୁଁ ନହିଁ ଦୁଖିତ ମଲିନ ମନ ।।
କହେ କୃଷ୍ଣ– ''ଉଦ୍ଧବ ! ସୁନୋ, ଭିକ୍ଷୁ କୃତାରଥ ହ୍ୱୈ ଗୟୋ ।
ସହି ୟାତନା ଖଲନୀ କୀ, ଗାୟ ଗତି ପ୍ରମୁଦିତ ଭୟୋ ।।



# ସାଂଖ୍ୟ ବିଧିରୁ ସୃଷ୍ଟି

**ଅଥ ତେ ସମ୍ପ୍ରବକ୍ଷ୍ୟାମି ସାଂଖ୍ୟଂ ପୂର୍ବୈର୍ବିନିଶ୍ଚିତମ୍ ।**
**ଯଦ୍ ବିଜ୍ଞାୟ ପୁମାନ୍‌ସଦ୍ୟୋ ଜହ୍ୟାଦ୍ ବୈକଳ୍ପିକଂ ଭ୍ରମମ୍ ।।** ★

[ଶ୍ରୀଭା.୧୧ସ୍କ.୨୪ଅ. ୧ଶ୍ଳୋକ]

**ଛପ୍‌ପୟ**

ଉଦ୍ଧବ ବୋଲେ– 'ପ୍ରଭୋ ! ସାଂଖ୍ୟ ଅବ ମୋଇ ସୁନାବୋ ।
କିତନେ ହୈ ସବ ତତ୍ତ୍ୱ ? ଭୟେ କୈସେ ? ସମୁଝାବୋ ।।
ହରି ବୋଲେ– ''ହୌ ପ୍ରଥମ ଏକ ହୀ ଅଦ୍ୱୟ ସତଚିତ ।
ଦୃଷ୍ଟା ଦୃଷ୍ୟ ସ୍ୱରୂପ ପ୍ରକୃତି ଅରୁ ପୁରୁଷ ଭୟେ ଇତ ।।
ପ୍ରକୃତି ପୁରୁଷ ସଂୟୋଗ ତୈ, କ୍ଷୋଭ ଭୟୋ ଜବ ଗୁନନି ମେ ।
ଏକାଦଶ ଅରୁ ଦେବ ମିଲି, ଭୟୋ ଅଣ୍ଡ ଇନ ସବନି ମେ ।।

---



| | | | |
|---|---|---|---|
| ବୋଲନ୍ତି ପ୍ରଭୁ ନାରାୟଣ | । | ଉଦ୍ଧବ ସାବଧାନେ ଶୁଣ | ।। |
| ତୁ ଅଟୁ ଭକତ ପ୍ରଧାନ | । | କହିବା ସାଂଖ୍ୟଯୋଗ ଜ୍ଞାନ | ।। |
| ଯେ ଜ୍ଞାନ ଜାଣି ବିଜ୍ଞଜନ | । | ହୁଡ଼ନ୍ତି ବିକଳ୍ପ ସମ୍ଭ୍ରମ | ।। |
| ଯେ ଜ୍ଞାନ ବିଜ୍ଞାନ କଳ୍ପିତ | । | ପ୍ରଥମେ ସୃଷ୍ଟିର ଅଗ୍ରତ | ।। |

[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କନ୍ଧ, ୨୫ ଅ]

ଏହି ସଂସାରର ଉତ୍ପତ୍ତି କିପରି ହେଲା– ସଂସାରର ପ୍ରାୟ ସମସ୍ତ ବୁଦ୍ଧିମାନ ଲୋକଙ୍କର ଏହା ହେଉଛି ପ୍ରଧାନ ପ୍ରଶ୍ନ। କିପରି ଏହି ଅଂସଖ୍ୟ ବିବିଧ ଯୋନି ବିଶିଷ୍ଟ କେବଳ କୁହନ୍ତି ; ପର୍ବତ, ବନ ଉପବନ ତଥା ନଦନଦୀଯୁକ୍ତ ସଂସାର ଉତ୍ପନ୍ନ ହେଲା କିପରି ? ଏଥିରେ କେତେ ସଂଖ୍ୟକ ତତ୍ତ୍ୱ ଅଛି? ପୁଣି ପ୍ରଧାନ ତତ୍ତ୍ୱଗୁଡ଼ିକର ସଂଖ୍ୟା କେତେ ? ଏ ସମସ୍ତ ପ୍ରଶ୍ନର ଅନେକ ପ୍ରକାର ଉତ୍ତର ଶୁଣାଯାଏ, କାରଣ ଏହି ବିଷୟରେ ବର୍ତ୍ତମାନ ସୁଦ୍ଧା ସମସ୍ତେ ଏକମତ ପୋଷଣ କରି ପାରି ନାହାନ୍ତି।

ଭିନ୍ନ ଭିନ୍ନ ମୁନିଙ୍କ ମତ ଭିନ୍ନ ଭିନ୍ନ। ତତ୍ତ୍ୱର ସଂଖ୍ୟା କିଏ ଗୋଟିଏ ପ୍ରକାର କହୁଥିବା ବେଳେ ଅନ୍ୟମାନେ ଅନ୍ୟ ପ୍ରକାର କହି ଥାଆନ୍ତି। ସଂଖ୍ୟା କଲେ ଦଶ ଶାସ୍ତ୍ରର ନାମ ସାଂଖ୍ୟ। ସାଂଖ୍ୟ କୁହାଯାଏ, ସଂପୂର୍ଣ୍ଣ ଜଗତର ଜ୍ଞାନ ପ୍ରାପ୍ତହୋଇ ସେଗୁଡ଼ିକର ମୁଖ୍ୟ ତତ୍ତ୍ୱକୁ ପ୍ରକାଶ କରିବା। ପରବର୍ତ୍ତୀ କାଳରେ ପଚିଶ ତତ୍ତ୍ୱ ବୋଲି କହୁଥିବା ଜ୍ଞାନୀଙ୍କର ସିଦ୍ଧାନ୍ତ ହୋଇଗଲା। ସାଂଖ୍ୟମତବାଦୀ ମଧ୍ୟ ଦୁଇ ଶ୍ରେଣୀର। ଗୋଟିଏ ନିରୀକ୍ଷର ସାଂଖ୍ୟ ଓ ଅନ୍ୟଟି ସେଶ୍ୱର ସାଂଖ୍ୟ। ଯୋଗ-ଦର୍ଶନକାର ସାଂଖ୍ୟର ସମସ୍ତ ତତ୍ତ୍ୱକୁ ମାନନ୍ତି। ତେବେ ବି ସେମାନେ ଏକ ପୁରୁଷ ବିଶେଷଙ୍କୁ ଈଶ୍ୱର ବୋଲି ବି ମାନନ୍ତି। ଏମାନେ ତେଣୁ ମତ ପୋଷଣ କରି କୁହନ୍ତି ଯେ ଏହା ପଚିଶ ତତ୍ତ୍ୱ ନୁହେଁ, ଛବିଶ ତତ୍ତ୍ୱ। ସେଶ୍ୱର ସାଂଖ୍ୟର ବିଶେଷ ଉଲ୍ଲେଖ ଶ୍ରୀମଦ୍‌ଭାଗବତ ସଂହିତାରେ ଅଛି।

ମହାପ୍ରାଜ୍ଞ ସୂତ କହୁଛନ୍ତି– ହେ ମୁନିଗଣ ! ଉଦ୍ଧବ ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ସାଂଖ୍ୟ ସମ୍ବନ୍ଧରେ ପ୍ରଶ୍ନ କରିବାରୁ ଭଗବାନ କହିଲେ, ''ହେ ଉଦ୍ଧବ ! ପ୍ରଳୟରେ ଅନ୍ତ ସମୟରେ ତଥା ସୃଷ୍ଟିର ପ୍ରାରମ୍ଭରେ ଯେତେବେଳେ ସର୍ବପ୍ରଥମ ସତ୍ୟଯୁଗ ଥିଲା, ସେ ପର୍ଯ୍ୟନ୍ତ ଏକ ଅଦ୍ୱୟ, ନିର୍ବିକଳ୍ପ, ନିରୀହ ନିରଞ୍ଜନ ବ୍ରହ୍ମ ହିଁ ଥିଲା। ଦ୍ରଷ୍ଟା ଓ ଦୃଶ୍ୟ ଏପରି ଭେଦ ନଥିଲା। ତାକୁ ଦ୍ରଷ୍ଟା କହିପାର, ତାକୁହିଁ ଦୃଶ୍ୟ କହିପାର। ତାହାର ଜ୍ଞାନ ସଂଜ୍ଞା ଥିଲା ଓ ନିଜେ ନିଜେ ଉତ୍ପନ୍ନ ହୋଇଥିଲା। ଯେପରି ଜଣଙ୍କର ଗୋଟିଏ ମାତ୍ର ପୁଅ ଥିଲା, ବାହାରୁ କେତେକ ଲୋକ ଆସିଲେ, ସେମାନେ ପଚାରିଲେ, 'ହେ ପଣ୍ଡିତେ ! ଆପଣଙ୍କର ବଡ଼ ପୁଅ କିଏ ?'

''ପାଖରେ ବସିଥିବା ପୁଅକୁ ଚାହିଁ ସେ କହିଲା, 'ଇଏ ମୋର ସବୁଠାରୁ ବଡ଼ ପୁଅ।'

ଏହାପରେ ସେ ପଚାରିଲା, 'ଆପଣଙ୍କର ସାନ ପୁଅ କାଇଁ ?'

''ସେହି ପୁଅକୁ ଦେଖାଇ ସେ ପୁଣିଥରେ କହିଲା, 'ଇଏ ମୋର ସର୍ବାସାନ ପୁଅ।'

''କଥା ହେଉଛି, ଗୋଟିଏ ଯେତେବେଳେ ଥାଏ, ତାକୁ ତୁମେ ବଡ଼ କହିପାର, ସାନ କହିପାର, ମଝିଆ ବି କହିପାର। ଏହିଭଳି ବିବେକ ସମ୍ପନ୍ନ ପୁରୁଷମାନେ ଆଦିରେ ଏକବ୍ରହ୍ମକୁ ମାନୁଥିଲେ। ତାକୁ ଦ୍ରଷ୍ଟା କୁହାଯାଇପାରେ, ଦୃଶ୍ୟ ବି କୁହାଯାଇପାରେ। ବାସ୍ତବରେ ତାହା କିନ୍ତୁ ହେଉଛି ଏକ। ପରବର୍ତ୍ତୀ କାଳରେ ସେହି କଥା ବାଣୀ ଓ ମନରେ ଅଗୋଚର ନିର୍ବିକଳ୍ପ ସତ୍ୟ ସ୍ୱରୂପ ବ୍ରହ୍ମ ଦୃଶ୍ୟ ଆଉ ଦ୍ରଷ୍ଟା ରୂପରେ ଦୁଇ ପ୍ରକାର ହୋଇଗଲା। ଦୃଶ୍ୟର ସଂଜ୍ଞା ହୋଇଗଲା ମାୟା, ଆଉ ଦ୍ରଷ୍ଟାକୁ ବ୍ରହ୍ମ କୁହାଗଲା। ସାଂଖ୍ୟ ଶବ୍ଦରେ ସେମାନଙ୍କ ମଧ୍ୟରୁ ମାୟାକୁ ପ୍ରକୃତି କୁହନ୍ତି, ଆଉ ଦ୍ୱିତୀୟରେ ଜ୍ଞାନ ସ୍ୱରୂପ ଯେଉଁ ଦ୍ରଷ୍ଟା, ତାକୁ ପୁରୁଷ ସଂଜ୍ଞା ଦିଆ ହୋଇଥାଏ। ଏବେ ଏକରେ ଅଦ୍ୱୟ ନିର୍ବିକଳ୍ପ ପ୍ରକୃତି ଆଉ ଦୁଇରେ ପୁରୁଷ–

ଏପରି ଦୁଇ ହେଲେ। ଏହି ପ୍ରକୃତି ଦୁଇ ପ୍ରକାରର– କାର୍ଯ୍ୟରୂପା ପ୍ରକୃତି, କାରଣରୂପା ପ୍ରକୃତି। ମୂଳ ପ୍ରକୃତି ହେଉଛି କାରଣରୂପା ତାହାର ବିକୃତ ହେଉଛି କାର୍ଯ୍ୟରୂପା। ଗୁଣର ସାମ୍ୟାବସ୍ଥାର ନାମ ପ୍ରକୃତି। ଯେ ପର୍ଯ୍ୟନ୍ତ ଦଣ୍ଡିରେ ମାପି ତିନିଗୁଣର ପରିମାଣ ସମାନ ଥାଏ, ସେ ପର୍ଯ୍ୟନ୍ତ ତାହା ସୃଷ୍ଟି କରିବା ପାଇଁ ସମର୍ଥ ହୁଏ ନାହିଁ। ବିଷମତାରେ ହିଁ ସୃଷ୍ଟି ହୁଏ। ସମତାରେ ସୃଷ୍ଟି ହୁଏ ନାହିଁ। ମାତା-ପିତାଙ୍କର ରଜ ଆଉ ବୀର୍ଯ୍ୟ ବିଷମ ହେଲେ ସନ୍ତାନ ଉତ୍ପନ୍ନ ହୋଇଥାଏ। ବୀର୍ଯ୍ୟ ଅଧିକ ହେଲେ ପୁତ୍ର ହୁଏ, ରଜ ଅଧିକ ହେଲେ କନ୍ୟା ହୁଏ। ଯଦି ଉଭୟ ସମାନ ହୁଏ ତେବେ ସନ୍ତାନ ଉତ୍ପନ୍ନ ହୁଏ ନାହିଁ। ସେହିଭଳି ଗୁଣ ସମାନ ରହିଲେ ପ୍ରକୃତିର ବିକୃତି ହୋଇପାରେ ନାହିଁ। ସୃଷ୍ଟି ଆରମ୍ଭ କରିବା କଥା। ଏଣୁ ମୁଁ ଏହି ପ୍ରକୃତିକୁ କ୍ଷୁବ୍ଧ କଲି।''

ଉଦ୍ଧବ ପଚାରିଲେ, ''ଆପଣ ପ୍ରକୃତିକୁ କାହିଁକି କ୍ଷୁବ୍ଧ କଲେ ପ୍ରଭୁ ?''

ଭଗବାନ୍ ଉଦ୍ଧବଙ୍କଠାରୁ ଏପରି କଥା ଶୁଣି ହସିଲେ ଏବଂ କହିଲେ, ''ପୁରୁଷଙ୍କୁ ଦେଖି ପ୍ରକୃତି କ୍ଷୁବ୍ଧ ହୋଇଯାଏ ଭାଇ! ଢାଞ୍ଚା ପରା ସେହିଭଳି। ଜନନୋନ୍ମୁଖ ଜୀବଙ୍କ ଅଦୃଷ୍ଟାନୁସାରେ ମୋ ପ୍ରେରଣାରେ ପ୍ରକୃତିରେ କ୍ଷୋଭ ହୋଇ ହିଁ ଯାଏ। ମାତା ପିତା ଯେଉଁ ଅନ୍ନ ପାଆନ୍ତି, ଜଳ ପିଅନ୍ତି ସେହି ସବୁଥିରେ ଜୀବନ ଥାଏ। ତହିଁରେ ରଜ-ବୀର୍ଯ୍ୟର କୀଟାଣୁ ହୁଅନ୍ତି। ସେମାନେ ନିଜର ଭୋଗ ଭୋଗକରିବା ପାଇଁ ବ୍ୟଗ୍ର ହୁଅନ୍ତି। ଏଣୁ ପୁରୁଷର ପ୍ରେରଣାରେ ପ୍ରକୃତିରେ କ୍ଷୋଭ ହୁଏ। ସନ୍ତାନ ଉତ୍ପନ୍ନ ହୁଅନ୍ତି। ସୃଷ୍ଟି ବଢ଼େ।''

ଉଦ୍ଧବ ପଚାରିଲେ, ''ସୃଷ୍ଟିର ଆରମ୍ଭରେ ଜୀବ ଆସିଲା କୁଆଡୁ? ସେମାନେ **ଏ ପର୍ଯ୍ୟନ୍ତ ତ କୌଣସି କର୍ମ କରି ନଥାନ୍ତି, ତେବେ ସେମାନେ ଏହି କର୍ମର ଫଳ ଭୋଗ କରିବା ପାଇଁ ବ୍ୟଗ୍ର ହେଲେ କିପରି? ସେମାନଙ୍କର ଅଦୃଷ୍ଟ ତିଆରି ହେଲା କିପରି ?''**

ଭଗବାନ୍ କହିଲେ, ''ହେ ଉଦ୍ଧବ! ଏହି ସଂସାର ପ୍ରବାହ ରୂପରେ ନିତ୍ୟ। ଏହି ବିଷୟରେ ସୃଷ୍ଟି ଆରମ୍ଭରେ ଅମୁକ ତିଥି ହୋଇଥିଲା ବୋଲି କହି ହେବ ନାହିଁ। ଅମୁକ ଦିନ ଏହାର ଆଦି ଥିଲା ବୋଲି କହିହେବ ନାହିଁ। କାରଣ ଏହାର ଆଦି ହିଁ ନାହିଁ। ଏହା ଅନାଦି। ପୂର୍ବ କଳ୍ପର ଜୀବଙ୍କର ଅଦୃଷ୍ଟ ରହିଥାଏ। ପ୍ରଳୟ ପରେ ପୁଣି ଯେତେବେଳେ ସୃଷ୍ଟି ଆରମ୍ଭ ହେବାର କାଳ ଆସିଯାଏ, ଜୀବ ଭୋଗ କରିବା ପାଇଁ କାଳର ପ୍ରତୀକ୍ଷା କରିଥାନ୍ତି; କାଳ ଆସିଯିବା ପରେ ମୋର ପ୍ରେରଣାରେ ପ୍ରକୃତିରେ ବିକୃତି ହୋଇଯାଏ। ବର୍ତ୍ତମାନ ସୁଦ୍ଧା ତିନିଗୁଣ ଏକାଠି ହୋଇ ଯେଉଁ ଏକ ହୋଇ ରହିଥିଲେ, ଏବେ ଯେତେବେଳେ ସେଥିରେ ବିଷମତା ହେଲା, ସେତେବେଳେ ସତ୍ତ୍ୱ, ରଜ, ତମ ପୃଥକ୍ ପୃଥକ୍ ହୋଇଗଲା। ମୋର ଇଚ୍ଛା ଶକ୍ତି ପ୍ରକୃତିରେ ଯେତେବେଳେ ପ୍ରବିଷ୍ଟ ହୋଇଗଲା, ସେତେବେଳେ ତାହାର ବିକୃତି ହେଲା; ଅର୍ଥାତ୍ ତିନିଗୁଣ ହୋଇଗଲା। ସେହି ତିନି ଗୁଣରୁ କ୍ରିୟା-ଶକ୍ତିସଂପନ୍ନ ସୂତ୍ର ଉତ୍ପନ୍ନ ହେଲା।''

ଉଦ୍ଧବ କହିଲେ, ''ପ୍ରଭୁ! ସୂତ୍ର କାହାକୁ କୁହନ୍ତି ?''

ଭଗବାନ୍ କହିଲେ, ''ଯିଏ ବାନ୍ଧେ ଆଉ ଉତ୍ପନ୍ନ କରେ।''

ଉଦ୍ଧବ ପଚାରିଲେ, ''ତାହାହେଲେ କ'ଣ ଭଗବନ୍! ଏହା ମହତତ୍ତ୍ୱଠୁ ପୃଥକ୍ କୌଣସି ସୂତ୍ର ତତ୍ତ୍ୱ !''

ଭଗବାନ୍ କହିଲେ, ''ନା। ଏ ଦୁହେଁ ଏକ। ଜ୍ଞାନଶକ୍ତି ଆଉ କ୍ରିୟାଶକ୍ତି ଦୁହେଁ ମିଶି ମହତତ୍ତ୍ୱ କୁହାଯାଇଥାଏ। ଏଣୁ ପ୍ରକୃତିର ପ୍ରଥମ ବିକୃତିର ସଂଜ୍ଞା ହୋଇଥାଏ ମହତତ୍ତ୍ୱ। ଯେପରି ମାଳାର ଦାନାଗୁଡ଼ିକୁ ସୂତ୍ର ଗୋଟିକରେ ସ୍ଥିର ରଖେ, ସେହିଭଳି ହିଁ ସୂତ୍ରାତ୍ମା ସକଳ ତତ୍ତ୍ୱକୁ ଗୋଟିକରେ ଏକାଠି କରି ରଖିଥାଏ। ସବୁଠାରୁ ମହାନ୍ ତତ୍ତ୍ୱ ହୋଇଥିବାରୁ ଏହାକୁ ମହତତ୍ତ୍ୱ କୁହାଯାଏ।''

ଉଦ୍ଧବ ପଚାରିଲେ, ''ଭଗବନ୍! ପ୍ରକୃତିର ପ୍ରଥମ ବିକୃତି ତ ମହାନ୍ ବା ମହତତ୍ତ୍ୱ ହେଲା, ସେହି ବିକାରଯୁକ୍ତ ମହତତ୍ତ୍ୱରୁ କ'ଣ ଉତ୍ପନ୍ନ ହେଲା ?''

ଭଗବାନ୍ କହିଲେ, ''ତହିଁରୁ ଉତ୍ପନ୍ନ ହେଲା ଅହଙ୍କାର।''

ଉଦ୍ଧବ ପଚାରିଲେ, **''ଅହଙ୍କାରର କାମ କ'ଣ ପ୍ରଭୁ !''**

ଭଗବାନ୍ କହିଲେ, ''ଅହଙ୍କାରର କାମ ହେଉଛି ଜୀବଙ୍କୁ ମୋହରେ ପକାଇବା। ଯେ ପର୍ଯ୍ୟନ୍ତ ଦେହାଦିରେ ଅହଂଭାବ ନ ହୋଇଥାଏ, ସେ ପର୍ଯ୍ୟନ୍ତ ମୋହ ହୋଇପାରେ ନାହିଁ। ଅହଂକାର ହେଉଛି ସମସ୍ତ ଭେଦଭାବର ଜନକ। ତାହା ତିନି ପ୍ରକାରର। ସାତ୍ତ୍ୱିକ, ଅହଙ୍କାର, ରାଜସ ଅହଂକାର ଆଉ ତାମସ ଅହଂକାର। ଏହି ତିନି ରୂପରେ ଏହା ସୃଷ୍ଟି ଉତ୍ପନ୍ନ କଲା।''

ଉଦ୍ଧବ ପଚାରିଲେ, **''କେଉଁ ଅହଙ୍କାରରୁ କି କି ବସ୍ତୁ ଉତ୍ପନ୍ନ ହେଲା ?''**

ଭଗବାନ୍ କହିଲେ, ''ସାତ୍ତ୍ୱିକ ଅହଙ୍କାରରୁ ଦଶ ଇନ୍ଦ୍ରିୟ ଓ ଏକାଦଶ ମନର ଏକାଦଶ ଅଧିଷ୍ଠାତୃ ଦେବ ଉତ୍ପନ୍ନ ହେଲେ। ସେମାନଙ୍କର ନାମ ବାୟୁ, ସୂର୍ଯ୍ୟ, ବରୁଣ, ଅଶ୍ୱିନୀକୁମାର, ଇନ୍ଦ୍ର, ବିଷ୍ଣୁ, ପ୍ରଜାପତି, ନୈରତ, ଅଗ୍ନି ଆଉ ଚନ୍ଦ୍ର। ରାଜସ ଅହଂକାରରେ ଦଶ ଇନ୍ଦ୍ରିୟ; ଏବଂ ତାମସ ଅହଙ୍କାରରୁ ପଞ୍ଚତନ୍ମାତ୍ରା ଓ ତହିଁରୁ ପଞ୍ଚଭୂତ ଉତ୍ପନ୍ନ ହେଲା।

ଉଦ୍ଧବ ପଚାରିଲେ, ''ଭଗବନ୍! ଏହି ଅହଙ୍କାର ଜଡ଼ ନା ଚୈତନ୍ୟ।''

ଭଗବାନ୍ କହିଲେ, ''ଚୈତନ୍ୟର ଆଭାସ (ସୂଚନା) ହେଲେ ଏଥିରେ ଚୈତନ୍ୟତା ପ୍ରକାଶ ପାଏ। କିନ୍ତୁ ଏହା ଜଡ଼। ଏଥିଯୋଗୁ ଏହାକୁ ଚିଦ୍ ଅଚିଦ୍ ଜଡ଼-ଚେତନମୟ କୁହନ୍ତି। ଏହା କେବଳ ଜଡ଼ ନୁହେଁ କି ଶୁଦ୍ଧ ଚୈତନ୍ୟ ମଧ୍ୟ ନୁହେଁ। ଏହାର ମିଶାମିଶି ଗୋଳିଆଘଣ୍ଟା ହୋଇଥାଏ।''

ଉଦ୍ଧବ ପଚାରିଲେ, ''ଏ ସବୁ ଉତ୍ପନ୍ନ ହୋଇ କ'ଣ କଲେ ?''

ଭଗବାନ୍ କହିଲେ, ''ଏ ସବୁ ପୃଥକ୍ ପୃଥକ୍ ଥିଲେ। ଯେ ପର୍ଯ୍ୟନ୍ତ ସୂତ୍ର ପୃଥକ୍ ପୃଥକ୍ ରହିଥାଏ ସେ ପର୍ଯ୍ୟନ୍ତ ସେମାନେ କିଛି ବି କରିବାକୁ ସମର୍ଥ ହୋଇ ପାରି ନଥାନ୍ତି। ଗୋଟିଏ ସାମାନ୍ୟ ଛେଳି ବି ସେମାନଙ୍କୁ ଭାଙ୍ଗିଦେଇ ପାରେ। ଯେତେବେଳେ ଅନେକ ସୂତ୍ର ପରସ୍ପର ସହିତ ମିଶାମିଶି ହୋଇଯାଆନ୍ତି, ସେତେବେଳେ ମତ୍ତହସ୍ତୀକୁ ବି ଆୟତ୍ତ କରି ପାରନ୍ତି। ସେତେବେଳେ ସେମାନଙ୍କର ମହାନ୍ ଶକ୍ତି ହୋଇଯାଏ। କିନ୍ତୁ ସେମାନଙ୍କୁ ମିଶାଇବା ପାଇଁ, ଯୋଗକରିବା ପାଇଁ, ପରସ୍ପରକୁ ଏକାଠି ସଂଶ୍ଳିଷ୍ଟ କରିଦେବା ପାଇଁ କେହି ଜଣେ ଶକ୍ତିଶାଳୀ ଲୋକର ଆବଶ୍ୟକତା ଥାଏ। ଏଣୁ ମୋ ଦ୍ୱାରା ପ୍ରେରିତ ହୋଇ, ଯେତେ ସବୁ ଜଗତରେ ଉତ୍ପନ୍ନ ହୋଇପାରିବା କାରଣ ତତ୍ତ୍ୱ ଉତ୍ପନ୍ନ ହୋଇଥିଲେ, ଏ ସମସ୍ତ ପରସ୍ପର

ମିଶି ମୋର ଆଶ୍ରୟ ରୂପ ଏହି ଅଣ୍ଡ ତିଆରି କଲେ। ଏହି ଅଣ୍ଡ ଯେତେବେଳେ ଜୀବନ ରୂପେ ଜଳରେ ସ୍ଥିତ ହେଲା, ସେତେବେଳେ ମୁଁ ସେହି ଅଣ୍ଡରେ ବିରାଜମାନ କରିଗଲି। ମୁଁ ଏହି ଜଗତର ସମଷ୍ଟିରୂପରେ ଅଣ୍ଡରେ ଯେତେବେଳେ ପ୍ରବେଶ କରିଗଲି, ସେତେବେଳେ ମୋ ନାଭିରୁ ଏକ କମଳ ଉତ୍ପନ୍ନ ହେଲା। ତୁମେ ପଚାରିପାର, ସେହି କମଳଟି କ'ଣ ? ସେହି କମଳଟି ହେଉଛି ସଂପୂର୍ଣ୍ଣ ଚରାଚର ବିଶ୍ୱ। ମୁଁ ଦେଖିଲି, ସେହି କମଳ ଉପରେ ଜଣେ ଚାରିମୁଣ୍ଡିଆ ଦେବତା ବସିଛନ୍ତି। ସେ ସ୍ୱତଃ ଉତ୍ପନ୍ନ ହୋଇଥିଲା। ତେଣୁ ତାର ନାମ ହେଲା 'ସ୍ୱୟମ୍ଭୂ'। ସେ ଜନ୍ମ ହୋଇ ନଥିବାରୁ ତାଙ୍କୁ 'ଅଜ' କୁହାଗଲା। ତଥା ସେ ବିଶ୍ୱକୁ ବ୍ୟାପୀ ରହିଥିବାରୁ ତାଙ୍କର 'ବ୍ରହ୍ମା' ସଂଜ୍ଞା ବି ହୋଇଗଲା।

ଉଦ୍ଧବ ପଚାରିଲେ, **''ଭଗବନ୍ ! ସେହି ଚତୁର୍ମୁଖ ବ୍ରହ୍ମା କ'ଣ କଲେ ?''**

ଭଗବାନ୍ କହିଲେ, ''ସେ ମୋ ପ୍ରେରଣାରେ ତପ କଲେ। ଏହାପରେ ମୋ ଅନୁଗ୍ରହରେ ରଜୋଗୁଣ ଦ୍ୱାରା ଲୋକପାଳଙ୍କ ସହିତ ତ୍ରିଭୁବନର ରଚନା କଲେ— ଯାହାଙ୍କୁ ଭୂଃ, ଭୁବଃ ଓ ସ୍ୱଃ ତଥା ପୃଥ୍ୱୀ, ଅନ୍ତରିକ୍ଷ ଆଉ ସ୍ୱର୍ଗ କୁହାଯାଏ। ସେହି ଅଣ୍ଡ ମଧ୍ୟସ୍ଥାନରେ ଦୁଇଭାଗ ହୋଇଗଲା। ତଳ ଭାଗରେ ପୃଥ୍ୱୀ ଓ ତା' ଭିତର, ଉପର ଭାଗରେ ସ୍ୱର୍ଗାଦିଲୋକ ଏବଂ ମଧ୍ୟାଂଶର ଯେଉଁ ଅବକାଶ ରହିଲା ତହିଁରେ ଭୁବର୍ଲୋକ ହେଲା। ପୃଥିବୀ ଉପରେ ମଣିଷ ଆଦି ପ୍ରାଣୀ ରହିବାରେ ଲାଗିଲେ। ଭୁବର୍ଲୋକରେ ବାୟୁର ଆଧାରରେ ରହୁଥିବା ଭୂତ, ପ୍ରେତ ପିଶାଚ ଆଦି ରହିବାରେ ଲାଗିଲେ। ସ୍ୱର୍ଗରେ ଦେବଗଣ ତଥା ସ୍ୱର୍ଗର ଉପର ମହାର୍ଲୋକରେ ସିଦ୍ଧ-ମହର୍ଷିମାନେ ରହିବାରେ ଲାଗିଲେ। ଜନଲୋକରେ ଊର୍ଦ୍ଧ୍ୱରେ ବ୍ରହ୍ମଚାରୀଗଣ, ତପଲୋକରେ ତପସ୍ୱୀ ବାନପ୍ରସ୍ଥୀ ଆଦି ଏବଂ ସତ୍ୟଲୋକରେ ମହାନ୍ ପୁଣ୍ୟାତ୍ମା ତଥା ଜ୍ଞାନୀଜନ ନିବାସ କରିବାରେ ଲାଗିଲେ। ପୃଥିବୀର ତଳରେ ଥିବା ଅତଳ, ବିତଳ, ସୁତଳାଦି ବିବରଗୁଡ଼ିକରେ ନାଗ, ଅସୁର ଆଦିଙ୍କ ନିବାସସ୍ଥଳୀ ହୋଇଗଲା। ସ୍ୱର୍ଗାଦିଲୋକକୁ ଶୁଭକର୍ମ କରୁଥିବା ମହାପୁରୁଷମାନେ ଯାଆନ୍ତି। ଯେପରି ତ୍ରିବର୍ଗର ସବିଧି ଆଚରଣ କରୁଥିବା ମହର୍ଷିଗଣ ତଥା ଅବସର ପ୍ରାପ୍ତ ଇନ୍ଦ୍ର ତଥା ମନୁ ଆଦି ଅଧିକାରୀଗଣ ମହର୍ଲୋକକୁ ଯାଇଥାନ୍ତି। ଯୋଗ ସାଧନ କରୁଥିବା ଭଗବାନଙ୍କ ଜନ— ଊର୍ଦ୍ଧ୍ୱରେତା ବ୍ରହ୍ମଚାରୀଗଣ ଜନଲୋକକୁ ଯାଇ ଯୋଗାଭ୍ୟାସ କରନ୍ତି। ତପସ୍ୟାରେ ସବୁବେଳେ ପ୍ରବୃତ୍ତ ରହୁଥିବା ବନବାସୀ ବାନପ୍ରସ୍ଥୀ ତପଲୋକକୁ ଯାଇ ନିଜର ତପସ୍ୟା ପୂର୍ଣ୍ଣ କରନ୍ତି। ସନ୍ୟାସ ଧର୍ମର ଆଚରଣ କରୁଥିବା ଜ୍ଞାନୀ ସତ୍ୟଲୋକ ଅଥବା ବ୍ରହ୍ମଲୋକକୁ ଯାଆନ୍ତି।''

ଉଦ୍ଧବ ପଚାରିଲେ, ''ଭଗବନ୍ ! ଧର୍ମାନୁଷ୍ଠାନ, କର୍ମଯୋଗ, ଅଷ୍ଟାଙ୍ଗଯୋଗ, ତପସ୍ୟା ତଥା ସନ୍ନ୍ୟାସ ଦ୍ୱାରା ପାଉଥିବା ଲୋକ ସମ୍ବନ୍ଧରେ ତ ଆପଣ କହିଲେ, କିନ୍ତୁ ଯେଉଁମାନେ ଆପଣଙ୍କୁ ଅତି ଏକାନ୍ତ ଭାବରେ ସବୁବେଳେ ଉପାସନା କରୁଥାଆନ୍ତି, ଆପଣଙ୍କର ସେପରି ଅନନ୍ୟ ଭକ୍ତମାନେ କି ଭଳି ପ୍ରଗତି ପ୍ରାପ୍ତ ହେବେ ? ସେମାନଙ୍କୁ କେଉଁ ଲୋକ ମିଳିବ ?''

ଭଗବାନ୍ କହିଲେ, ''ଉଦ୍ଧବ ! ଏଇଟା କ'ଣ ପଚାରିବା କଥା ! ଲୋକର ପ୍ରାପ୍ତି ଭାବନା ଅନୁସାରେ ହୋଇଥାଏ। ଯେଉଁମାନଙ୍କର ଚିତ୍ତ ତପରେ ଲାଗିରହିଥାଏ ସେମାନଙ୍କୁ ତପଲୋକ ମିଳେ। ଯେଉଁମାନେ ସନ୍ୟାସ ରୂପ ସତ୍ୟର ଅନୁଷ୍ଠାନରେ ଲାଗିରହିଥାନ୍ତି ସେମାନଙ୍କୁ ସତ୍ୟଲୋକ ପ୍ରାପ୍ତହୁଏ। ଯେଉଁମାନେ ଅନନ୍ୟଭାବରେ ମୋର ଉପାସନା କରନ୍ତି, ଭକ୍ତି ଯୋଗ

ଦ୍ୱାରା ମୋର ହିଁ ଉପାସନା କରନ୍ତି, ସେମାନଙ୍କୁ ମୋର ପରମଧାମ ପ୍ରାପ୍ତ ହୁଏ। ମୋ ଭକ୍ତମାନେ ମୋତେ ହିଁ ପ୍ରାପ୍ତ ହୋଇଥାନ୍ତି।''

ଉଦ୍ଧବ ପଚାରିଲେ, ''ଭଗବନ୍! ଏହି ପ୍ରାଣୀ ଆପଣଙ୍କର ଚରଣାବିନ୍ଦକୁ ପରିତ୍ୟାଗ କରି ଅସାର ସଂସାର ସାଗରରେ ଏଣେ ତେଣେ ବୁଲୁଛନ୍ତି କାହିଁକି ?''

ଭଗବାନ୍ ହସି ହସି କହିଲେ, ''ଉଦ୍ଧବ! ଏ ସମସ୍ତ ହେଉଥାଏ ମୋର ହିଁ ପ୍ରେରଣାରେ। ମୋର ଗୋଟିଏ ରୂପ ହେଉଛି କାଳ। କାଳୟତୀତି କାଳ। ଏହା ସମସ୍ତଙ୍କର ହିସାବ ରଖେ। କାଳ ରୂପରେ ମୁଁ ହିଁ ଜଗତକୁ କର୍ମରେ ପ୍ରବୃତ୍ତ କରିଥାଏ। କର୍ମ କଳାପରେ ପଡ଼ିଥିବା ପ୍ରାଣୀ ସତ୍ୱ, ରଜ, ଆଉ ତମ ଏହି ଗୁଣଗୁଡ଼ିକର ପ୍ରବାହରେ କେତେବେଳେ ବୁଡେ, କେତେବେଳେ ପୁଣି ଭାସେ। ଅର୍ଥାତ୍ କେତେବେଳେ କେଉଁ ଯୋନିକୁ ଯାଏ ତ ଆଉ କେତେବେଳେ, ଆଉ ଏକ ଯୋନିକୁ। କେତେବେଳେ ଶୁଭକର୍ମ ହୋଇଗଲା ତ ଦେବତା ଆଦି ଉନ୍ନତ ଯୋନିକୁ ଚାଲିଯାଏ। କେତେବେଳେ ପାପ କର୍ମ ହୋଇଗଲା ତ ପଶୁ, ପକ୍ଷୀ, କୀଟ, ପତଙ୍ଗ ତଥା ନାରକୀୟ ଯୋନିକୁ ଯାଏ। ଏହି ଭଳି ଗୁଣ ପ୍ରବାହ ମୁଁ—କଳାମ୍ବା ଭଗବାନଙ୍କ ପ୍ରେରଣାରେ ଚାଲିବାରେ ଲାଗିଥାଏ। ଏ ସମସ୍ତ ଜଗତ ପ୍ରକୃତି ପୁରୁଷର ସଂଯୋଗରେ ହୋଇଛି। କ୍ଷୁଦ୍ରରୁ ଆହୁରି କ୍ଷୁଦ୍ର, ଯେପରି ପରମାଣୁ; ବଡ଼ରୁ ଅତିବଡ଼ ଯେପରି ମହତ୍ତତ୍ୱ, ପତଳାଠାରୁ ହେଲେ ପତଳା ଯେପରି ଆକାଶ, ସ୍ଥୂଳଠାରୁ ଆହୁରି ସ୍ଥୂଳ ଯେପରି ପୃଥିବୀ ପର୍ବତ ଆଦି— ଏ ସମସ୍ତ ପ୍ରକୃତି ପୁରୁଷ ଉଭୟର ମିଳନରେ ହୋଇଥାଏ। ଏହି ଦୁହିଁଙ୍କ ସଂଯୋଗ ବିନା କାହାରି ହେଲେ ଉତ୍ପତ୍ତି ସମ୍ଭବ ହୁଏ ନାହିଁ। କିନ୍ତୁ ତୁମକୁ ଏହିଯେଉଁ ଏତେ ପ୍ରପଞ୍ଚ ଦେଖାଯାଉଛି—ଏ ସମସ୍ତ ସତ୍ୟ ନୁହେଁ।''

ଉଦ୍ଧବ ପଚାରିଲେ, ''ତେବେ ହେ ପ୍ରଭୁ, ସତ୍ୟ କ'ଣ ?''

ଭଗବାନ୍ କହିଲେ, ''ଏ ସମସ୍ତରେ ସତ୍ୟ ହେଉଛି କେବଳ ଶୁଦ୍ଧ ବ୍ରହ୍ମରୂପରେ ମୁଁ ହିଁ ମୁଁ।''

ଉଦ୍ଧବ କହିଲେ, ''ପ୍ରଭୁ! ଆପଣ ତ ନିଜେ କହିଛନ୍ତି ଯେ କାଳରୂପରେ ମୁଁ ହିଁ ପ୍ରେରଣା କରୁଛି; ପ୍ରକୃତିର ସଂଯୋଗରେ ଏ ସବୁ ହେଉଛି, ଆପଣ ତ ପୁରୁଷ, କାଳ ଆଉ ପ୍ରକୃତି ବି ସତ୍ୟ ହେବା ଉଚିତ।''

ଭଗବାନ୍ ଗମ୍ଭୀର ହୋଇ କହିଲେ, ''ଏହି ବିଷୟକୁ ତୁମେ ଉତ୍ତମରୂପେ ବିଚାର କର। ଗୋଟିଏ ସିଦ୍ଧାନ୍ତ **ଯେଉଁ ପଦାର୍ଥ ଆଦ୍ୟରେ ଥାଏ ଓ ସବାଶେଷରୁ ଅବଶେଷାଂଶ ରୂପେ ରହେ ତାହା ହେଉଛି ସତ୍ୟ।** ଅବଶ୍ୟ ଏହି ପଦାର୍ଥ ମଧ୍ୟାଂଶ, ମଝି ସମୟରେ ବି ଥାଏ। ହେଲେ ମଝିରେ ମଝିରେ ଏହି ଯେଉଁ ନାମ ଆଉ ରୂପ ପ୍ରସିଦ୍ଧି ହୋଇଯାଏ, ସେ ସବୁ ହେଉଛି ମିଥ୍ୟା। ଯେପରି ଚିନିର ହାତୀ, ଘୋଡ଼ା, ମୂଷା ଆଦି ଖେଳନାଗୁଡ଼ିକୁ ଭାଙ୍ଗିଦେଲେ ପୁଣି ଚିନି। ପ୍ରଥମରୁ ତାହା ଚିନି ଥିଲା, ପରିଶେଷରେ ଖେଳନାଗୁଡ଼ିକ ଭଙ୍ଗା ହୋଇଯିବା ପରେ ତାହା ପୁଣି ଚିନି ହୋଇଗଲା। ମଝିରେ ଘୋଡ଼ା ହାତୀ ନାମଧେୟ ଚିନିର ଖେଳଣା ଗୁଡ଼ିଏ ରୂପ ନେଇଥିଲା– ସେତେବେଳେ ବି ଚିନି ଥିଲା। ଅର୍ଥାତ୍ ସେତେବେଳେ ବି ଚିନିର ସତ୍ତା ବିଦ୍ୟମାନ ଥିଲା। ମଝିରେ ତା'ର ଯେଉଁ ନାମ, ରୂପ ଆଦିରେ ପ୍ରସିଦ୍ଧ ହେଲା, ତାହା ଥିଲା ମିଥ୍ୟା। ଏକ ମାତ୍ର ଚିନି ହେଉଛି ସତ୍ୟ। ସେହିଭଳି ପ୍ରଥମେ ଥିଲା

ସୁନା। ତହିଁରେ ନାନା ପ୍ରକାର ଅଳଙ୍କାର ତିଆରି ହେଲା। ଅଳଙ୍କାର ହୋଇଯିବା ପରେ ତାକୁ ଆଉ ସୁନା କେହି କହିଲେ ନାହିଁ। ହାର, ମୁଦି, କଙ୍କଣ, କାନଫୁଲ ଆଦିରେ ତାହା ନିର୍ମିତ ହେଲା। ସେଗୁଡ଼ିକ ପୁଣି ଭଙ୍ଗା ହୋଇ ଅଳଙ୍କାରଗୁଡ଼ିକୁ ପୁଣି ସୁନା କୁହାଗଲା। କିନ୍ତୁ ଏ ଗୁଡ଼ିକରେ ସୁବର୍ଣ୍ଣର ସତ୍ତା ବିଲୁପ୍ତ ନଥିଲା। ସେତେବେଳେ ବି ତାହା ସୁନା ଥିଲା। ଏଥିରୁ ଜଣାଗଲା ଯେ ତିନି ସମୟରେ ସମାନ ରୂପରେ ରହିଥିବା ସୁବର୍ଣ୍ଣ ହେଉଛି ସତ୍ୟ। ମଝିରେ ଅଳଙ୍କାରାଦିରେ ଯେଉଁ ସବୁ ରୂପ ହେଲା ତାହା ମିଥ୍ୟା। ତୃତୀୟ ଉଦାହରଣ ଦେଖାଯାଉ—

"ମାଟି। ମାଟି ପ୍ରଥମରୁ ହିଁ ମାଟି ଥାଏ। ସେଥିରେ ସରା, ମାଠିଆ, ମୃଦଙ୍ଗ ଆଦି ଯାବତ ପ୍ରକାରର ଜିନିଷ ତିଆରି ହୁଏ। ସେ ସବୁ ବ୍ୟବହାର ପରେ ଭାଙ୍ଗିଯାଏ। ସେତେବେଳେ ସେଗୁଡ଼ିକ ପୁଣି ମାଟି ହୋଇଯାଏ। ଯେତେବେଳେ ଆମେ ସରା, ମାଠିଆ ଆଦି କହୁଥିଲେ ମାଟିର ସତ୍ତା ତହିଁରେ ପୂର୍ଣ୍ଣମାତ୍ରାରେ ଥିଲା। ବସ୍ତୁତଃ ତିନି ସମୟରେ ମାଟି ହିଁ ମାଟି ଥିଲା। ଏଣୁ ମୃତ୍ତିକା ବା ମାଟି ହେଉଛି ସତ୍ୟ। ଆଉ ତାହାର ବିକାରଗୁଡ଼ିକ ହେଉଛି ମିଥ୍ୟା। ତାହା କେବଳ ବ୍ୟବହାର ନିମିତ୍ତ ଏପରି ନାମକରଣ ମାତ୍ର ହୋଇଥିଲା।

"ଜଣେ ଅଭିନେତାର ନାମ ଦେବଦତ୍ତ। ଅଭିନୟ ପ୍ରସଙ୍ଗରେ ତା'ର ନାମ ଅନେକ ହୋଇଥାଏ। ନାଟକଟି ସମାପ୍ତ ହୋଇଯିବା ପରେ ସେ ପୁଣି ଦେବଦତ୍ତ ହୋଇଯାଏ। ଅଭିନୟ ସମୟରେ ସେ ରାଜା ବା ନୌକର ଯାହା ହୋଇଥିଲା, କେବଳ ବ୍ୟବହାର ପାଇଁ ହୋଇଥିଲା। ହେଲେ ତା'ର ଦେବଦତ୍ତ ସଂଜ୍ଞାଟି କିନ୍ତୁ ଲୋପ ପାଇ ନଥିଲା। ଯଦିଓ ନାଟକର ସେ ନଳ ବା ଇନ୍ଦ୍ର ବୋଲି ଡକା ହେଉଥିଲା। ନାଟକରେ ଅଭିନୟ ସମୟର ନାମ ଓ ରୂପ ଥିଲା ମିଥ୍ୟା। ଚିହ୍ନିଥିବା ଲୋକମାନେ ତାକୁ ସେହି ଦେବଦତ୍ତ ବୋଲି ହିଁ ଜାଣିଥିଲେ।

ଉଦ୍ଧବ ପଚାରିଲେ, "ଭଗବନ୍! ମଝିରେ ଯେଉଁ ନାମ ରୂପ ହେଲା, ତହିଁରେ ସତ୍ତା ବି ତ ଥିଲା। ତାକୁ କାହିଁକି ଆମେ ସତ୍ୟ କହିବା ନାହିଁ?

ଭଗବାନ୍ କହିଲେ, "ତାକୁ ତୁମେ ନିଜେ ନିଜେ ଆପଣାଛାଏଁ ସତ୍ୟବୋଲି ଭାବିନେବ କିପରି? **ତ୍ରିକାଳରେ ଯାହା ଏକରସ ରହିଥାଏ ତାକୁ ହିଁ କେବଳ ସତ୍ୟ ସଂଜ୍ଞା ଦିଆହୁଏ।** କୁମ୍ଭାର ମାଟି ଖୋଳିଆଣେ। ତାକୁ ଚକଟେ। ଚକର ମଝିରେ ରଖି ଗୋଟିଏ ବାଡ଼ିରେ ଚକକୁ ଓ ମାଟିକୁ ଘୂରାଏ। ଆଉ ସରା ତିଆରି କରେ। ସରା ତ ହେଲା ତାହାର କାର୍ଯ୍ୟ। ଚକ, ବାଡ଼ି, ସୂତା ଆଦି ସରା ତିଆରିର ନିମିତ୍ତ ହେଲେ। ମାଟି ଉପାଦାନ ହେଉଛି କାରଣ। ସରାଟିଏ ହୋଇଯିବା ପରେ ତାହା ଚକରୁ, ବାଡ଼ିରୁ, ସୂତାରୁ ପୃଥକ୍ ହୋଇଗଲା। କାଦୁଅରେ ଯେଉଁ ପାଣି ଅଂଶ ଥିଲା ତାହା ବି ଶୁଖିଗଲା। କିନ୍ତୁ ମାଟି ଯେଉଁ ସରାର ଉପାଦାନ କାରଣ ଥିଲା, ତାହା ସରା ହୋଇଯିବା ପରେ ଯେମିତି ସେମିତି ତା' ସହିତ ହିଁ ରହିଥିଲା। ସରା ଭାଙ୍ଗିଗଲା; ସରାର ସରା-ପଣ ନଷ୍ଟ ହୋଇଗଲା। ପରିଶେଷରେ ତା'ର ସଂଜ୍ଞା ପୁଣି ମାଟି ହୋଇଗଲା। ମାଟିରୁ ପୁଣି ମାଟି ହେବା ପର୍ଯ୍ୟନ୍ତ ତାହାର ନାମ ରୂପ ତ ଅନେକ ହେଲା, ହେଲେ ମାଟି ମୁହୂର୍ତ୍ତକ ପାଇଁ ସୁଦ୍ଧା ତାକୁ ଛାଡ଼ି ନଥିଲା। ତେଣୁ ମାଟି ସତ୍ୟ ବୋଲି ସିଦ୍ଧ ହେଲା, ଅନ୍ୟ ସମସ୍ତ ମିଥ୍ୟା ହୋଇଗଲା। କାରଣ କୌଣସି ପରମ ଉପାଦାନକୁ ଆଶ୍ରୟ କରି କୌଣସି ଅନ୍ୟ କାର୍ଯ୍ୟରୂପ ଭାବକୁ ପ୍ରଥମ (ମୂଳ) ଉପାଦାନ ଯାହା ରହେ ତାହାହିଁ ସତ୍ୟ ବୋଲି କୁହାଯାଏ— ଅନ୍ୟ ସବୁ ମିଥ୍ୟା।"

ଉଦ୍ଧବ ପଚାରିଲେ, ''ତାହାହେଲେ ଏହି କାର୍ଯ୍ୟରୂପ ସଂସାରର ଉପାଦାନ-କାରଣ କ'ଣ ?''

ଭଗବାନ କହିଲେ, ''ଏହି ଦୃଶ୍ୟ ପ୍ରପଞ୍ଚ ରୂପେ କାର୍ଯ୍ୟର ଉପାଦାନ-କାରଣ ହେଉଛି ପ୍ରକୃତି, ଯେଉଁଭଳି ଉପାଦାନ କାରଣ ଦଳା ହୋଇଥିବା ମାଟି ପିଣ୍ଡ। ମାଟିର ଯେଉଁ ପିଣ୍ଡ ତିଆରି ହୋଇଥିଲା ତାହାର ପରମ କାରଣ ଥିଲା ମାଟିର ଖଣି, ଯେଉଁଠାରୁ ମାଟି ଅଣା ହୋଇଥିଲା। ତାହା ସେହି ମାଟି ପିଣ୍ଡର ବି ପରମ କାରଣ ହେଲା। ଠିକ୍ ସେହିଭଳି ପ୍ରକୃତିରେ ଅଧିଷ୍ଠାନ ହେଉଛନ୍ତି ପରମାତ୍ମା। ଯେଉଁଭଳି ମାଟିର ପିଣ୍ଡରେ ସରା ବା ମାଠିଆ କେଉଁଠାରୁ ଆଣି ରଖା ହୋଇ ନଥିଲା, ସରା ବା ମାଠିଆ ସେହିଥିରେ ପୂର୍ବରୁ ଥିଲା, କିନ୍ତୁ କୁମ୍ଭାର ତାକୁ ପ୍ରକଟ କରିଦେଲା। ଠିକ୍ ସେହିଭଳି ପ୍ରକୃତିରେ ଏହି ଦୃଶ୍ୟ ପ୍ରପଞ୍ଚ ପ୍ରଥମରୁ (ମୂଳରୁ) ହିଁ ନିହିତ ଥିଲା। ତାକୁ ମୋର ଅଂଶ ରୂପ କାଳ ପ୍ରକଟ କରିଦେଲା। କାଳ ଏହି ଜଗତର କର୍ତ୍ତା ନୁହେଁ; ହେଲେ ଅଭିବ୍ୟଞ୍ଜକ ମାତ୍ର। ଏବେ ପ୍ରକୃତି, ପୁରୁଷ ଓ କାଳ ଏହି ତିନିଜଣ ଜଗତର ମୁଖ୍ୟ କାରଣ ହେଲେ। ଏହି ତିନିଙ୍କର ଉପାଦାନ କାରଣ ଶୁଦ୍ଧ ବ୍ରହ୍ମସ୍ୱରୂପ ହେଉଛି ମୁଁ। ଏଣୁ ଜଗତ୍ ମିଥ୍ୟା, ଏକମାତ୍ର ଶୁଦ୍ଧବ୍ରହ୍ମ ମୁଁ ହେଉଛି ସତ୍ୟ।''

ଉଦ୍ଧବ ପଚାରିଲେ, **''ଭଗବନ୍! ଏହି ସମସ୍ତ ଦୃଶ୍ୟ ପ୍ରପଞ୍ଚ ଯେତେବେଳେ ମିଥ୍ୟା, ତେବେ ଅନାଦି ଆପଣ ଏହାକୁ କାହିଁକି କରୁଛନ୍ତି ?''**

ଭଗବାନ୍ କହିଲେ, ''ପ୍ରବାହ ରୂପରେ ଏହା ଅନାଦି। ଯେ ପର୍ଯ୍ୟନ୍ତ ଉତ୍ପନ୍ନ ହୋଇଥିବା ସଂସାରର ସ୍ଥିତି ଥିବ, ସେ ପର୍ଯ୍ୟନ୍ତ ଏହାର ପ୍ରଳୟ ହୋଇ ନଥିବ, ଆଉ ଯେ ପର୍ଯ୍ୟନ୍ତ ଏହାକୁ ପରମାତ୍ମା ଦେଖୁଥିବେ, ସେ ପର୍ଯ୍ୟନ୍ତ ଏହା ନିରବଚ୍ଛିନ୍ନ ଚାଲିଥିବ। ପିତା ପୁତ୍ରଙ୍କୁ ଉତ୍ପନ୍ନ କଲା, ପୁଣି ତା'ର ପୁଅ ପିତା ହୋଇଗଲା। ପରମ୍ପରା ଅନାଦି କାଳରୁ ଚାଲିଛି ଏବଂ ଅନନ୍ତ କାଳ ପର୍ଯ୍ୟନ୍ତ ବି ଚାଲିଥିବ।''

ଉଦ୍ଧବ ପଚାରିଲେ, ''ଏପରି ପିତା-ପୁତ୍ରଙ୍କ ପରମ୍ପରା କାହିଁକି ଚାଲିଛି ?''

ଭଗବାନ୍ କହିଲେ, ''ଜୀବକୃତ କର୍ମର ଫଳ ଭୋଗ କରିବା ପାଇଁ ଏହି ପରମ୍ପରା ଚାଲିଛି। କାଳ ଯେତେବେଳେ ଆସେ ସେତେବେଳେ ପ୍ରଳୟ ହୋଇଯାଏ, ସମସ୍ତ ତତ୍ତ୍ୱ ନିଜ ନିଜର କାରଣରେ ବିଲୀନ ହୋଇଯାଏ। ଏହି ସପ୍ତ ଭୁବନରେ ନାମ ରହେନାହିଁ। ଜଗତର ପଞ୍ଚଭୂତ ନିଜ ନିଜର ଜନକଙ୍କଠାରେ ଏକୀଭୂତ ହୋଇଯାଆନ୍ତି।''

ଉଦ୍ଧବ ପଚାରିଲେ, ''ଭଗବନ୍! ଆପଣ ଉତ୍ପତ୍ତିର କ୍ରମ କହିଲେ, ଏବେ କୃପା କରି ପ୍ରଳୟର କ୍ରମ କୁହନ୍ତୁ। ପ୍ରଳୟ ହୁଏ କିପରି ? ସମସ୍ତ ତତ୍ତ୍ୱ ନିଜ ନିଜର କାରଣରେ କିପରି ବିଲୀନ ହୁଅନ୍ତି ଓ ପରିଶେଷରେ ବଳକା ରହେ କ'ଣ ?''

ଏହା ଶୁଣି ଭଗବାନ୍ କହିଲେ, ''ହେ ଉଦ୍ଧବ! ତୁମକୁ ତ ମୁଁ କହି ସାରିଛି ଯେ ଯାହା ଆଦି ଓ ଅନ୍ତରେ ରହେ ତାହା ମଧ୍ୟସମୟରେ ବି ସବୁବେଳେ ଥାଏ, ଆଉ ତାହା ସତ୍ୟ। ଆଦିରେ ଏକମାତ୍ର ମୁଁ ଥିଲି। ମୋ ଠାରୁ ପ୍ରକୃତି ଓ ପୁରୁଷର ଉତ୍ପତ୍ତି ହେଲା। ପ୍ରଳୟ ଅନ୍ତରରେ ସମସ୍ତ ମୋଠାକୁ ଆସି ବିଲୀନ ହୋଇଯାଆନ୍ତି। ଏହି ବିଲୟନ କିପରି ହୁଏ ତାହା ମୁଁ ତୁମକୁ କହୁଛି।''

ମହାପ୍ରାଜ୍ଞ ସୂତ କହୁଛନ୍ତି, "ହେ ମୁନିଗଣ ! ଏବେ ଭଗବାନ୍ ଯେଉଁଭଳି ଭାବରେ ଉଦ୍ଧବଙ୍କୁ ପ୍ରଳୟର କ୍ରମ କହିଲେ, ମୁଁ ସେହି ପ୍ରସଙ୍ଗ ଆପଣମାନଙ୍କୁ କହୁଛି ଶୁଣନ୍ତୁ ।"

### ଛପ୍ପୟ

ସଲିଲ ମାଁହି ସୋ ରହ୍ୟୋ ବିରାଜ୍ୟୋ ତାମେ ହୌ ଜବ ।
ଭୟୋ ନାଭିତେ କମଲ ପ୍ରକଟ ଅଜ ଭୟେ ସ୍ୱୟଂ ତବ ॥
ତପ କରି ତ୍ରିଭୁବନ ରଚେ ଚତୁରଦଶ ଲୋକ ବନାୟେ ।
ମନୁଜ, ଭୂତ ସୁର, ଅସୁର ଲୋକ ସବ ମାହିଁ ବସାୟେ ॥
ପ୍ରକୃତି ପୁରୁଷ ତେ ହୋହିଁ ଜଗ କାଲ ପାଇ ହୋବେଁ ସକଲ ।
ରହୂଁ ବ୍ରହ୍ମ ହୌ ହୀ ସଦା, ମୋତେ ନହିଁ କୋଇ ପ୍ରବଲ ॥



# ସାଂଖ୍ୟ ବିଧିରେ ପ୍ରଳୟ

**ଏଷ ସାଂଖ୍ୟବିଧି ପ୍ରୋକ୍ତଃ ସଂଶୟଗ୍ରନ୍ଥିଭେଦନଃ ।**
**ପ୍ରତିଲୋମାନୁଲୋମାଭ୍ୟାଂ ପରାବରଦୃଶା ମୟା ॥** ★

[ଶ୍ରୀଭା.୧୧ସ୍କ.୨୪ଅ. ୨୯ ଶ୍ଲୋକ]

### ଛପ୍ପୟ

ପ୍ରଲୟ କାଲ ଜବ ହୋହି କାର୍ୟ କାରନ ମିଲି ଜାବେ ।
ଦେହ ଅନ୍ନ ମହଁ ମିଲୈ ବୀଜ ମହଁ ଅନ୍ନ ସମାବେ ॥
ବୀଜ ଭୂମି ମହଁ ଭୂମି ଗନ୍ଧ ଜୋ ଜଲ, ଜଲ ରସ ମହଁ ।
ୟୋ କ୍ରମ ତେ ସବ ଭୂତ ଲୀନ ହ୍ୱୈଜାବେ ନଭମହିଁ ॥
ଇନ୍ଦ୍ରିୟ, ମାତ୍ରା ଭୂତଗନ, ଅହଂକାର ମହଁ ହୋହିଁ ଲୟ ।
ଅହଂକାର ମହତତ୍ୱ ମହଁ, ପ୍ରକୃତି ମାଁହି ସୋଉ ବିଲୟ ॥

---



| | | | |
|---|---|---|---|
| ପ୍ରକୃତି-ସଂଯୋଗେ ଜଗତେ | । | ଅନ୍ତେ ପ୍ରକୃତି କ ଗ୍ରସ୍ତେ | ॥ |
| ସେ ଦୈବୀମାୟା କାଳରୂପୀ | । | ପ୍ରକୃତି ରୂପେ ଥାଇ ବ୍ୟାପୀ | ॥ |
| ଏଣୁ ସେ କାଳେ ସୃଷ୍ଟି କରେ | । | ଅନ୍ତେ ବ୍ରହ୍ମାଣ୍ଡ ସେ ସଂହାରେ | ॥ |
| ମୁହିଁ ମୋହର ଆଶ୍ରେ ଥାଇ | । | ଏଣୁ ନିରାଧାର ବୋଲାଇ | ॥ |
| ମୁହିଁ ସକଳ ଅବଶେଷେ | । | କେବଳ ଥାଇ ନିଜ ଅଂଶେ | ॥ |
| ଏହାକୁ ସାଂଖ୍ୟଯୋଗ କହି | । | ଏ ଜ୍ଞାନେ ସଂଶୟ ନ ଥାଇ | ॥ |
| ଚିତ୍ତ ସକଳ ହରେ ଦୋଷ | । | କେବଳ କୈବଲ୍ୟ ପ୍ରକାଶ | ॥ |

[ଭାଗବତ : ଜଗନ୍ନାଥ ଦାସ ; ୧୧ସ୍କନ୍ଧ. ୨୪ ଅ.]

ପ୍ରକୃତିର ନିୟମ ଏପରି ଯେ, ଯାହା ଯେଉଁଥିରୁ ଉତ୍ପନ୍ନ ହୋଇଥାଏ, ଅନ୍ତରେ ତାହା ସେହିଥିରେ ଲୀନ ହୋଇଯାଏ। ମାଠିଆ ମାଟିରୁ ଉତ୍ପନ୍ନ ହୁଏ। ଅନ୍ତରେ ତାହା ମାଟି ହିଁ ହୋଇଯାଏ। ଦେହ ପଞ୍ଚଭୂତରୁ ଉତ୍ପନ୍ନ ହୁଏ। ଅନ୍ତରେ ବୀଜ ହିଁ ରହିଯାଏ। ଅଳଙ୍କାର ସୁନାରୁ ତିଆରି ହୁଏ। ଅନ୍ତରେ ସେହି ସୁନାରେ ଲୀନ ହୋଇଯାଏ। ଯାହାର ଯେଉଁ କାରଣ ହୋଇଥାଏ, ସେ କାର୍ଯ୍ୟକୁ ତା' ସହିତ ମିଶାଇ ଦିଏ। ଯିଏ ସ୍ୱୟଂ କାହାର କାରଣ ନୁହେଁ, ସେ ହିଁ ସମସ୍ତଙ୍କର ଏକମାତ୍ର କାରଣ, ଅନ୍ତରେ ସମସ୍ତ ତାଙ୍କଠିରେ ମିଶିଯାଆନ୍ତି। ସେଥିପାଇଁ ଭଗବାନଙ୍କୁ "ଅଭିନ୍ନ ନିମିତ୍ତୋପାଦାନ" କାରଣ କୁହାଯାଏ। ତାହାକୁ ହିଁ ଉପାଦାନ-କାରଣକୁହାଯାଏ ଯିଏ ନିଜକୁ ନେଇ କାର୍ଯ୍ୟ କରିଦିଏ। ନିମିତ୍ତ-କାରଣ ତାକୁ କୁହାଯାଏ, ଯାହା ଏହି କାର୍ଯ୍ୟରେ ସହାୟତା କରିଥାଏ। ଯେପରି ମାଠିଆର ଉପାଦାନ ମାଟି। ମାଟିରେ ହିଁ ମାଠିଆ ହୋଇଥାଏ। ତାକୁ ତିଆରି କରିବା ପାଇଁ ଉପକରଣ ଆବଶ୍ୟକ। ପ୍ରଥମେ ତିଆରି କରିବା ବାଲା କୁମ୍ଭାର ଦରକାର, ଚକ, ସୂତା ଆଦିର ଆବଶ୍ୟକତା ବି ଅଛି। ଏମାନେ ସବୁ ହେଲେ ନିମିତ୍ତ କାରଣ। ମାଟି ନ ଥାଇ ଏ ସବୁ ଉପକରଣ ଥାଇ ସୁଦ୍ଧା ମାଠିଆ ହୋଇପାରିବ ନାହିଁ। ସେହିଭଳି ଯେତେ ମାଟି ଥିଲେ ସୁଦ୍ଧା, ଯେ ପର୍ଯ୍ୟନ୍ତ କୁମ୍ଭାର ଓ ଅନ୍ୟାନ୍ୟ ଉପକରଣ ତା' ପାଖରେ ଏକତ୍ର ନଥିବ, ମାଠିଆ କଦାପି ହୋଇପାରିବ ନାହିଁ। ଏଣୁ ଉପାଦାନ-କାରଣ ଆଉ ନିମିତ୍ତ-କାରଣ ଉଭୟ ଆବଶ୍ୟକ।

କିନ୍ତୁ ଭଗବାନ୍‌ଙ୍କ କ୍ଷେତ୍ରରେ ଏହା ପ୍ରଯୋଜ୍ୟ ନୁହେଁ। ଏହି ସଂସାରର ସେ ହିଁ ଉପାଦାନ-କାରଣ, ଆଉ ସେ ହିଁ ନିମିତ୍ତ-କାରଣ। ସେ ନିଜେ, କୌଣସି ବାହ୍ୟ ଉପକରଣର ବିନା ସହାୟତାରେ ସବୁ କରିପାରନ୍ତି। ଯେପରି କେଉଟ ଜାଲ ତିଆରି କରିବା ପାଇଁ ସୂତା ଦଉଡ଼ି ଆଦି ଉପକରଣ ଦରକାର କରେ ଜାଲ ବୁଣିବା ପାଇଁ ମାତ୍ର ବୁଢ଼ିଆଣୀ ଜାଲ କରିବା ପାଇଁ କୌଣସି ବାହ୍ୟ ଉପକରଣ ଦରକାର କରେନାହିଁ। ସେ ନିଜେ ନିଜ ମୁହଁରୁ ସୂତା ବାହାର କରି ଜାଲ ତିଆରି କରେ। ଯେତେ ସମୟ ପର୍ଯ୍ୟନ୍ତ ତା' ଇଚ୍ଛା ହୁଏ, ସେ ସେହି ଜାଲରେ ବିହାର କରେ, ଯେତେବେଳେ ମନବୋଧ ହୋଇଯାଏ ସେ ସେହି ଜାଲକୁ ନିଜ ପେଟ ଭିତରକୁ ଟାଣି, ଗିଳି ଆରାମରେ ଶୋଇଯାଏ। ସେ ନିଜେ ତା' ଜାଲର ହେଉଛି ଉପାଦାନ-କାରଣ, ଏବଂ ନିମିତ୍ତ କାରଣ ମଧ୍ୟ। ଠିକ୍ ଏହିଭଳି ଏହି ସଂପୂର୍ଣ୍ଣ ଜଗତ ହରିଙ୍କଠାରୁ ଉତ୍ପନ୍ନ ହୋଇଛି। ହରି ହିଁ ହେଉଛନ୍ତି ଜଗତ। ଜଗତ ହିଁ ହେଉଛି ହରି। ତାଙ୍କର ଯେତେବେଳେ ଇଚ୍ଛା ହୁଏ ସେତେବେଳେ ସ୍ୱୟଂ ବ୍ରହ୍ମା ହୋଇଯାଇ ସୃଷ୍ଟି କରନ୍ତି। ବିଷ୍ଣୁ ହୋଇ ସ୍ୱୟଂ କରିଥିବା ସୃଷ୍ଟିର ପାଳନ କରନ୍ତି, ଆଉ ଅନ୍ତରେ ରୁଦ୍ର ହୋଇ ତାକୁ ସଂହାର କରି ଅଦ୍ୱୟ ରୂପରେ ଶୋଇଯାଆନ୍ତି। ସୃଷ୍ଟି ହୁଏ ପ୍ରଳୟ ନିମନ୍ତେ। ସୂର୍ଯ୍ୟ ଉଦୟ ହୁଅନ୍ତି ଅସ୍ତ ହେବା ପାଇଁ। ଅସ୍ତ ହୁଅନ୍ତି ଉଦୟ ହେବା ପାଇଁ। ଯାହାର ସୃଷ୍ଟି, ସ୍ଥିତି, ଲୟର ଏପରି ଜ୍ଞାନ ହୋଇଯାଏ, ସେ ଆଉ କୌଣସି ଘଟଣାରେ ମୋହ ପ୍ରାପ୍ତ ହୁଏନାହିଁ।

ମହାପ୍ରାଜ୍ଞ ସୂତ କହୁଛନ୍ତି— ହେ ମୁନିଗଣ! ଉଦ୍ଧବ ଭଗବାନ୍‌ଙ୍କୁ ଯେତେବେଳେ ପ୍ରଳୟ ସମ୍ବନ୍ଧରେ ପଚାରିଲେ, ଭଗବାନ୍ କହିଲେ, "ହେ ଉଦ୍ଧବ! ଏ ସଂସାର ହେଉଛି ଉତ୍ପତ୍ତି ଓ ବିନାଶଶୀଳ। ବାରମ୍ବାର ଉତ୍ପନ୍ନ ହେଉଥାଏ ଓ ବାରମ୍ବାର ବିଲୀନ ହେଉଥାଏ। ଯାହାର ଉତ୍ପତ୍ତି ଥାଏ ତା'ର ବିନାଶ ଥାଏ। ଯାହାର ନାଶ ଥାଏ ତାହାର ଉତ୍ପତ୍ତି ଥାଏ। ଏହି ଯେଉଁ ଦୃଶ୍ୟ ପ୍ରପଞ୍ଚ ବିରାଟ୍ ରୂପରେ ଅବସ୍ଥିତ ତା'ର ଉତ୍ପତ୍ତି ଯେଉଁଭଳି ହୁଏ, ବିନାଶ ମଧ୍ୟ ସେହିଭଳି ହୁଏ। ସ୍ଥୂଳ ବସ୍ତୁ ସୂକ୍ଷ୍ମରେ ବିଲୀନ ହୋଇଯାଏ।"

ଉଦ୍ଧବ କହିଲେ, ''ସଂସାରରେ ସବୁଠାରୁ ସ୍ଥୂଳ ବସ୍ତୁ କ'ଣ ପ୍ରଭୁ ?''

ଭଗବାନ୍ କହିଲେ, ''ସବୁଠାରୁ ସ୍ଥୂଳ ବସ୍ତୁ ହେଉଛି ଦେହ। ସବୁଠାରୁ ସୂକ୍ଷ୍ମ ଓ ସର୍ବବ୍ୟାପକ ହେଉଛି ଆତ୍ମା। ଆତ୍ମାରୁ ହିଁ ଏହାସବୁ ଉତ୍ପନ୍ନ ହୋଇଛି। ଆତ୍ମାରେ ହିଁ ସମସ୍ତର ଉପସଂହାର ହୋଇଯାଏ।''

ଉଦ୍ଧବ ପଚାରିଲେ, ''ପ୍ରଭୁ! ଦେହ କାହାକୁ କୁହନ୍ତି ?''

ଭଗବାନ୍ କହିଲେ, ''ଦେହୀ ଯେଉଁଥିରେ ରହେ ତାହା ହେଉଛି ଦେହ। ଯେପରି ପର୍ବତର ଦେହ, ବୃକ୍ଷର ଦେହ, ହାତୀର ଦେହ, ମନୁଷ୍ୟର ଦେହ ତଥା ମୂଷା ଚୁଚୁନ୍ଦ୍ରା ଆଦିଙ୍କ ଦେହ। ସମସ୍ତ ଦେହ ଅନ୍ନରୁ ଉତ୍ପନ୍ନ।''

ଉଦ୍ଧବ ପଚାରିଲେ, ''ପ୍ରଭୁ! ଅନ୍ନ କ'ଣ ?''

ଭଗବାନ୍ କହିଲେ, ''ଅତୀତି ଅନ୍ନ। ଯାହା ଖିଆଯାଏ ତାହା ଅନ୍ନ। ସଂସାରରେ ଏପରି କୌଣସି ବସ୍ତୁ ନାହିଁ ଯାହା ଖିଆଯାଏ ନାହିଁ, ଯାହା କାହାର ନା କାହାର ଆହାର ହୋଇ ନଥାଏ।''

''ଏଣୁ ବେଦଜ୍ଞ ପଣ୍ଡିତମାନେ କୁହନ୍ତି– ସଂସାରରେ ଏପରି କୌଣସି ବସ୍ତୁ ନାହିଁ ଯାହା ଔଷଧ ନୁହେଁ। ଗୋରୁଙ୍କ ଅନ୍ନ ହେଉଛି ଘାସ। କୁକୁର-ଶୂକର ଆଦିଙ୍କ ଅନ୍ନ ହେଉଛି ବିଷ୍ଠା। ବଡ଼ ମାଛଙ୍କ ଅନ୍ନ ସାନମାଛ। ଅନ୍ନରୁ ଦେହର ଉତ୍ପତ୍ତି ହୁଏ। ଦେହ ହେଉଛି କାର୍ଯ୍ୟ, ଅନ୍ନ ହେଉଛି କାରଣ। ପ୍ରଳୟ ସମୟ ସମୁପସ୍ଥିତ ହୋଇଗଲେ ଦେହ ରୂପ କାର୍ଯ୍ୟ ନିଜର କାରଣ ରୂପ ଅନ୍ନରେ ବିଲୀନ ହୋଇଯାଏ। ପ୍ରଳୟକାଳୀନ ବର୍ଷା ହେବାଦ୍ୱାରା ଦେହ ଆଉ ରହେ ନାହିଁ। କେବଳ ଅନ୍ନ ରହିଯାଏ।''

ଉଦ୍ଧବ ପଚାରିଲେ, ''ପ୍ରଭୁ! ଅନ୍ନର ଉତ୍ପତ୍ତି କିପରି ହୁଏ ?

ଭଗବାନ୍ କହିଲେ, ''ଅନ୍ନ ଉତ୍ପନ୍ନ ହୁଏ ବୀଜରୁ। ବୀଜ ନଥିଲେ ଅନ୍ନର ଉତ୍ପତ୍ତି ହୋଇପାରିବ ନାହିଁ।''

ଉଦ୍ଧବ ପଚାରିଲେ, ''ପ୍ରଭୁ! ଅନ୍ନ ଓ ବୀଜରେ ଫରକ୍ କ'ଣ? ଆମେ ତ ଅନ୍ନକୁ ହିଁ ବୀଜ ବୋଲି ଜାଣିଛୁ।''

ଭଗବାନ୍ କହିଲେ, ''ଅନ୍ନର ଦାନା ଅଛି, ଯେପରି ଧାନ, ଗହମ ଆଦି। ତାହା ହିଁ ବୀଜ। ଏହାକୁ ବୁଣିଲେ ବୀଜ ଉତ୍ପନ୍ନ ହୁଏ। ଅନ୍ନ ଯଦି ବୀଜ ହୁଏ ତେବେ ଚାଉଳ ବୁଣିଲେ ଅଙ୍କୁର ହୁଏ ନାହିଁ କାହିଁକି ? ଚୋପା ଅଲଗା କରିଦେବାରୁ ତହିଁରେ ଅନ୍ନ ତ ରହିଥାଏ, ହେଲେ ତା'ର ବୀଜତ୍ୱ ନଷ୍ଟ ହୋଇଯାଏ। ଗହମ, ଚଣା ଆଦିକୁ ଚୋପା ଛଡ଼ାଇ ଦେଲେ ସେଥିରେ ଅନ୍ନ ରହେ ସତ, ମାତ୍ର ତା'ର ବୀଜତ୍ୱ ନିର୍ବଳ ହୋଇଯାଏ। ଏଣୁ ବୀଜର ଦେହ ହେଉଛି ଅନ୍ନ। ଅନ୍ନରେ ବୀଜ ରହିଥାଏ।

ଉଦ୍ଧବ ପଚାରିଲେ, ''ପ୍ରଭୁ! ବୀଜ କିପରି ଉତ୍ପନ୍ନ ହୁଏ ?''

ଭଗବାନ୍ କହିଲେ, ''ବୀଜ ଭୂମିରୁ ଉତ୍ପନ୍ନ ହୁଏ। ଭୂମି ନଥିଲେ ବୀଜ ଉତ୍ପନ୍ନ ହୋଇପାରିବ ନାହିଁ। ଭୂମି ସବୁପ୍ରକାର ବୀଜ ଉତ୍ପନ୍ନ କରେ, ଏବଂ ସମୟ ହୋଇଗଲେ ସମସ୍ତ ବୀଜକୁ

ନିଜ ମଧ୍ୟରେ ଲୀନ କରିଦିଏ, ଲୁଚାଇ ଦିଏ। ମହରାଜ ପୃଥୁ ଏହି ପୃଥିବୀକୁ ଘୋରତର କର୍ଷଣ କରିବା ପରେ ଲୁଚିରହିଥିବା ବୀଜ ବାହାରକୁ ବାହାରିଲା। କାରଣ ସେତେବେଳେ ପ୍ରଳୟ ସମୟ ନଥିଲା। ପ୍ରଳୟ ସମୟ ଆସିଲେ ସମସ୍ତ ବୀଜ ଭୂମି ନିଜର ଗନ୍ଧଗୁଣରେ ବିଲୀନ ହୋଇଯାଏ। ଗନ୍ଧର ଉତ୍ପତ୍ତି ଜଳରୁ ହୋଇଥାଏ। ଗନ୍ଧରୁ ହିଁ ପୃଥିବୀ ଉତ୍ପନ୍ନ ହୁଏ। ପୃଥିବୀର ତନ୍‌ମାତ୍ରା ହେଉଛି ଗନ୍ଧ। ଏଣୁ ପୃଥିବୀକୁ ଗନ୍ଧବତୀ ବୋଲି କୁହାଯାଏ। ପୃଥିବୀ ଯେତେବେଳେ ଗନ୍ଧକୁ ତ୍ୟାଗ କରିଦିଏ– ସ୍ୱୟଂ ଗନ୍ଧରେ ଲୀନ ହୋଇଯାଏ– ସେତେବେଳେ ପୃଥିବୀ ବିନା ଗନ୍ଧ ରହିପାରେ ନାହିଁ। ସେ ବି ନିଜର କାରଣ ଜଳରେ ବିଲୀନ ହୋଇଯାଏ।''

ଉଦ୍ଧବ ପଚାରିଲେ, ''ପ୍ରଭୁ! ଜଳର ଗୁଣ କ'ଣ ?''

ଭଗବାନ କହିଲେ, ''ଜଳର ଗୁଣ ହେଉଛି ରସ। ଜଳ ଯେତେବେଳେ ରସରେ ଲୀନ ହୋଇଯାଏ, ସେତେବେଳେ ଜଳ ବିନା ରସ ରହିପାରେ ନାହିଁ, ଯେପରି ସୂର୍ଯ୍ୟଙ୍କ ବିନା ପ୍ରଭା ରହିପାରେ ନାହିଁ। ଯେତେବେଳେ ରସ ନିଜର କାରଣ ତେଜରେ ମିଶିଯାଏ (ଲୀନ ହୋଇଯାଏ)। ତେଜ ବି ନିଜ କାରଣ, ରୂପରେ ଲୀନ ହୋଇଯାଏ। ତେଜ ଯେତେବେଳେ ରହେନାହିଁ, ସେତେବେଳେ ରୂପ କେଉଁଠୁ ଆସିବ? ଅନ୍ଧାରରେ କୌଣସି ରୂପ ଦେଖାଯାଏ ନାହିଁ। ରୂପ ତେଜ ବିନା ରହିପାରେ ନାହିଁ। ଏଣୁ ସେ ତା'ର ପିତା ବାୟୁର ଶରୀରରେ ଲୁଚିଯାଏ। ବାୟୁର ଗୁଣ ହେଉଛି ସ୍ପର୍ଶ। ଏଣୁ ବାୟୁ ସ୍ପର୍ଶରେ ବିଲୀନ ହୋଇଯାଏ। ବାୟୁ ବିନା ସ୍ପର୍ଶର ଅସ୍ତିତ୍ୱ ସମ୍ଭବ ନୁହେଁ। ଏଣୁ ସ୍ପର୍ଶ ଆକାଶରେ ବିଲୀନ ହୋଇଯାଏ। ଶବ୍ଦ ହେଉଛି ଦେହୀ, ଆକାଶ ହେଉଛି ଦେହ। ସର୍ବ ପ୍ରଥମେ ଶବ୍ଦ ହୋଇଥିଲା। ସେତେବେଳେ ଏହା ରହିବା ପାଇଁ ଆକାଶ ଉତ୍ପତ୍ତି ହେଲା। ଶବ୍ଦର ତେଣୁ ଘର ହେଉଛି ଆକାଶ। ଶବ୍ଦ ଆକାଶ ବିନା ରହିବ କେଉଁଠି, ଯେତେବେଳେ ଆକାଶ ନିଜର ତନ୍‌ମାତ୍ରା ଶବ୍ଦରେ ବିଲୀନ ହୋଇଗଲା। ଶବ୍ଦ ତନ୍‌ମାତ୍ରା ପଞ୍ଚଭୂତର ଜନକ ତାମସ ଅହଙ୍କାରରେ ଲୀନ ହୋଇଗଲା।''

ଉଦ୍ଧବ ପଚାରିଲେ, ''ପ୍ରଭୁ! ଇନ୍ଦ୍ରିୟମାନଙ୍କର କ'ଣ ହେଲା? ସେମାନେ ଗଲେ କୁଆଡ଼େ?''

''ଉଦ୍ଧବଙ୍କର ଏପରି ସରଳ ପ୍ରଶ୍ନ ଶୁଣି ଭଗବାନ୍ ହସିପକାଇଲେ ଏବଂ କହିଲେ, ''ଇନ୍ଦ୍ରିୟଙ୍କର ଆଉ କ'ଣ ହୁଅନ୍ତା, ଯାହା ଅନ୍ନ, ଜଳ ଆଉ ବାୟୁ ବିନା ପ୍ରାଣରେ ହୁଏ, ତାହା ହେଲା! ଇନ୍ଦ୍ରିୟଗୁଡ଼ିକ ଯଦି ବିଷୟ ନ ପାଇବେ ତେବେ ସେମାନେ ଆଉ କ'ଣ କରନ୍ତେ ଯେ! ମୀନ ରହିବା ପାଇଁ ଜଳ ନ ପାଇଲେ ସେ ତା'ର କାରଣରେ ଲୀନ ହୋଇଯିବ, ଅର୍ଥାତ୍ ମରିଯିବ। ଇନ୍ଦ୍ରିୟଗଣଙ୍କର ବିଷୟ ଶବ୍ଦ, ରୂପ, ରସ, ଗନ୍ଧ ଆଉ ସ୍ପର୍ଶ– ଯେତେବେଳେ ଏ ସମସ୍ତ ନଷ୍ଟ ହୋଇଗଲା, ପଞ୍ଚଭୂତ ଆଉ ରହିଲେ ନାହିଁ, ସେତେବେଳେ ସେମାନେ(ଇନ୍ଦ୍ରିୟମାନେ) ବି ନିଜର କାରଣଭୂତ ରାଜସ ଅହଙ୍କାରରେ ବିଲୀନ ହୋଇଗଲେ।''

ଉଦ୍ଧବ କହିଲେ, ''ତେବେ ଇନ୍ଦ୍ରିୟଙ୍କର ଅଧିଷ୍ଠାତୃ ଦେବ ତଥା ମନ ରହିଲେ କେଉଁଠି?''

ଭଗବାନ୍ କହିଲେ, ''ଆରେ ଭାଇ! ଯାହାର ଘରଟି ନଷ୍ଟ ହୋଇଯାଇଥାଏ ସେ ପୁଣି ରହିବ କେଉଁଠି? ଇନ୍ଦ୍ରିୟମାନେ ଯେତେବେଳେ ରହିଲେ ନାହିଁ ସେତେବେଳେ ସେମାନଙ୍କର ଅଧିଷ୍ଠାତୃ ଦେବ ତଥା ସେମାନଙ୍କର ମନ, ଏ ସମସ୍ତ ସେମାନଙ୍କର ପିତା ସାତ୍ତ୍ୱିକ ଅହଂକାରରେ ଲୀନ ହୋଇଗଲେ। ଏବେ କେବଳ ରହିଲା ତ୍ରିବିଧ ଅହଂକାର। ସେ ଦେଖିଲା, 'ସମସ୍ତେ

ଯେତେବେଳେ ନିଜ ନିଜର ଜନକଙ୍କ ଅଙ୍କରେ ଲୀନ ହେବାରେ ଲାଗିଛନ୍ତି, ମୁଁ ଏକାକୀ ରହି କରିବି କ'ଣ ? ଏପରି ଭାବନା-ଚିନ୍ତନ କରି ସମ୍ପୂର୍ଣ୍ଣ ଜଗତକୁ ମୋହିତ କରୁଥିବା ସେହି ଅହଂକାର ନିଜର କାରଣ ମହତ୍ତ୍ୱରେ ଲୀନ ହୋଇଗଲା । ମହତ୍ତ୍ୱରେ ଜ୍ଞାନଶକ୍ତି ଆଉ କ୍ରିୟାଶକ୍ତି ଦୁହେଁ ମିଶିକରି ଥାଆନ୍ତି । କ୍ରିୟା-ଶକ୍ତି-ପ୍ରଧାନ ସୂତ୍ରାତ୍ମା ଥିଲା, ଆଉ ଜ୍ଞାନ-ଶକ୍ତି-ପ୍ରଧାନ ହେଉଛି ମହତ୍ତ୍ୱ । ନିଜର ଜ୍ଞାନ ଆଉ କ୍ରିୟା ଦୁଇଶକ୍ତିଯୁକ୍ତ ସେହି ମହତ୍ତ୍ୱ ନିଜର କାରଣଭୂତ ତିନିଗୁଣରେ ଲୀନ ହୋଇଗଲା । ତିନିଗୁଣ ନିଜର ମାତା ପ୍ରକୃତିର କୋଳରେ ସମାନ ରୂପରେ ଆଶ୍ରୟ ନେଇଗଲେ, ଲୀନ ହୋଇଗଲେ । କାଳ ଆସିବା ପରେ ପ୍ରକୃତି ସେହି ଅବ୍ୟୟ କାଳରେ ବିଲୀନ ହୋଇଗଲା– ଯାହାର ଆସିବାରେ, ଅର୍ଥାତ୍ ଯିଏ ଆସିବାରୁ, ତହିଁରେ (ପ୍ରକୃତିରେ) କ୍ଷୋଭ ହୋଇଥିଲା, ଆଉ ସେ (ପ୍ରକୃତି) ପ୍ରସବୋନ୍ମୁଖୀ ହୋଇଥିଲା ।''

ଉଦ୍ଧବ ପଚାରିଲେ, ''ଭଗବନ୍ ! କାଳର ପର୍ଯ୍ୟବସାନ କେଉଁଥିରେ ହେଲା ?''

ଭଗବାନ୍ କହିଲେ, ''କାଳ ଜୀବରେ ଲୀନ ହୋଇଗଲା ; ଆଉ ଜୀବ ଲୀନ ହୋଇଗଲା ଆତ୍ମାରେ ।''

ଉଦ୍ଧବ ପଚାରିଲେ, **''ଜୀବ ଓ ଆତ୍ମା ମଧ୍ୟରେ ଅନ୍ତର (ପ୍ରଭେଦ) କ'ଣ ?''**

ଭଗବାନ୍ କହିଲେ, ''ଅନ୍ତର କ'ଣ !— ଅଂଶ ଓ ଅଂଶୀର ଅନ୍ତର । ପରମାତ୍ମା ହେଉଛନ୍ତି ଅଂଶୀ, ଜୀବାତ୍ମା ଅଂଶ । ପରମାତ୍ମା ମାୟା ରହିତ, ଜୀବ ମାୟାମୟ । ଜୀବ ଗୁଣଗୁଡ଼ିକର ସଂସର୍ଗ ଦ୍ୱାରା ବଦ୍ଧ ଭଳି ହୋଇଯାଏ, ହେଲେ ପରମାତ୍ମା ହେଉଛନ୍ତି ଅଜ, ଅବ୍ୟୟ ତଥା ଏକରସ । ଜୀବର ଆଶ୍ରୟ ହେଉଛନ୍ତି ପରମାତ୍ମା । ହେଲେ ପରମାତ୍ମାଙ୍କର କୌଣସି ଆଶ୍ରୟ ନଥାଏ । ଜୀବ ଆତ୍ମାରେ ଲୀନ ହୋଇଯାଏ, ପରମାତ୍ମାଙ୍କର କୌଣସିଥିରେ ଲୟ ହୁଏନାହିଁ । ସେ ସଂସାରର ସୃଷ୍ଟି, ସ୍ଥିତି ତଥା ପ୍ରଳୟର ହେଉଛନ୍ତି ଅଧିଷ୍ଠାନ । ତାଙ୍କଠାରୁ କେହି ଜ୍ୟେଷ୍ଠ ନ ଥାନ୍ତି କି ଶ୍ରେଷ୍ଠ ନ ଥାନ୍ତି, ତାଙ୍କର ସମାସ୍କନ୍ଦ ବି କେହି ନ ଥାନ୍ତି । ସେ ହିଁ କାଷ୍ଠା, ସେ ହିଁ ପରାଗତି । ସେ ହିଁ ସମସ୍ତଙ୍କର ଏକମାତ୍ର ଅନ୍ତିମ ଅବଧି । ସେହି ପରମାତ୍ମା ହେଉଛି, 'ମୁଁ' । ମୋ ଠାରୁ ସମସ୍ତଙ୍କର ଉତ୍ପତ୍ତି ଓ ମୋ ଠାରେ ହିଁ ସମସ୍ତଙ୍କର ପର୍ଯ୍ୟବସାନ ହୋଇଥାଏ । ଜଗତରେ ସର୍ବତ୍ର ମୁଁ ହିଁ ବ୍ୟାପ୍ତ । ମୋ ବ୍ୟତୀତ ସତ୍ ପଦାର୍ଥ ଅନ୍ୟ କିଛି ନାହିଁ ।

ଉଦ୍ଧବ ପଚାରିଲେ, ''ଭଗବନ୍ ! ଏହିଭଳି ନାନା ରୂପରେ ଜଣାପଡୁଥିବା ସଂସାରକୁ ଦେଖିବାପରେ ଭ୍ରମ ପୁଣି ହୁଏ କାହିଁକି ?''

ଭଗବାନ୍ କହିଲେ, ''ଭ୍ରମ ହୁଏ ଅଜ୍ଞାନ ହେତୁ । ଜୀବ ଯେତେବେଳେ ଅସତ୍‌କୁ ସତ୍ ବୋଲି ବୁଝିବାରେ ଲାଗେ, ଅନିତ୍ୟକୁ ନିତ୍ୟ ବୋଲି ଦୃଢ଼ ଧାରଣା କରିନିଏ, ସେତେବେଳେ ସେ ମାୟାରେ ମୋହିତ ହୋଇ ଭ୍ରମରେ ପଡ଼ିଯାଏ, ଏବଂ ଜାଣି ଜାଣି ଦୁଃଖ ପଶିଯାଏ । ଯେଉଁମାନେ ଗୁରୁକୃପା ସତ୍‌ସଙ୍ଗ ଲାଭ କରିଥାଆନ୍ତି, ଯାହାଙ୍କର ଏପରି ବୋଧ ହୋଇଯାଇଥାଏ ଯେ ସଂସାରରେ ଏକମାତ୍ର ମୁଁ ପରମାତ୍ମା ହିଁ ସତ୍, ସେତେବେଳେ ଏହି ମିଥ୍ୟା ପ୍ରପଞ୍ଚ ଭ୍ରମରେ ଉତ୍ପନ୍ନ ଆଉ କିପରି ହୋଇପାରିବ ?''

ଉଦ୍ଧବ କହିଲେ, ''ଭଗବାନ! ଏହି ସଂସାର ଏପରି ମୋହକ ଯେ ବଡ଼ ବଡ଼ ଜ୍ଞାନୀମାନଙ୍କର ବି ମୋହ ହୋଇଯାଏ ।''

ଭଗବାନ୍ କହିଲେ, ''ଭାଇ! ଜ୍ଞାନୀମାନଙ୍କୁ ତ କେବେ ବି ମୋହ ହୁଏନାହିଁ। ହଁ, ମୋର ମୋହିନୀ ମାୟାର ପ୍ରବଳତାରେ କେବେ-କେବେ ଜ୍ଞାନୀମାନଙ୍କୁ ବି ଏହି ସଂସାରର ସ୍ଫୂର୍ତ୍ତି ହୋଇଯାଏ। ହେଲେ ଚିରକାଳ ପାଇଁ ଏହା ଚିତ୍ତରେ ରହେନାହିଁ। ଯେପରି ଭଗବାନ୍ ଶଙ୍କର ମୋର ମୋହିନୀରୂପ ଦେଖି କିଛି ସମୟ ପର୍ଯ୍ୟନ୍ତ ମୋର ମୋହରେ ମୋହିତ ହୋଇଯାଇଥିଲେ, ଆଉ ତାଙ୍କର ମୋ କଥା ମନେପଡ଼ିଯିବା ମାତ୍ରେ ସହସା ନିଷ୍ଠାରେ ଅବସ୍ଥିତ ହୋଇଗଲେ। ସୂର୍ଯ୍ୟ ବେଳେ ବେଳେ ଯେପରି ମେଘଦ୍ୱାରା ଘୋଡ଼େଇ ହୋଇଯାଆନ୍ତି, ମେଘ ଘୁଞ୍ଚିଗଲେ ପୁଣି ପୂର୍ବବତ୍ ପ୍ରକାଶିତ ହୋଇଯାଆନ୍ତି। ସୂର୍ଯ୍ୟ ଦେଖାଯିବା ପରେ ଅନ୍ଧକାର ରହନ୍ତା ବା କିପରି ?''

ଭଗବାନ୍ କହୁଛନ୍ତି,'' ହେ ଉଦ୍ଧବ! ସୃଷ୍ଟିର ଉତ୍ପତ୍ତି ଓ ପ୍ରଳୟ କଥା ଶୁଣିଲ। ଦେଖ, କାର୍ଯ୍ୟ ଓ କାରଣର ଏକମାତ୍ର ସାକ୍ଷୀ ହେଉଛି ମୁଁ। ମୋ ଦ୍ୱାରା ହିଁ ଏହି ପ୍ରପଞ୍ଚର ସୃଷ୍ଟି ହୋଇଛି। ଆଉ ମୋ ଠାରେ ହିଁ ବିଲୀନ ହୋଇଯିବ। ଯେଉଁମାନେ ଏହି ସୃଷ୍ଟି ଓ ପ୍ରଳୟର କ୍ରମ ଧ୍ୟାନ ପୂର୍ବକ ଶୁଣନ୍ତି ଓ ବୁଝନ୍ତି ତାଙ୍କର ଅଜ୍ଞାନ ଦୂର ହୋଇଯାଏ। ତାଙ୍କ ହୃଦୟର ଗ୍ରନ୍ଥି ଫିଟିଯାଏ, ସକଳ ପ୍ରକାର ସଂଶୟ ଦୂର ହୋଇଯାଏ ଓ ସେମାନେ କର୍ମ-ବନ୍ଧନରୁ ବିମୁକ୍ତ ହୋଇଯାନ୍ତି। ସାଂଖ୍ୟ ବିଧିରେ ପ୍ରଳୟ ଓ ସୃଷ୍ଟିର ବର୍ଣ୍ଣନା ମୁଁ ତୁମକୁ କହିଲି। ଏବେ ତୁମେ ଆଉ କ'ଣ ଶୁଣିବାକୁ ଚାହୁଁଛ କୁହ।''

ଉଦ୍ଧବ କହିଲେ,'' ଭଗବନ୍! ମୁଁ ଆପଣଙ୍କୁ ପଚାରିବାକୁ ଚାହୁଁଛି ଯେ, ସବୁ ମଣିଷ ଏକାଭଳି ଚିନ୍ତା କାହିଁକି କରନ୍ତି ନାହିଁ? ମଣିଷମାନଙ୍କର ସମାନ ବିଚାର ଭାବନା କାହିଁକି ହୁଏ ନାହିଁ। ଏତେ ଭିନ୍ନତା ଦେଖାଯାଏ କାହିଁକି ?''

ଭଗବାନ୍ କହିଲେ,''ସତ୍ତ୍ୱ, ରଜ ଓ ତମ ଏହି ତିନି ଗୁଣ ଯୋଗୁ ଭିନ୍ନତା ହୋଇଥାଏ। ଭିନ୍ନ ଭିନ୍ନ ପ୍ରବୃତ୍ତି ଗୁଣ ହେତୁ ହିଁ ହୋଇଥାଏ।''

ଉଦ୍ଧବ କହିଲେ, ''ପ୍ରଭୁ! ଏହି ଗୁଣଗୁଡ଼ିକର ପ୍ରବୃତ୍ତି ସମ୍ବନ୍ଧରେ ମୁଁ ଶୁଣିବାକୁ ଇଚ୍ଛା କରୁଛି। କେଉଁ ଗୁଣର କି ପ୍ରକାର ପବୃତ୍ତି ହୋଇଥାଏ ?''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ! ଭଗବାନ ଏହାପରେ ଗୁଣଗୁଡ଼ିକର ପ୍ରବୃତ୍ତି ସଂପର୍କରେ ଯେପରି ଉଦ୍ଧବଙ୍କୁ କହିଛନ୍ତି, ତାହା ଆପଣମାନଙ୍କୁ କହୁଛି, ମନଦେଇ ଶୁଣନ୍ତୁ।''

### ଛପ୍ପୟ

ପ୍ରକୃତି କାଲ ମହଁ ବିଲୟ ଜୀବ ମହଁ କାଲ ସମାବେ।
ହୌ ଅବ୍ୟକ୍ତ ଅନାଦି ଜୀବ ମୋମେ ମିଲି ଜାବେ॥
ନହିଁ କାହୁ ମେ ମିଲୁଁ ଅବଧି ସବକୀ ହୌ ଉଦ୍ଧବ।
ଅତି ସମାସ ତୈ କହୀ ସୃଷ୍ଟି ଲୟ କହୁଁ କହା ଅବ॥
ବୋଲେ ଉଦ୍ଧବ-''ନାଥ ଅବ ଗୁନ ବୃତ୍ତିନି ବରନନ କରେ।
ଜୌ ପ୍ରାନିନି ମହଁ ବିଷମତା, ନଟ ନାଗର ସଂଶୟ ହରେ।



# ତିନି ଗୁଣର ବୃତ୍ତି ପ୍ରସଙ୍ଗ

ଗୁଣାନାମସମିଶ୍ରାଣାଂ ପୁମାନ୍ ଯେନ ଯଥା ଭବେତ୍ ।
ତନ୍ମେ ପୁରୁଷବର୍ଯ୍ୟେଦମୁପଧାରୟ ଶଂସତଃ ।। ★

[ଶ୍ରୀଭା.୧୧ସ୍କ.୨୫ଅ.୧ ଶ୍ଳୋକ]

**ଛପ୍ପୟ**

ମୁନି ହରି ବୋଲେ ଭେଦ ହୋହି ଗୁନକୀ ବୃତ୍ତିନି ମହଁ।
ଶମ, ଦମ, ଦୟା, ବିବେକ, ନହୀ ଇଚ୍ଛା ବିଷୟନି ମହଁ।।
ତ୍ୟାଗ, ତିତିକ୍ଷା, ଦାନ, ସତ୍ୟ,ଶ୍ରଦ୍ଧା ଅରୁ ଇସ୍ମୃତ।
ମନପ୍ରସାଦ ଅରୁ ମୌନ ସତ୍ୱ ଗୁନ ମାହିଁ ଆତ୍ମରତି।।
ଇଚ୍ଛା,ତୃଷ୍ଣା, ବିଷୟ, ସୁଖ, ଭେଦ, ବୁଦ୍ଧି, ଅଭିମାନ, ମଦ।
ଆତ୍ମ ପ୍ରଶଂସା, ହାସ୍ୟ ବଲ, କୃତି ରଜୋଗୁଣ କୀ ଦୁଃଖଦା।।

ସମସ୍ତ ପ୍ରାଣୀ ଗୁଣର ଅଧୀନରେ ରହି କାର୍ଯ୍ୟ କରିବାରେ ଲାଗିଥାଆନ୍ତି । କ୍ଷୁଦ୍ରାତିକ୍ଷୁଦ୍ରଠାରୁ ଆରମ୍ଭ କରି ବ୍ରହ୍ମା ପର୍ଯ୍ୟନ୍ତ ସମସ୍ତେ ତିନିଗୁଣର ବଶୀଭୂତ। କେହି ସତ୍ତ୍ୱପ୍ରଧାନ ହୋଇଥାନ୍ତି ତ କେହି ରଜୋଗୁଣପ୍ରଧାନ। ସତ୍ତ୍ୱ, ରଜ ଓ ତମର ପ୍ରଭାବ ସମସ୍ତଙ୍କ ଉପରେ ପଡ଼ିଥାଏ। ଯିଏ ଶୁଦ୍ଧ ସତ୍ତ୍ୱଗୁଣ-ପ୍ରଧାନ ହୋଇଥାନ୍ତି ସେମାନଙ୍କୁ ବି ବେଳ ପଡ଼ିଲେ (ସମୟ ଆସିଗଲେ) ରଜ ଓ ତମ ଦବାଇ ଦିଅନ୍ତି। ଏହାର ବିପରୀତରେ ଯେଉଁମାନେ ଘୋର ରଜୋଗୁଣୀ ବା ତମୋଗୁଣୀ ହୋଇଥାନ୍ତି, ସେମାନଙ୍କ ଜୀବନରେ ବି ସତ୍ତ୍ୱଗୁଣର ଉଦୟ ହୁଏ। ଯେଉଁମାନେ ଗୁଣର ସହାୟତାରେ ବଞ୍ଚିଥାନ୍ତି, ଗୁଣର ଅଧୀନ ହୋଇ କାର୍ଯ୍ୟ କରୁଥାନ୍ତି, ସେମାନଙ୍କର ଆବାଗମନ ସରେ ନାହିଁ। କିନ୍ତୁ ଯେଉଁମାନେ ଗୁଣାତୀତ ହୋଇଯାଇଥାନ୍ତି, ଦେହ ଓ ଆତ୍ମାର ରହସ୍ୟକୁ ଯେଉଁମାନେ ଉତ୍ତମ ରୂପରେ ବୁଝିଯାଇଥାନ୍ତି, ସେମାନେ ଏହି ସଂସାର-ଚକ୍ରରେ ପଡ଼ନ୍ତି ନାହିଁ। ସେମାନଙ୍କର ଆବାଗମନ ନଷ୍ଟ ହୋଇଯାଏ।

ମହାପ୍ରାଜ୍ଞ ସୂତ କହୁଛନ୍ତି— ହେ ମୁନିଗଣ! ତିନିଗୁଣଙ୍କ ବୃତ୍ତି ବିଷୟରେ ଜାଣିବା ପାଇଁ ଉଦ୍ଧବ ପଚାରିବାରୁ ଭଗବାନ୍ କହିଲେ, "ହେ ଉଦ୍ଧବ! ସତ୍ତ୍ୱ, ରଜ ଆଉ ତମ ହେଉଛି ତିନିଗୁଣ। ଯେଉଁ ସମୟରେ ଯେଉଁ ଗୁଣର ପ୍ରାବଲ୍ୟ ହୁଏ, କାର୍ଯ୍ୟ ତଦନୁରୂପ ହେବାରେ ଲାଗେ। ସତ୍ତ୍ୱ ଗୁଣର ଯେତେବେଳେ ପ୍ରାବଲ୍ୟ ହୁଏ, ସେତେବେଳେ ସାତ୍ତ୍ୱିକ ଭାବ ଜାଗ୍ରତ ହେବାରେ ଲାଗେ। ରଜୋଗୁଣର ପ୍ରାବଲ୍ୟରେ ରଜୋଗୁଣର ବୃତ୍ତିସମୂହର ବିକାଶ ହୁଏ ; ଆଉ ତମୋଗୁଣର ଅଧିକତାରେ ତମୋଗୁଣୀ ବୃତ୍ତି ଦେଖାଦିଏ।"

---

★ କୃଷ୍ଣ ବୋଲନ୍ତି ବଯ ଶୁଣ । କହିବା ତ୍ରିଗୁଣ ଲକ୍ଷଣ ।।

ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ର ଉଦ୍ଧବଙ୍କୁ କହୁଛନ୍ତି– "ହେ ଉଦ୍ଧବ! ପୃଥକ୍ ପୃଥକ୍ ଗୁଣ ଯୋଗୁ ପୁରୁଷ ଯେଉଁ ଗୁଣର ପ୍ରଭାବରେ ଯେଉଁ ପ୍ରକୃତିର ହୋଇଥାଏ ତାହା ମୋ ଠାରୁ ଶୁଣି ଯଥାର୍ଥ ରୂପରେ ଧାରଣ କର।

ଉଦ୍ଧବ ପଚାରିଲେ, ''ପ୍ରଭୁ ! ସତ୍ତ୍ୱଗୁଣର ପ୍ରାବଲ୍ୟ ହେଲେ ଭାବ କିପରି ହୋଇଥାଏ ? ସତ୍ୱଗୁଣର ବୃତ୍ତିଗୁଡ଼ିକ କ'ଣ କ'ଣ ?''

ଭଗବାନ୍ କହିଲେ, ''ସତ୍ୱଗୁଣର ବର୍ଣ୍ଣ ଶୁଭ୍ର । ସତ୍ୱର ବୃଦ୍ଧି ହେଲେ ଶୁଭ ଚିନ୍ତନ, ମଙ୍ଗଳ ଭାବନା ଆସେ । ସତ୍ୱରେ ଜ୍ଞାନ ହୁଏ । ଏଣୁ ଜ୍ଞାନର ସହାୟିକା ବୃତ୍ତିମାନେ ଦେଖାଯାଆନ୍ତି । ଯେପରି ଶମ ଓ ଦମ ମନ ତଥା ଇନ୍ଦ୍ରିୟଙ୍କୁ ବଶୀଭୂତ କରିବାକୁ ଇଚ୍ଛା ହେବା, ସୁଖ-ଦୁଃଖରେ ସମଭାବାପନ୍ନ ହେବା, ଦ୍ୱନ୍ଦ୍ୱକୁ ସହିଯିବା, ଏହା ସତ୍ ଓ ତାହା ଅସତ୍ ଏଭଳି ଭାବନା ସବୁବେଳେ ରହିଥିବା ; ତପ କରିବା ପାଇଁ ମନ ହେବା, ମନକୁ ଲଗେଇବା ; ସତ୍ୟ ଆଚରଣ କରିବା, ଯାହା କହୁଥିବା ସତ୍ୟ ହିଁ କହୁଥିବା ; ନିତ୍ୟ ବ୍ୟବହାରରେ ସତ୍ୟକୁ ଅନୁସରଣ କରୁଥିବା, ମନ ମଧ୍ୟରେ ସତ୍ୟ କଥା ହିଁ ମନନ କରୁଥିବା, ପ୍ରାଣୀମାନଙ୍କ ପ୍ରତି ଦୟାଭାବ ପୋଷଣ କରୁଥିବା, ଦୀନ ଦୁଃଖୀଙ୍କର ଦୁଃଖରେ ଦ୍ରବୀତ ହୋଇଯାଉଥିବା, କୌଣସି କାର୍ଯ୍ୟକୁ ହଠାତ୍ ନ କରିବା ; କୌଣସି କାମ କରିବା ପୂର୍ବରୁ ତାହାର ପୂର୍ବାପର ପରିଣତି, ଯଥା ଭଲ ହେବ କି ମନ୍ଦ ହେବ, ଲାଭ ହେବ କି କ୍ଷତି ହେବ, ଅନ୍ତିମ ପରିଣତି ବିଷୟ ଚିନ୍ତା କରିବା ପରେ କାର୍ଯ୍ୟ ଆରମ୍ଭ କରିବା ; ଭାଗ୍ୟବଶତଃ ଯାହା ଯେତେବେଳେ ମିଳୁଥାଏ ସେଥିରେ ସନ୍ତୁଷ୍ଟ ରହିବା ; ସବୁସମୟରେ ଯୋଗକ୍ଷେମ ଚିନ୍ତାରେ ନିମଗ୍ନ ରହିବା ; ମନରେ ସଂଗ୍ରହ ନିମନ୍ତେ ଇଚ୍ଛା ପୋଷଣ ନ କରିବା ; ସବୁସମୟରେ ଚିତ୍ତକୁ ଯୋଗରେ ସଂଲଗ୍ନ କରି ରଖିବା ; ନିଜ ପାଖରେ ଯାହା ଥିବ ଅନ୍ୟର ଭଲରେ ଯଦି ତାହା ଲାଗିପାରିବ ତେବେ ଆନନ୍ଦରେ ତାହା ଅନ୍ୟକୁ ଦେଇଦେବା ; ବିଷୟ ପ୍ରତି ଉଦାସୀନ ରହିବା ; ବିଷୟ ସମ୍ମୁଖରେ ଥିଲେ ସୁଦ୍ଧା ତାହାକୁ ଅଧର୍ମପୂର୍ବକ ସେବନ ନ କରିବା । ସତ୍ କାର୍ଯ୍ୟରେ, ସତ୍‌ସଙ୍ଗରେ ସଜ୍ଜନରେ ତଥା ପ୍ରତ୍ୟେକ ଶୁଭ କାର୍ଯ୍ୟରେ ଶ୍ରଦ୍ଧା ରଖିବା ; ବଡ଼ମାନଙ୍କ ସମ୍ମୁଖରେ ସଙ୍କୋଚର ସହିତ କଥାବାର୍ତ୍ତା କରିବା ; ଖରାପ କାମ ବିଷୟରେ ମନକୁ ନିବୃତ୍ତ ରଖିବା ; ଶକ୍ତି ଅନୁସାରେ ନିଜର ଲଜ୍ଜ୍ୟାକୁ ଧାରଣ କରିବା; ଦୁଷ୍ଟ କୌଣସି ଠାରେ କଷ୍ଟ ଦେଉଥିଲେ ସେପରି କର୍ମରୁ ତାକୁ ନିବୃତ୍ତ କରାଇବା ; ନିଜ ନିଜ ଭିତରେ ତୁଷ୍ଟ ରହିବା । ଆତ୍ମା ସହିତ ସବୁବେଳେ କ୍ରୀଡ଼ା କରିବା, ଆତ୍ମରତି ଅନୁଭବ କରିବା- ଏହି ସମସ୍ତ ହେଉଛି ସତ୍ୱଗୁଣର ବୃତ୍ତିରାଶି । ଯେଉଁମାନଙ୍କର ହୃଦୟରେ ଏହି ବୃତ୍ତିଗୁଡ଼ିକ ସବୁବେଳେ ଉଠୁଥାଏ, ସେମାନଙ୍କୁ ସତ୍ୱଗୁଣ ପ୍ରଧାନ ପୁରୁଷ ବୋଲି ଜାଣିବ ।''

ଉଦ୍ଧବ କହିଲେ, ''ଭଗବନ୍ ! ରଜୋଗୁଣର ବୃତ୍ତିଗୁଡ଼ିକ କ'ଣ କ'ଣ ?''

ଭଗବାନ୍ କହିଲେ, ''ରଜୋଗୁଣର ବର୍ଣ୍ଣ ହେଉଛି ରକ୍ତ ବା ନାଲି । କର୍ମସମୂହରେ ପ୍ରବୃତ୍ତ ହେବା ହିଁ ହେଉଛି ରଜୋଗୁଣର କାର୍ଯ୍ୟ । ବିବିଧ ପ୍ରକାର ଇଚ୍ଛା ହେବା ହେଉଛି ରଜୋଗୁଣର କାର୍ଯ୍ୟ । ଏହା କରିବି, ତା' କରିବି ; ସେଠାକୁ ଗଲେ ମୋର ନାମ ବଢ଼ିବ ; ସମ୍ମାନ ମିଳିବ ; ସେହି କାର୍ଯ୍ୟ କରିବା ଦ୍ୱାରା ଆମର ପ୍ରସିଦ୍ଧି ବଢ଼ିବ— ଏହିଭଳି ଅନେକ ଇଚ୍ଛା ରଜୋଗୁଣରୁ ଉଠେ । କର୍ମସମୂହରେ ପ୍ରବୃତ୍ତି ବିନା ରଜୋଗୁଣ ହୋଇପାରେ ନାହିଁ । ମନରେ ଯାହା ଉଠେ ସଙ୍ଗେ ସଙ୍ଗେ ସେଥିପାଇଁ ପ୍ରଯତ୍ନ ଆରମ୍ଭ ହୋଇଯାଏ । ସେଠାରୁ ଧନ ସଂଗ୍ରହ କରିବା ; ସେଠାରୁ ଲୋକଙ୍କଠୁ ସଂଗ୍ରହ କରିବା ; ଅମୁକଙ୍କୁ ଦେଖାକରି ଅମୁକ ବିଷୟରେ ଆଲୋଚନା କରିବା ପାଇଁ ଶୀଘ୍ରଗାମୀ ଯାନରେ ପହଞ୍ଚିବା— ଏହିଭଳି ଅନେକ ପ୍ରଯତ୍ନ ରଜୋଗୁଣ ଦ୍ୱାରା ହିଁ ସମ୍ପନ୍ନ ହୋଇଥାଏ ।

ରଜୋଗୁଣର ପ୍ରଥମ ପ୍ରବୃତ୍ତି ହେଉଛି ଅଭିମାନ। ଅଭିମାନୀ ରଜୋଗୁଣୀ ସବୁବେଳେ ତା' ନିଜ ନିଶ ମୋଡ଼ିବାରେ ଲାଗିଥାଏ। ଛାତି ଫୁଲାଇ ଚାଲେ। ରୋଷପୂର୍ବକ ଚାରିଆଡ଼େ ଆଖିବୁଲାଉଥାଏ, ଯେପରି—ହାଁ, ଅମୁକ ମୋ କଥା ଶୁଣିଲା ନାହିଁ, ଅମୁକ ମୋର ସମ୍ମାନ କଲା ନାହିଁ, ସେ ମୋତେ କ'ଣ ବୋଲି ଭାବୁଛି କି, ତା' ଦାନ୍ତ ଭାଙ୍ଗି ଦେବି— ଏହିଭଳି ଅଭିମାନପୂର୍ଣ୍ଣ କଥା କହୁଥାଏ। ସବୁବେଳେ ବିବିଧ ବିଷୟରେ ତୃଷ୍ଣା ମନରେ ଥାଏ। ଭୋଗ୍ୟ ବସ୍ତୁ ପାଇଁ ସବୁବେଳେ ନିରବଚ୍ଛିନ୍ନ ଚିନ୍ତିତ ରହିବା ; ଭୋଗ ଉପଭୋଗ କରିଦେବା ପରେ ବି ତୃପ୍ତ ନହେବା ; ନିଜକୁ ନିଜେ ଖୁବ୍ ବଡ଼ ମନେକରିବା ; ନିଜଠାରୁ ସାନମାନଙ୍କ ସହିତ କଥାବାର୍ତ୍ତା ନ କରିବା ; କଥା କଥାରେ ଫୁଟାଣି ତଥା ଗର୍ବୋକ୍ତି କହୁଥିବା ; ସବୁବେଳେ ଧନ ଚିନ୍ତା କରୁଥିବା ; ଯଶ ନିମନ୍ତେ ପରୋପକାର କରୁଥିବା ଭଳି ଦେଖାଇହେବା– ଯଥା ଦାନ ଉଦ୍ଦେଶ୍ୟରେ ଧନ ଦେବା ତଥା ଦେବତାମାନଙ୍କୁ ଧନ ନିମନ୍ତେ ଯାଚନା କରିବା ; ସକାମ ଅନୁଷ୍ଠାନ କରି ତାହା ଦ୍ୱାରା ଧନ ତଥା ଭୋଗର ଅଭିଳାଷ ପୋଷଣ କରିବା ; ବଡ଼ ସାନ ଭେଦଭାବ ରଖିବା ; ଅମୁକ ଆମ ପାଖକୁ ଆସି ପାରିବ, ଅମୁକ ଆସିବା ନିମନ୍ତେ ଅଧିକାରୀ ନୁହେଁ; ଅମୁକ ଆମ ସହିତ ବସିଲା କିପରି ; ଆମ ପାଇଁ ଆହୁରି ଉଚ୍ଚ ଆସନ ପଡ଼ିବା ଉଚିତ ଥିଲା ; ଆମେ ସାଧାରଣ ଲୋକଙ୍କ ସହିତ ବସିପାରିବୁ ନାହିଁ ; ଅମୁକ ସହିତ ସମ୍ପର୍କ ରଖିବା ଆମ ପଦମର୍ଯ୍ୟାଦାର ପ୍ରତିକୂଳ— ପ୍ରତ୍ୟେକ କଥାରେ, ପ୍ରତ୍ୟେକ ସ୍ଥାନରେ ଭେଦବୁଦ୍ଧି ରଖିବା ; ବିଷୟ ସୁଖ ନିମନ୍ତେ ସବୁବେଳେ ଉତ୍ସୁକ ରହିବା ; ବିଷୟ କଥା ଅନବରତ ଚିନ୍ତା କରିବା ; ରଜୋଗୁଣ କର୍ମ ପ୍ରତି ଉତ୍ସାହ ଦେଖାଇବା ; ଅମୁକଙ୍କୁ ମାରିବାକୁ ହେବ, ନୀଚା ଦେଖାଇବାକୁ ହେବ, ଅମୁକ ନାମରେ ମୋକଦ୍ଦମା କରିବାକୁ ହେବ— ଏଥିପାଇଁ ସହସା ଘୋଡ଼ାରେ ବା ଦ୍ରୁତଗାମୀ ଯାନରେ ବାହାରି ପଡ଼ିବା– ଏହିଭଳି ମଦ ଜନିତ କାର୍ଯ୍ୟରେ ଅତ୍ୟନ୍ତ ସ୍ଫୂର୍ତ୍ତି ଅନୁଭବ କରିବା ; କାମ ଯାହା କରିବା ତାହା ନିଜର ଆତ୍ମ ପ୍ରଶଂସା ପାଇଁ କରିବା ; ଏଣୁ ତେଣୁ, ଯା ଠାରୁ ତା'ଠାରୁ ଅର୍ଥ, ଧନ ସଂଗ୍ରହ କରି କୌଣସି ସାର୍ବଜନିକ ଗୃହ ତିଆରି କଲେ, କିନ୍ତୁ ତା'ର ମୁଖ୍ୟ ପ୍ରବେଶ ଦ୍ୱାରବନ୍ଧରେ ନିଜର ନାମ ଫଳକ ଟାଙ୍ଗି ସୁଖ ଅନୁଭବ କରିବା ; କେହି ମିଛ ସତ କହୁଥିବା ସ୍ତାବକ ବା ପ୍ରଶଂସକ ପହଞ୍ଚିଗଲେ ତାକୁ ଅତ୍ୟଧିକ ଆଦର କରିବା ; ଯଥାଶକ୍ତି ତାର ସହାୟତା କରିବା ; ପଦ ଓ ଉପାଧି ନିମନ୍ତେ ସତତ ଚେଷ୍ଟା କରୁଥିବା ; ନିଜ କର୍ମର କେହି ପ୍ରସିଦ୍ଧି କଲେ ତା' ପାଖରେ ଋଣୀ ରହିବା ଭଳି ବ୍ୟବହାର ଦେଖାଇବା– ଏ ସମସ୍ତ ହେଉଛି ରଜୋଗୁଣର ପ୍ରବୃତ୍ତି। ସାରକଥା ହେଉଛି, ଯେଉଁ କର୍ମରେ ନିଜର ପ୍ରଶଂସା ହେଉଥିବ ତାହାକୁ ଅତି ଭଲ ପାଇବା।

''ହାସ୍ୟରସ କରିବା, ହାସ୍ୟରସଯୁକ୍ତ କଥାରେ, ପୁସ୍ତକକୁ ଅଧିକ ପ୍ରେମ କରିବା ; ସାଂସାରିକ କର୍ମରେ ସବୁବେଳେ ଲାଗିରହିବା, ତଲ୍ଲୀନ ରହିବା ; ଏଣୁ ତେଣୁ କାମରେ ପୁରୁଷାର୍ଥ ଦେଖାଇ ହେବା ; ତଥା ବଳପୂର୍ବକ ଉଦ୍ୟମ ଆଦି କରିବା– ଏ ସମସ୍ତ ହେଉଛି ରଜୋଗୁଣର ପ୍ରବୃତ୍ତି। ରଜୋଗୁଣ ବିନା ଏହି ସାଂସାରିକ କାର୍ଯ୍ୟରେ ଏତେ ଉତ୍ସାହ, ଏତେ ଚଞ୍ଚଳତା, ଏତେ ତତ୍ପରତା ଏକାଗ୍ରତା ହୁଏ ନାହିଁ।''

ଉଦ୍ଧବ ପଚାରିଲେ, ''ପ୍ରଭୁ ! ତମୋଗୁଣର ବୃତ୍ତି କ'ଣ କ'ଣ ?''

ଭଗବାନ୍ ହସି ହସି କହିଲେ, ''ଉଦ୍ଧବ! କ୍ରୋଧ ତମୋଗୁଣ ବିନା ଆସେନାହିଁ। କାମ ତ ହେଉଛି ରଜୋଗୁଣର କାର୍ଯ୍ୟ, କିନ୍ତୁ କାମ କ୍ରୋଧ ରୂପରେ ପରିଣତ ହୋଇଗଲେ–ଜାଣିବ ତମୋଗୁଣ ତା' ଅଧିକାର ଜମାଇଦେଲା। କ୍ରୋଧରେ ହିଂସା ହେବା ଅନିବାର୍ଯ୍ୟ। ଏଣୁ କାହାକୁ କ୍ରୋଧରେ ମାରିଦେବା ହେଉଛି ତମୋଗୁଣ।''

ଉଦ୍ଧବ ପଚାରିଲେ, ''ଭଗବନ୍! କ୍ଷତ୍ରିୟ ତ ଯୁଦ୍ଧରେ କ୍ରୋଧକରି ଶତ୍ରୁଙ୍କୁ ମାରିପକାଏ, ହିଂସା କରେ, ତେବେ ସେ ସମସ୍ତ କାମ କ'ଣ ତମୋଗୁଣର ?''

ଭଗବନ୍ କହିଲେ, ''ନା! ଏହା ତ ହେଉଛି କ୍ଷତ୍ରିୟର ଧର୍ମ। ଏହା ହେଉଛି କର୍ତ୍ତବ୍ୟ ପାଳନ। ଏହାର ନାମ ହିଂସା ନ ହୋଇ ବୀରତା ହୋଇଥାଏ। ସେ ତ ଶତ୍ରୁଙ୍କୁ ଆହ୍ୱାନ କରେ ଓ ବୀରତା ପୂର୍ବକ ତା' ସହିତ ଯୁଦ୍ଧ କରେ। ଯୁଦ୍ଧରେ ବୀରତା ପ୍ରଦର୍ଶନ କରୁଥିବା ସମୟରେ ପ୍ରାଣ ଗଲେ ସିଧା ସ୍ୱର୍ଗକୁ ଯାଏ। ହିଂସା କରାଯାଏ, କେହିଜଣେ ଯାଉଥିବା ସମୟରେ ହଠାତ୍ ତାକୁ ଛୁରୀରେ ଆଘାତ କରିବା, ଅସାବଧାନ ଅବସ୍ଥାରେ କ୍ରୋଧତାବଶତଃ ମାରିଦେବା। କ୍ରୋଧାନ୍ୱିତ ହେବା ପରେ ଲୋକ ଯେତେବେଳେ ତା'ର ହିତାହିତ ଜ୍ଞାନ ହରାଇପକାଏ, ସେତେବେଳେ ସେ ଘୋର ତମୋଗୁଣ ଦ୍ୱାରା ଆକ୍ରାନ୍ତ ହୋଇଯାଇଛି ବୋଲି ଜାଣିବାକୁ ହେବ। ସେତେବେଳେ ସେ ଶୂରବୀର ବୋଲି କୁହା ନ ଯାଇ, ଆତତାୟୀ ବୋଲି କୁହାଯିବ। ଆତତାୟୀକୁ ପ୍ରାଣରେ ମାରିଦେଲେ ବି କୌଣସି ଦୋଷ ହୁଏ ନାହିଁ।''

ଉଦ୍ଧବ କହିଲେ, ''ହଁ ପ୍ରଭୁ! ହିଂସା ଓ ବୀରତ୍ୱର ଅର୍ଥ ବୁଝିଗଲି, ଏବେ କୃପାକରି ତମୋଗୁଣର ଅନ୍ୟ ବୃତ୍ତିଗୁଡ଼ିକ ବିଷୟରେ କୁହନ୍ତୁ।''

ଭଗବାନ୍ କହିଲେ, ''ହେ ଉଦ୍ଧବ! ଲୋଭ ହେବା ହେଉଛି ତମୋଗୁଣ। ଲୋଭରେ କ'ଣ ହୁଏ ? ମୋର ସୁନା ରୁପା ଆଦି ଅନ୍ୟାନ୍ୟ ଧନ କେବେ ବି ନ କମୁ, ସବୁବେଳେ ବଢୁଥାଉ, ଏଭଳି ମନୋଭାବ, ଚିନ୍ତାଧାରା ହୋଇଯାଏ। ଏହି ତମୋଗୁଣ-ପ୍ରଧାନ ଜଡ଼ ପଦାର୍ଥରେ ଅଭିନିବେଶ ହୋଇଯିବା ହେଉଛି ଘୋର ତମୋଗୁଣ। ଜଡ଼ ପଦାର୍ଥମାନଙ୍କ ପ୍ରତି ଯେତେବେଳେ ଆସକ୍ତି ହୋଇଯାଏ, ସେତେବେଳେ ଲୋକମାନେ ମିଥ୍ୟା କଥା କହିଥାଆନ୍ତି। ଲୋଭ ହେତୁ ମଣିଷ ଅସତ୍ୟ କହେ, ଏଣୁ ଲୋଭ ଆଉ ଅସତ୍ୟ ଉଭୟ ତମୋଗୁଣର କାର୍ଯ୍ୟ। ଯେ କୌଣସି ଲୋକ ପାଖରେ ନିଜେ ଯାହା ନୁହେଁ ସେପରି ଅଭିନୟ କରି ଯାଚନା କରିବା ଦମ୍ଭ, ପାଖଣ୍ଡର ଆଶ୍ରୟ ନେବା, ଅତ୍ୟଧିକ ଶାରୀରିକ ପରିଶ୍ରମ କରିବା, ନିଜ ନିଜ ମଧ୍ୟରେ କଳି କରିବା, କଥା କଥାରେ ଲୋକଙ୍କ ସହିତ ଭିଡ଼ିଯିବା ; ମନରେ ଶୋକ, ମୋହ ଆଉ ବିଷାଦ ହେବା ; ଅନ୍ୟଙ୍କୁ ପୀଡ଼ା ଦେବା ; ଅନ୍ୟଦ୍ୱାରା ପୀଡ଼ା ପାଇବ ବୋଲି ସବୁବେଳେ ଶଙ୍କିତ ରହିବା ; ଅତ୍ୟଧିକ ନିଦ ଲାଗିବା ; ଯେଉଁଠାରେ ଆଶାର ସାମାନ୍ୟମାତ୍ର ଚିହ୍ନ ନଥିବ ସେଠାରେ ଅତ୍ୟଧିକ ଆଶା ରଖିବା ; ମନରେ ସବୁବେଳେ ଅନ୍ୟଙ୍କଠାରୁ ଭୟ ପାଇବାର ସମ୍ଭାବନା ରଖିବା ; କୌଣସି ପ୍ରକାର କାମ ନ କରିବା ପାଇଁ ଇଚ୍ଛା ହେଉଥିବା ; ବସି ବସି ଢୁଳାଉ ଥିବା ; ତଥା ନିରୁଦ୍ୟୋଗୀ ହୋଇ ଆଳସ୍ୟ ନିଦ୍ରାରେ ଆନନ୍ଦ ପାଇବା– ଏ ସମସ୍ତ ହେଉଛି ତମୋଗୁଣର ବୃତ୍ତି ରାଶି।''

ଉଦ୍ଧବ କହିଲେ, ''ଭଗବନ୍! ଆପଣ ସତ୍ତ୍ୱ, ରଜ, ତମ ଏହି ତିନିଗୁଣର ବୃତ୍ତି ସମୂହକୁ ପୃଥକ୍ ପୃଥକ୍ କହିଲେ। ଡାଲି, ଭାତ, ଗହମର ରୁଟି ଭଳି ଏହା ଅଲଗା ଅଲଗା।

ଯେପରି ଡାଲି ଓ ଭାତ ମିଶି ଖେଚେଡ଼ି ହୋଇଯାଏ ; ଗହମ, ଚଣା, ଜବ, ଚୂନୀ ଆଉ ମଟର ମିଶାଇ ପଞ୍ଚମେଳ ରୁଟି ହୁଏ– ସେହିଭଳି ଏହି ଗୁଣତ୍ରୟର ଖେଚେଡ଼ି ବି ହୁଏ ତ ?''

ଭଗବାନ୍ କହିଲେ, ''ଉଦ୍ଧବ ! ଖେଚେଡ଼ି ସବୁଥିରେ ହୋଇଥାଏ । ତିନିଗୁଣର ମଧ୍ୟ ଖେଚେଡ଼ି ହୁଏ । ଦେଖିବାକୁ ଗଲେ ତିନିହେଁ ମିଶିକରି ହିଁ ଥାଆନ୍ତି । କେତେକ କଥା ତିନିଙ୍କ ମଧ୍ୟରେ ଏକଭଳି ବି ଥାଏ । କେତେକ ମିଶାମିଶି ହୋଇ ବର୍ଣ୍ଣସଙ୍କରତା ଉତ୍ପନ୍ନ କରିଥାନ୍ତି । ଗୋଟିଏ ପୁରୁଷ ଠାରେ କେତେବେଳେ ସତ୍ତ୍ୱଗୁଣର ପ୍ରଧାନତା ଦେଖାଦିଏ ତ ଆଉ କେତେବେଳେ ରଜୋଗୁଣର ; ପୁଣି ଅନ୍ୟ ସମୟରେ ତମୋଗୁଣର । ଏହି ତିନୋଟି ନିଜ ନିଜ ଭିତରେ ଏପରି ମିଶିଯାଇ ଥାଆନ୍ତି ଯେ, ବିନା ଗୁଣାତୀତ ହୋଇ ଏହି ତିନିଙ୍କ ମଧ୍ୟରୁ ଗୋଟିକୁ ବି ଅତ୍ୟନ୍ତାଭାବ ହେବା ଅତ୍ୟନ୍ତ କଠିନ ।''

ଉଦ୍ଧବ କହିଲେ, ''ପ୍ରଭୁ ! ଏହି ତିନିଙ୍କର ମିଶାମିଶି ବୃତ୍ତି ସମ୍ବନ୍ଧରେ ମୋତେ କୁହନ୍ତୁ । ଏବଂ କେଉଁ ଗୁଣ ବଢ଼ିବା ଦ୍ୱାରା ବୃତ୍ତି କିପରି ହୋଇଥାଏ ତାହା ବୁଝାଇ ଦିଅନ୍ତୁ । ସତ୍ତ୍ୱଗୁଣ ବଢୁଛି, କି ରଜୋଗୁଣ ବଢୁଛି, କି ତମୋଗୁଣ ବଢୁଛି, ତାହା ଆମେ ଜାଣିବା କିପରି ?''

ଭଗବାନ୍ କହିଲେ, ''ଠିକ୍ ଅଛି ତା' ହେଲେ, ଏବେ ମୁଁ ତୁମକୁ ତିନିଗୁଣର ମିଶ୍ରିତ ବୃତ୍ତିରାଶି ସମ୍ବନ୍ଧରେ କହୁଛି, ଯାହା ଜାଣି ତୁମେ ଗୁଣଗୁଡ଼ିକୁ ଚିହ୍ନି ପାରିବ ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ ! ଭଗବାନ ତିନି ଗୁଣର ମିଶ୍ରିତ ବୃତ୍ତି ସମ୍ପର୍କରେ ଉଦ୍ଧବଙ୍କୁ ଯାହା ଯାହା କହିଲେ ତାହା ଆପଣମାନଙ୍କ ଆଗରେ ବର୍ଣ୍ଣନା କରୁଛି । ଆପଣମାନେ ଏହି ସୂକ୍ଷ୍ମାତିସୂକ୍ଷ୍ମ ବିଷୟକୁ ଅତି ସାବଧାନର ସହିତ ଶ୍ରବଣ କରନ୍ତୁ ।''

### ଛପ୍ପୟ

କ୍ରୋଧ, ଲୋଭ, ପାଖଣ୍ଡ, କଳହ, ଶ୍ରମ, ଶୋକ, ମୋହ, ଭୟ ।
ମିଥ୍ୟା ଭାଷଣ, ନୀଦ, ଯାଚନା, ହିଂସା, ଅପଚୟ ।।
ପୀଡ଼ା ଔୌର ବିଷାଦ ବ୍ୟର୍ଥ ଆଶା ଛିତ ମନ ମହିଁ ।
ଅନୁଦ୍ୟୋଗ, ହ୍ୱୈ ରହୈ ଅଧିକ ମମତା ନିଜ ତନ ମହିଁ ।।
ବଢ଼ୈ ତମୋଗୁଣ ଦେହ ମହିଁ, ହୋବେ ଯେ ସବ ବୃତ୍ତି ତବ ।
ପୃଥକ୍ କହୀ ଗୁନ ବୃତ୍ତି ସବ, ସନ୍ନିପାତ ଗୁନ ସୁନକୁ ଅବ ।।



# ତ୍ରିଗୁଣର ସନ୍ନିପାତ ଓ ସ୍ୱରୂପ

**ଧର୍ମେ ଚାର୍ଥେ ଚ କାମେ ଯଦାସୌ ପରିନିଷ୍ଠିତଃ ।**
**ଗୁଣନାଂ ସନ୍ନିକର୍ଷୋଽୟଂ ଶ୍ରଦ୍ଧାରତିଧନାବହଃ ।। ★**

[ଶ୍ରୀଭା.୧୧ସ୍କ.୨୫ଅ.୭ ଶ୍ଳୋକ]

### ଛପ୍‌ପୟ

ଅହଂକାର ସୁନ ଉଦ୍ଭବ। ହୋବୈ ତୀନହୁ ଗୁନ ମହଁ।
ଇନ୍ଦ୍ରିୟ, ମନ ଅରୁ ବିଷୟ ପ୍ରାନ ତୀନହୂ ଗୁନ ଇନ ମହଁ।।
ଧରମ, ଅରଥ ଅରୁ କାମ ହୋଇ ଇଚ୍ଛା ଜବ ମନ ମହଁ।
ସନ୍ନିପାତ ଗୁନ ହୋହି ଚିଇ ଶ୍ରଦ୍ଧା, ରତି ଧନ ମହଁ।।
ଗୃହ ରତି, ରୁଚି, କର୍ତବ୍ୟ ମହଁ, କରମ କାମନା କେ ସହିତ।
ସମଝହୁ ଖିଚରୀ ଗୁନନିକୀ, ସୁନୁ ସ୍ୱଭାବ ଗୁନ ଲାଇ ଚିତ।।

ଯେପରି ତ୍ୟାଗ, ସନ୍ତୋଷ, ଜପ, ତପ, ଦାନ, ଦୟା, ତିତିକ୍ଷା ଆଦି ସତ୍ତ୍ୱ ଗୁଣର ହୋଇଥାଏ ; ତୃଷ୍ଣା, ଅଭିମାନ, ଇଚ୍ଛା, ପ୍ରଯତ୍ନ ଆଦି ରଜୋଗୁଣର ହୋଇଥାଏ ; ସେହିଭଳି ନିଦ୍ରା, ଆଳସ୍ୟ,. ପ୍ରମାଦ, ତଥା କ୍ରୋଧ ଲୋଭାଦି ତମୋଗୁଣରୁ ହୋଇଥାଏ । ପୁଣି ଏପରି କେତେକ କର୍ମ ଅଛି ଯାହା ତିନୋଟିଯାକ ଗୁଣରୁ ବି ହୋଇଥାଏ । ଯେପରି ସାତ୍ତ୍ୱିକ ଭୋଜନ— ସୁନ୍ଦର, ରୁଚିକର, ଶୁଦ୍ଧ ଭାବରେ ପ୍ରସ୍ତୁତ, ଚିକ୍‌କଣ ସବୁଥିରେ ସାତ୍ତ୍ୱିକ ଗୁଣ ଥିବ— ମାତ୍ର ପରିମାଣରେ ଅଧିକ ଭୋଜନ ହୋଇଯିବ ଯାହାଫଳରେ ନିଦ୍ରା ଆଳସ୍ୟ ପ୍ରମାଦ ଆଦି ଉତ୍ପନ୍ନ ହୋଇଯାଏ । ସାତ୍ତ୍ୱିକ ହୋଇ ସୁଦ୍ଧା ପରିଣାମରେ ତାହା ତାମସ ହିଁ ପ୍ରମାଣ କରେ। ହିଂସା ତାମସ କାର୍ଯ୍ୟ, କିନ୍ତୁ କେହି କରୁଥିଲେ, ଅଥବା ଆତତାୟୀ କାମ କରୁଥିଲେ, ତାକୁ ମାରିଦେବା ହେଉଛି ଶୁଦ୍ଧ ସାତ୍ତ୍ୱିକ କାର୍ଯ୍ୟ। ଅହଂକାରର ଦୃଷ୍ଟାନ୍ତ ନିଆଯାଉ, ଅହଙ୍କାର ହେଉଛି ରାଜସ କାର୍ଯ୍ୟ। ପୁଣି ତ୍ୟାଗୀ ବୈରାଗୀଙ୍କର ତ ଅହଂକାର ହୋଇଥାଏ । ଭକ୍ତ ଅତି ଗର୍ବରେ କହେ— ମୁଁ ଭଗବଦ୍ ଦାସ, ପ୍ରାଣୀମାତ୍ରଙ୍କ କିଙ୍କର। ଏବେ ମୁଁ ଶାନ୍ତ ହୋଇଯାଇଛି, ଇତ୍ୟାଦି। ଯଦିଓ ଏହା ଅହଂକାର, କିନ୍ତୁ ଏହା ହେଉଛି ସାତ୍ତ୍ୱିକ ଅହଙ୍କାର। ମୁଁ ବଳବାନ୍, ମୁଁ ଦୁର୍ଜ୍ଜୟ, ମୋତେ ପୁଣି କେହି ଜିତିପାରେ! ଏହା ହେଉଛି ରାଜସ ଅହଙ୍କାର। ମୁଁ ତ ଏହିଠାରେ ଅଳସୁଆ ଭାବରେ ପଡ଼ି ରୁଳାଉଛି। ମୋର ମୋହ ଓ ବିଷାଦ ହୋଇଯାଇଛି, ଏହା ହେଉଛି ତାମସ

---

 ମିଶ୍ରିତ ଗୁଣର ଲକ୍ଷଣ । ମୁହିଁ ମୋହର ଏହି ଭ୍ରମ ।।
ଯା ଚିତ୍ତ ଧର୍ମ ଅର୍ଥ କାମେ । ଦୃଢ଼େ ରମଇ ଗୃହାଶ୍ରମେ ।।
ତ୍ରିଗୁଣେ ଜନ୍ମ ତା'ର ଜାଣ । ଏବେ କହିବା ବୀର ଶୁଣ ।।

[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କନ୍ଧ ୨୬ଅ]

ଅହଙ୍କାର। ଏହିଭଳି କେତେକ କାମରେ ତିନିହେଁ ମିଳିମିଶି ରହିଥାଆନ୍ତି। ଏହାକୁ ଗୁଣମାନଙ୍କର ସନ୍ନିପାତ କୁହାଯାଏ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ହେ ମୁନିଗଣ! ଉଦ୍ଧବ ପଚାରିବାରୁ ଗୁଣମାନଙ୍କ ସନ୍ନିପାତ ବିଷୟରେ ଭଗବାନ୍ କହିଲେ, ''ହେ ଉଦ୍ଧବ! ମୁଁ ଅଛି, ଏହା ମୋର– ଏ ପ୍ରକାର ବୁଦ୍ଧିରେ ତିନିଗୁଣର ସମାବେଶ ହୋଇଥାଏ। ମୁଁ ଭକ୍ତ, ମୁଁ ବଳବାନ୍, ମୁଁ କ୍ରୋଧୀ, ଭଗବାନ୍ ହେଉଛନ୍ତି ମୋର, ଏହି ରାଜ୍ୟ ମୋର, ଏହି ବାସି ଅନ୍ନ ମୋର ଭୋଜ୍ୟ– ଏହିଭଳି ତିନିଗୁଣରେ ମୁଁ 'ମୋର' ବ୍ୟବହାର ହୋଇପାରେ। ପ୍ରାଣ, ଇନ୍ଦ୍ରିୟ, ବିଷୟରେ ତଥା ମନ ଏ ସମସ୍ତର ସଂଯୋଗରେ ଯେଉଁ କାର୍ଯ୍ୟ ହୁଏ, ସେଥିରେ ବି ତିନି ଗୁଣର ସମାବେଶ ହୋଇଥାଏ। ଏ ସବୁର ମିଶ୍ରଣରେ ଯେଉଁ ବ୍ୟବହାର ହୋଇଥାଏ, ତାହା ସାତ୍ତ୍ୱିକ ହୋଇପାରେ, ରାଜସ ତଥା ତାମସ ବି ହୋଇପାରେ। ତ୍ରିବର୍ଗର ପ୍ରାପ୍ତିରେ ବି ତିନିଗୁଣର ସନ୍ନିପାତ ହୋଇପାରେ।''

ଉଦ୍ଧବ ପଚାରିଲେ, ''ତ୍ରିବର୍ଗରେ ତିନିଗୁଣର ସନ୍ନିପାତ ହୁଏ କିପରି?''

ଭଗବାନ୍ କହିଲେ, ''ଧର୍ମ, ଅର୍ଥ ଆଉ କାମ ଏହି ତିନୋଟିର ନାମ ତ୍ରିବର୍ଗ। ଧର୍ମ ହେଉଛି ସାତ୍ତ୍ୱିକ ବୃତ୍ତି, ଅର୍ଥ ରାଜସ ଆଉ କାମସୁଖ ତାମସ ବୃତ୍ତି। ଏହି ତିନିଙ୍କର ପରିଣାମ ବି ପୃଥକ୍ ପୃଥକ୍ ହୋଇଥାଏ। ଆଉ ତାହା କରିବାରେ ଲାଗିଥିଲେ ଶ୍ରଦ୍ଧା ବଢ଼େ। ଅର୍ଥ ଚିନ୍ତା କରିବାରେ ଲାଗିଲେ ଧନ ପ୍ରାପ୍ତିହୁଏ; ଆଉ କାମଦ୍ୱାରା ରତି ସୁଖ ମିଳେ। ତିନିହେଁ ଯଦିଓ ଏକାଭଳି, ତିନିହେଁଙ୍କର ତ୍ରିବର୍ଗ ସଂଜ୍ଞା ଅଟେ। ହେଲେ, ଗୁଣ ଅନୁସାରେ ବୃତ୍ତି ପୃଥକ୍ ପୃଥକ୍ ହୋଇଥାଏ ଏବଂ ଏଗୁଡ଼ିକର ପରିଣାମରେ ବି ପ୍ରଭେଦ ହୋଇଥାଏ। ବେଳେ ବେଳେ ଏପରି ବି ହୋଇଥାଏ, ନିତ୍ୟନୈମିତ୍ତିକ ଯେଉଁ କର୍ମ ତାହା ତ ଛାଡ଼ି ହୁଏ ନାହିଁ; ତହିଁରେ ତ ଧର୍ମଭୀରୁତା ତଥା ସ୍ୱଭାବାନୁସାର ମଣିଷ ଲାଗିରହିଥାଏ, ଏଥିସହିତ ସକାମ କର୍ମାନୁଷ୍ଠାନ ପ୍ରତି ପ୍ରେମ ବି ଥାଏ, ଘର ବି ଛାଡ଼ି ପାରନ୍ତି ନାହିଁ, ସେଥିରେ ଆସକ୍ତି ପୂର୍ଣ୍ଣମାତ୍ରାରେ ରହିଥାଏ– ଏପରି ସ୍ଥିତିରେ ବୁଝିବାକୁ ହେବ ଯେ, ଏହି ସମୟରେ ତିନୋଟିଯାକ ଗୁଣ ମିଳିମିଶି ରହିଛି। ଅର୍ଥାତ୍ ତିନିଗୁଣର ସନ୍ନିପାତ ହେବାରେ ଲାଗିଛି। ଏହିଭଳି ଗୁଣତ୍ରୟର ସାଂକର୍ଯ୍ୟ ହେବା ଦ୍ୱାରା ବୃତ୍ତିରାଶି ଓ କାର୍ଯ୍ୟରେ ବି ସଂକରତା ଯିବା ଆସିବା କରେ। ମଣିଷମାନଙ୍କ ପାଖରେ ତିନିଗୁଣ ଥାଏ। ଯାହାଙ୍କ ପାଖରେ ସତ୍ତ୍ୱଗୁଣର ପ୍ରଧାନତା ଥାଏ, ସେମାନଙ୍କୁ ସତ୍ତ୍ୱଗୁଣ ପ୍ରଧାନ ପୁରୁଷ କୁହାଯାଏ। ରଜୋଗୁଣର ବିଶେଷତା ଥିଲେ ରଜୋଗୁଣ ପ୍ରଧାନ ହୋଇଥାନ୍ତି। ସେତେବେଳେ ସତ୍ତ୍ୱ ଆଉ ତମ ଅତି ଗୌଣ ହୋଇଥାଏ। ସେମାନେ ରଜୋଗୁଣୀ ଆଉ ତମୋଗୁଣ ପ୍ରଧାନ ହେବା ଦ୍ୱାରା ତମୋଗୁଣୀ କୁହାଯାଆନ୍ତି।

ଉଦ୍ଧବ ପଚାରିଲେ ''ପ୍ରଭୁ! ଏମାନଙ୍କୁ ଚିହ୍ନାଯାଏ କିପରି? ଇଏ ସତ୍ୱଗୁଣ ପ୍ରଧାନ, ଇଏ ରଜୋଗୁଣ ପ୍ରଧାନ ବୋଲି ଆମେ ଜାଣିବା କିପରି?''

ଭଗବାନ୍ କହିଲେ, ''ଉଦ୍ଧବ! ଯାହାର ସ୍ୱଭାବ ଶାନ୍ତ, ବିଶେଷ ବକର ବକର ଯିଏ ହୁଏ ନାହିଁ, ଭାଗ୍ୟବଶତଃ ଯାହା ବି ସୁଖ ଦୁଃଖ ଦିଏ ତା'କୁ ନିର୍ବିକାର ଚିତ୍ତରେ ସହିଯାଏ, ସତ୍ୟ ବ୍ୟବହାର କରେ, ଅନ୍ୟ କାହାରିକୁ ସାମାନ୍ୟ ମାତ୍ର କଷ୍ଟ ଦେବାକଥା ଆଦୌ ମନରେ ଭାବେ ନାହିଁ, ଖରାପ କାମରୁ ସବୁବେଳେ ଦୂରେଇ ରହେ, ଯାହାର ମୁହଁରୁ ସବୁବେଳେ ଶାନ୍ତି ବଚନ ଶୁଣିବାକୁ ମିଳୁଥାଏ– ସେପରି ଲୋକକୁ ସାତ୍ତ୍ୱିକ ସ୍ୱଭାବରେ ବୋଲି ଜାଣିବ।

''ଯାହାର ମୁଖ ମଣ୍ଡଳ ସବୁବେଳେ ରୋଷଯୁକ୍ତ ଦେଖାଯାଏ, ସବୁ ସମୟରେ ରାଗ-ରୋଷ ଯୁକ୍ତ ରୁକ୍ଷ କଥାବାର୍ତ୍ତା କରୁଥାଏ, ସବୁ ସମୟରେ କାମ ଭୋଗର ଲାଳସା ରହିଥାଏ, ବିଷୟ ଭୋଗ ନିମନ୍ତେ ସର୍ବଦା ସଚେଷ୍ଟ ରହିଥାଏ, ଚାଟ୍ ଓ ଖଟାମିଠାରାଗ ଯୁକ୍ତ ଖାଦ୍ୟ ଖାଇବାପାଇଁ ମନ କରୁଥାଏ ; କଟୁ, ଅମ୍ଳ, ଅତିତୀକ୍ଷ୍ଣ ଖାଦ୍ୟ ନିମନ୍ତେ ଆଗ୍ରହ ପ୍ରକାଶ କରୁଥାଏ, ଆତ୍ମବଡ଼ିମା ଅନ୍ୟଙ୍କଠାରୁ ଶୁଣିବା ପାଇଁ ଉତ୍କଣ୍ଠିତ ହେଉଥାଏ ଏବଂ ଶୁଣିବାକୁ ସବୁବେଳେ ଭଲ ପାଉଥାଏ, ଅଭିମାନ ତଥା ମଦମତ୍ତ ରହିଥାଏ– ଏହିପରି ଅନ୍ୟାନ୍ୟ କଥା ଦେଖି ଜାଣିବ ଯେ ଲୋକଟି ରଜୋଗୁଣଯୁକ୍ତ ପୁରୁଷ ।

''ଯାହାକୁ ନିଦ୍ରା, ଆଳସ୍ୟ, ପ୍ରମାଦ ବହୁତ ଆସେ, ଯିଏ କ୍ରୋଧୀ, ଶୁଚି ଅଶୁଚିକୁ ବିଶେଷ ଧ୍ୟାନ ଦିଏ ନାହିଁ, ସବୁବେଳେ କଥା କଥାରେ ମିଥ୍ୟା ବାକ୍ୟ ଉଚ୍ଚାରଣ କରେ, ହିଂସା ଓ କଳହ କରିବା ଦ୍ୱାରା ଆନନ୍ଦ ପାଉଥାଏ, ଅନ୍ୟର ଛିଦ୍ର ଓ ଚୁଗୁଲି ପ୍ରକାଶ କରି ବିଶେଷ ଆନନ୍ଦିତ ହେଉଥାଏ, ଅପବିତ୍ର. ଅଇଁଠା ଅତି ରାଗ ଓ ବାସି ଖାଇବାକୁ ଆଦୌ ସଂକୋଚ କରେ ନାହିଁ– ଏହିପରି ଅନ୍ୟ ଅନେକ ତମୋଗୁଣ ଲକ୍ଷଣଯୁକ୍ତ ବ୍ୟବହାରକୁ ଆଦର କରୁଥିବ– ସେପରି ପୁରୁଷଙ୍କୁ ତମୋଗୁଣ ବୃତ୍ତିର ବୋଲି ଜାଣିବ ।

''ହେ ଉଦ୍ଧବ ! ମୋ ଭଜନକାରୀମାନେ ବି ତିନିଗୁଣ ଯୁକ୍ତ ହୋଇଥାନ୍ତି ।''

ଉଦ୍ଧବ କହିଲେ, ''ଭଗବନ୍ ! ଆପଣଙ୍କ ଭଜନ ତ କେବଳ ସତ୍ତ୍ୱପ୍ରଧାନ ପୁରୁଷ କରିବେ, ରଜୋ ଓ ତମୋଗୁଣୀମାନେ ଆପଣଙ୍କ ଭଜନ କାହିଁକି କରିବେ ? ସତ୍ତ୍ୱଗୁଣୀ ପୁରୁଷ ଆପଣଙ୍କୁ ପାଇବା ପାଇଁ ଇଚ୍ଛା କରନ୍ତି, ତେଣୁ ସେମାନେ ଆପଣଙ୍କ ଭଜନ କରିଥାନ୍ତି । ରଜୋଗୁଣୀ, ତମୋଗୁଣୀ– ଏମାନେ ସଂସାର ଚାହାଁନ୍ତି, ସେମାନେ କାହିଁକି ଆପଣଙ୍କୁ ଭଜନ କରିବେ ?''

ଭଗବାନ୍ କହିଲେ, ''ହେ ଉଦ୍ଧବ ! ସଂସାର ବି ତ ମୋର ରୂପ, ନା ନୁହେଁ ! ମୁଁ ନିଜେ ବି ତ ଗୁଣ ଅନୁସାରେ ହୋଇଯାଏ, ନା ନୁହେଁ । ଦେବରୂପ ହେଉଛି ମୋର ସାତ୍ତ୍ୱିକ ରୂପ । ଯକ୍ଷ, ରାକ୍ଷସ ହେଉଛି ମୋର ରାଜସ ରୂପ । ଭୂତ, ପିଶାଚ, ଡାକିନୀ ସାକିନୀ ଏ ସମସ୍ତ ହେଉଛି ମୋର ତାମସ ରୂପ । ଏହି ସମସ୍ତ ରୂପରେ ମୁଁ ହିଁ ଫଳପ୍ରଦାନ କରିଥାଏ । ଶ୍ମଶାନରେ ଶବ ଉପରେ ବସି ଯେଉଁମାନେ ସାଧନା-ଆରାଧନା କରନ୍ତି, ସେମାନଙ୍କ ଆରାଧନାକୁ ଶବ କ'ଣ ପୂରା କରିବ ! ଶବ ତ ସ୍ୱୟଂ ଏକ ଜଡ଼ ପିଣ୍ଡ, ମୃତକ । ସାଧକର ଭାବଅନୁସାରେ ଭୂତ, ପ୍ରେତ, ପିଶାଚ, ଛାୟା ପୁରୁଷ ଆଦି ରୂପରେ ମୁଁ, ମୁଁ ହିଁ ସେମାନଙ୍କର ଇଚ୍ଛା ପୂରଣ କରେ । ମୋତେ ଯିଏ ଯେଉଁ ରୂପରେ ଭଜନ କରେ ମୁଁ ତାକୁ ସେହି ରୂପ ଦେଖାଇ ତାର ଭାବାନୁସାରେ କାମନା ପୂରଣ କରିଥାଏ ।''

ଉଦ୍ଧବ ପଚାରିଲେ, ''ସେହି ପୂଜା କରୁଥିବା ପୁରୁଷ ସତ୍ତ୍ୱଗୁଣୀ, କି ରଜୋଗୁଣୀ, କି ତମୋଗୁଣୀ– ଆମେ ଜାଣିବା କିପରି ?''

ଭଗବାନ୍ କହିଲେ, ''ଯେଉଁ ପୁରୁଷ ଅଥବା ସ୍ତ୍ରୀ ସ୍ୱଧର୍ମ ପାଳନ କରୁଥିବାବସ୍ଥାରେ, କୌଣସି ପ୍ରକାର ସାଂସାରିକ କାମନା ନ ରଖି ନିତ୍ୟ ନୈମିତ୍ତିକ କର୍ମ ଦ୍ୱାରା ମୋତେ ଭଜନ କରୁଥାନ୍ତି ; ଜନ୍ମାଷ୍ଟମୀ, ଏକାଦଶୀ, ପ୍ରଦୋଷ, ରାମନବମୀ ତଥା ଅନ୍ୟାନ୍ୟ ବ୍ରତ ଓ ଉପବାସ କାମନା-ରହିତ ଭାବରେ, କେବଳ ନିଜର କରଣୀୟ କର୍ତ୍ତବ୍ୟବୋଧରେ କରୁଥାଆନ୍ତି ;

କୌଣସି ପ୍ରକାର ଇଚ୍ଛା ନ ରଖି ବିଭିନ୍ନ ପ୍ରକାର ଭଗବତ୍ ସେବା ଆଦି କର୍ମ କରୁଥାଆନ୍ତି; ଅନବରତ ମୋର ଭଜନ କୀର୍ତ୍ତନରେ ଲାଗିଥାଆନ୍ତି; ସେମାନେ ହୋଇଥାନ୍ତି ମୋର ସାତ୍ତ୍ୱିକ ଭକ୍ତ। ସେମାନେ ପ୍ରକୃତରେ ଭଜନ ପାଇଁ ହିଁ ଭଜନ କରୁଥାଆନ୍ତି। ମୋତେ ପ୍ରୀତ କରିବା ସେମାନଙ୍କ ଭଜନର ପରମ ଲକ୍ଷ୍ୟ ଥାଏ। ମୋତେ ଭଜନ କରୁଥିବା ପୁରୁଷମାନଙ୍କ ମଧ୍ୟରେ ଏମାନେ ଶ୍ରେଷ୍ଠ ଓ ସର୍ବୋତ୍ତମ।

ଉଦ୍ଧବ କହିଲେ, "ପ୍ରଭୁ! ରଜୋଗୁଣୀ ଭଜନକାରୀଙ୍କୁ କିପରି ଚିହ୍ନାଯାଇପାରେ?"

ଭଗବାନ୍ କହିଲେ, "ଯେଉଁମାନେ ବିଧିକୁ କଡ଼ାକଡ଼ି ଅନୁସରଣ କରି ପୂଜା କରନ୍ତି; ପୂଜା ନିମନ୍ତେ ଯଥେଷ୍ଟ ଧନ ବ୍ୟୟ କରନ୍ତି, କିନ୍ତୁ ଏ ସବୁ କରନ୍ତି ଧନ ଓ ସାଂସାରିକ କାମନା କରି– ଯେପରି ମୋତେ ଭଲ ବୋହୂ ମିଳୁ, ପୁଅ ହେଉ, ସାଂସାରିକ ସୁଖ ସମ୍ବନ୍ଧୀୟ ବସ୍ତୁ ମିଳିଲେ ଜାଣିବ ଯେ ସେହି ପୁରୁଷ ରଜୋଗୁଣୀ ଭଜନକାରୀ।"

ଉଦ୍ଧବ ପଚାରିଲେ, "ଏବେ ତମୋଗୁଣୀ ଭଜନକାରୀଙ୍କୁ ଚିହ୍ନିବାର ଲକ୍ଷଣ କୁହନ୍ତୁ।"

ଭଗବାନ୍ କହିଲେ, "ଯିଏ ଭଜନ-ପୂଜା ଆଦି କରି ଏପରି ଫଳ ଚାହେଁ ଯେ ଏହା ପ୍ରୟୋଗ କରି ମୋର ଶତ୍ରୁଙ୍କୁ ନାଶ କରିବି, ଏହି ପୂଜା କରି ଅମୁକଙ୍କୁ ମୁଁ ମୋର ବଶୀଭୂତ କରିବି, ଅମୁକର ମନ ଉଚ୍ଚାଟନ କରିବି ଇତ୍ୟାଦି, ସେପରି ଭଜନ ତମୋଗୁଣୀଙ୍କ ଲକ୍ଷଣ ହୋଇଥାଏ। ବସ୍ତୁତଃ, ହିଂସା ଭାବନାର ସହିତ ଫଳକାମନା କରି ତାମସୀ ଭଜନ କରେ।"

ଉଦ୍ଧବ ପଚାରିଲେ, "ଭଗବନ୍! ଏହି ତିନିଗୁଣ ଆତ୍ମାର ନା ଶରୀରର?"

ଭଗବାନ୍ କହିଲେ, "ଆତ୍ମା ତ ତିନିଗୁଣରୁ ସଦାସର୍ବଦା ପୃଥକ୍ ରହିଥାଏ। ଦେହ ସ୍ୱୟଂ ଜଡ଼, ଏହି ଗୁଣ ତ ଚୈତନ୍ୟାଂଶ ମାୟା ମୋହିତ ଜୀବଙ୍କର। ମାୟା ଉର୍ଦ୍ଧ୍ୱ ଉର୍ଦ୍ଧ୍ୱକୁ ଚାଲିଯିବା ଅର୍ଥ ମାୟାତୀତ ତଥା ଗୁଣାତୀତ ହୋଇଯିବା। ମାୟାର ସଂସର୍ଗରେ କାହାର ସତ୍ତ୍ୱଗୁଣ ବଢ଼େ ତ ଆଉ କାହାର ରଜୋଗୁଣ ଅଥବା କାହାର ତମୋଗୁଣ।"

**ଉଦ୍ଧବ ପଚାରିଲେ, "ପ୍ରଭୁ! ଗୁଣଗୁଡ଼ିକ ବଢ଼ିଲେ ଲକ୍ଷଣ କିପରି ହୋଇଥାଏ? ମୋତେ ପୃଥକ୍ ପୃଥକ୍ ଗୁଣର ଲକ୍ଷଣ କୁହନ୍ତୁ।"**

ଭଗବାନ୍ କହିଲେ, "ଉଦ୍ଧବ! ମୁଁ ପୂର୍ବରୁ କହିସାରିଛି, ସତ୍ତ୍ୱଗୁଣ ପ୍ରକାଶମାନ, ସ୍ୱଚ୍ଛ ଓ ଶାନ୍ତ ସ୍ୱଭାବଯୁକ୍ତ। ଉତ୍ତମ ସତ୍ତ୍ୱଗୁଣଯୁକ୍ତ ପୁରୁଷ ଏହି ସଂସାରୀ ଲୋକଙ୍କର ସଂସର୍ଗରେ ରହିବାକୁ ଇଚ୍ଛା କରନ୍ତି ନାହିଁ। ସେମାନେ ଅତି ଶୁଦ୍ଧତା ଓ ପବିତ୍ରତାରେ ରହିବା ପରେ ବି ଆପଣାର ଶରୀରକୁ ସୁଦ୍ଧା ଘୃଣା କରିଥାନ୍ତି। ସତ୍ତ୍ୱଗୁଣ ଯେତେ ଯେତେ ବଢୁଥାଏ ରଜୋଗୁଣ ଓ ତମୋଗୁଣ ସେତେ ସେତେ ହ୍ରାସ ପାଇବାରେ ଲାଗେ। ପରିଶେଷରେ ସେ ଶୁଦ୍ଧ ସତ୍ତ୍ୱମୟ ହୋଇଯାଏ।

ଉଦ୍ଧବ ପଚାରିଲେ, "ପ୍ରଭୁ! ସତ୍ତ୍ୱଗୁଣ ବଢ଼ିଲେ କ'ଣ ହୁଏ? ସତ୍ତ୍ୱଗୁଣ-ପ୍ରଧାନ ପୁରୁଷର ସ୍ଥିତି କିପରି ହୋଇଥାଏ?"

ଭଗବାନ୍ କହିଲେ, "ସତ୍ତ୍ୱଗୁଣ ବଢ଼ିଲେ ଜ୍ଞାନ ଚାରିଆଡ଼ୁ ଆସି ତା' ଭିତରେ ପ୍ରବେଶ କରୁଥିବା ଭଳି ପୁରୁଷ ଅନୁଭବ କରେ। ସେ ଏକ ପ୍ରକାର ଆନ୍ତରିକ ସୁଖ ଅନୁଭବ କରିବାରେ

ଲାଗେ। ଏକାନ୍ତରେ ବସିଥିବାବେଳେ ତାକୁ ଲାଗେ ସତେ ଯେପରି ସେ ଆନନ୍ଦ ସାଗରରେ ବୁଡ଼ିବାରେ ଲାଗିଛି। ଧର୍ମକାର୍ଯ୍ୟରେ ତା'ର ସ୍ୱାଭାବିକ ପ୍ରବୃତ୍ତି ହେବାରେ ଲାଗେ। ସେ ନିଜେ ଜ୍ଞାନ-ବିଜ୍ଞାନ ସମ୍ପନ୍ନ ହୋଇଯାଇଥିବା ଭଳି ଅନୁଭବ କରିବାରେ ଲାଗେ।''

ଉଦ୍ଧବ ପଚାରିଲେ, ''ରଜୋଗୁଣରେ କ'ଣ ହୁଏ ?''

ଭଗବାନ୍ କହିଲେ, ''ଉଦ୍ଧବ ! ରଜୋଗୁଣର କାମ ହେଲା ହୃଦୟକୁ ରଙ୍ଗରଞ୍ଜନ କରିଦେବା। ରଜୋଗୁଣ ବଢ଼ିଲେ କର୍ମରେ ଓ ଶବ୍ଦାଦି ବିଷୟରେ ସ୍ୱାଭାବିକ ଆସକ୍ତି ହୋଇଯାଏ। ଇଚ୍ଛା ହେଉ ନଥିଲେ ବି ସ୍ୱତଃ ଭେଦ-ବୁଦ୍ଧି ଜାତ ହୋଇଯାଏ। ବଡ଼-ସାନ, ଧନୀ-ଗରିବ ଆଦି ଭେଦଭାବ ହୃଦୟରେ ଘର କରିବାରେ ଲାଗେ। ସ୍ୱଭାବତଃ କର୍ମରେ ପ୍ରବୃତ୍ତି ହେବା ହେଉଛି ରଜୋଗୁଣର ଧର୍ମ। ଏଣୁ ରଜୋଗୁଣର ବୃଦ୍ଧିରେ କର୍ମ ପ୍ରତି ଅତ୍ୟଧିକ ଆସକ୍ତି ଓ ଆଗ୍ରହ ହୋଇଯାଏ।

ଉଦ୍ଧବ ପଚାରିଲେ, ''ତାହାହେଲେ ଏହାର ପରିଣାମ କ'ଣ ହୁଏ ?''

ଭଗବାନ୍ କହିଲେ, ''ପରିଣାମରେ, ରଜୋଗୁଣ ଯେତିକି ଯେତିକି ବଢ଼ୁଥାଏ ସତ୍ତ୍ୱଗୁଣ ଓ ତମୋଗୁଣ ସେତିକି ସେତିକି ସେହି ପୁରୁଷଠାରେ ହ୍ରାସ ପାଇବାରେ ଲାଗେ। ଯେ କୌଣସି କର୍ମର ଆରମ୍ଭ ଦୋଷଯୁକ୍ତ ହୋଇଥାଏ। ଯେପରି ନିଆଁକୁ ଯେଉଁଠିକୁ ବି ନେଇଯାଅ, ଧୂଆଁ ନିଶ୍ଚୟ ତା' ସହିତ ରହିଥାଏ। ଏହିଭଳି ରଜୋଗୁଣର ପ୍ରବୃତ୍ତିରେ ଅହଂକାର ବଢ଼େ। ହୃଦୟରେ ଏକ ପ୍ରକାର ଆନ୍ତରିକ ଅଶାନ୍ତି ଅନୁଭୂତ ହୁଏ। ଭଗବାନ୍‌ଙ୍କର ସେବା ରୂପ କର୍ମକୁ ଛାଡ଼ି ସଂସାରରେ ଆଉ ଏପରି କୌଣସି କର୍ମ ନାହିଁ ଯାହାର ପରିଣାମ ଦୁଃଖଦାୟୀ ହୋଇ ନଥାଏ। ଏଣୁ ରଜୋଗୁଣୀ ସବୁବେଳେ ତା' ଭିତରେ ଦୁଃଖୀ ଓ ଅଶାନ୍ତ ରହିଥାଏ, ଯଦିଓ ତାର ସାଂସାରିକ ସମ୍ପତ୍ତି କମି ଯାଏ ନାହିଁ। ପ୍ରାୟ ଧନୀ ଲୋକମାନେ ରଜୋଗୁଣୀ ହୋଇଥାନ୍ତି। ଅନ୍ୟ ଅର୍ଥରେ କହିଲେ, ଧନ ବଢ଼ିଲେ ରଜୋଗୁଣ ବୃଦ୍ଧି ପାଏ। ଏଥିଯୋଗୁ ଶ୍ରେୟ କାମନା କରୁଥିବା ପୁରୁଷ ଧନ ସଂଗ୍ରହ କରିବା ନିଷେଧ।''

ଉଦ୍ଧବ ପଚାରିଲେ, ''ତମୋଗୁଣର ସ୍ୱରୂପ କ'ଣ ?''

ଭଗବାନ୍ କହିଲେ, ''ତମର ସ୍ୱରୂପ ହେଉଛି ଅଜ୍ଞାନ। ତମରେ ବୁଦ୍ଧି ଉପରେ ଅବିଦ୍ୟାର ଏକ ଆବରଣ ଢାଙ୍କି ହୋଇଯାଏ। ସେତେବେଳେ ଖରାପ କଥା ଭଲ ଲାଗେ। ଅଧର୍ମ ଧର୍ମ ଭଳି ଜଣାପଡ଼େ। ତମୋଗୁଣ ସତ୍ତ୍ୱ ଓ ରଜକୁ ଦବାଇ ଅତିଶୀଘ୍ର ବଢ଼ିବାରେ ଲାଗେ। ତମୋଗୁଣ ସ୍ୱଭାବ ହେଉଛି ଜଡ଼ତା, ଫଳରେ ତମୋଗୁଣୀ ପୁରୁଷର ବୁଦ୍ଧି ଜଡ଼ ହୋଇଯାଏ।''

ଉଦ୍ଧବ ପଚାରିଲେ, ''ଏହାର ପରିଣାମ କ'ଣ ହୁଏ ?''

ଭଗବାନ୍ କହିଲେ, ''ଏହାର ପରିଣାମ ଶୋକ ଓ ମୋହ ହିଁ ହୋଇଥାଏ। ଚିତ୍ତରେ ଖିନ୍ନତା ଆସିଯାଏ। ହିଂସା କର୍ମରେ ସ୍ୱାଭାବିକ ରୁଚି ବଢ଼େ। ନିଦ୍ରା, ଆଳସ୍ୟ ଅଥବା ପ୍ରମାଦର ବଶୀଭୂତ ହୋଇ ପଡ଼ି ରହିବାକୁ ଇଚ୍ଛା ହୁଏ। ମନରେ ନାନା ଆଶା ଓ ଆଶଙ୍କା ଜାତ ହେଉଥାଏ। ତମୋଗୁଣୀ ପୁରୁଷ ଅନ୍ୟ କାହାକୁ ବିଶ୍ୱାସ କରିପାରେ ନାହିଁ।''

ଉଦ୍ଧବ ପଚାରିଲେ, ''ଏହି ଗୁଣ ଗୁଡ଼ିକ ବଢ଼ିବା ଦ୍ୱାରା ଚିତ୍ତର ବୃତ୍ତି କିପରି ହୋଇଥାଏ ?''

ଭଗବାନ୍ କହିଲେ, ''ଜଣଙ୍କର ସ୍ଥିତି ଦେଖି ସେ କେଉଁ ଗୁଣର ତାହା ସ୍ଥିର କରାଯାଇ ପାରେ। ଯେତେବେଳେ ଚିତ୍ତରେ ସ୍ୱାଭାବିକ ପ୍ରସନ୍ନତା ଥିବ, ଇନ୍ଦ୍ରିୟମାନେ ସ୍ୱତଃ ଶାନ୍ତ ହୋଇଯାଇଥିବେ, କାହାକୁ ବା କୌଣସି କଥାକୁ ଭୟ ହେଉ ନଥିବ, ମନରେ କୌଣସି ପ୍ରକାର କୌଣସି ବସ୍ତୁ ପ୍ରତି ଆସକ୍ତି ପ୍ରତୀତ ହେଉ ନଥିବ— ତେବେ ଜାଣିବାକୁ ହେବ ଯେ ସକଳ ଗୁଣର ଶ୍ରେଷ୍ଠ— ମୋତେ ପାଇପାରିବା— ସତ୍ତ୍ୱଗୁଣ ଏବେ ବଢ଼ି ଯାଇଛି। ଏହି ସମୟରେ ବୃତ୍ତି ହୋଇଥାଏ ସତ୍ତ୍ୱ-ପ୍ରଧାନ।''

ଉଦ୍ଧବ ପଚାରିଲେ, ''ପ୍ରଭୁ! ରଜୋଗୁଣ ବୃତ୍ତି କିପରି ଅନୁମାନ କରିହୁଏ ?''

ଭଗବାନ୍ କହିଲେ, ''କର୍ମରେ ପ୍ରବୃତ୍ତି ହେଉଥିବ, କିନ୍ତୁ-କ୍ରିୟା ବିକୃତ ହୋଇଗଲେ, ଚିତ୍ତ ଚଞ୍ଚଳ ହୋଇଉଠିଲେ, ବୁଦ୍ଧି ବିକୃତ ତୁଲ୍ୟ ହୋଇଗଲେ, ଇନ୍ଦ୍ରିୟମାନଙ୍କରେ ଅଶାନ୍ତି ଅନୁଭୂତ ହେଲେ, ଇନ୍ଦ୍ରିୟ ଲୋଲୁପତା ବଢ଼ିଗଲେ, ଭୋଗ ବାସନା ପ୍ରବଳ ହୋଇଉଠିଲେ, ବିଷୟବାସନା ହେତୁ ମନ, ଆଉ ମିଥ୍ୟା ଆହାର ବିହାର ଯୋଗୁ ଶରୀର ଅସୁସ୍ଥ ହୋଇଗଲେ, ଏହି ସମସ୍ତ କାରଣ ଦେଖିଲେ ଅନୁମାନ ସହଜରେ କରାଯାଇ ପାରେ ଯେ ସେହି ସମୟରେ ରଜୋଗୁଣ ବୃଦ୍ଧି ପାଇବାରେ ଲାଗିଛି।

ଉଦ୍ଧବ ପଚାରିଲେ, ''ତମୋଗୁଣୀ ବୃତ୍ତିର ଅନୁମାନ କେଉଁ କେଉଁ ଲକ୍ଷଣରୁ ଜଣାପଡ଼େ ପ୍ରଭୁ ?''

ଭଗବାନ୍ କହିଲେ, ''ଯେତେବେଳେ ନିଜର ଜ୍ଞାନେନ୍ଦ୍ରିୟମାନେ ସେମାନଙ୍କର ସ୍ୱଭାବ-ସୁଲଭ କାମ କରିବାରେ ଅସମର୍ଥ-ଭଳି ହୋଇଯାଆନ୍ତି ; ଭଉଣୀ ଓ ଝିଅଙ୍କୁ ଅନ୍ୟ ଦୃଷ୍ଟିରେ ଦେଖିବାରେ ଲାଗେ ; ଅଧର୍ମ କଥାକୁ ଧର୍ମ ବୋଲି କହି ଶୁଣିବା ପାଇଁ ଆଗ୍ରହ କରେ, ସ୍ୱାଦୁ ପଦାର୍ଥକୁ ଅସ୍ୱାଦୁ ଓ ଅସ୍ୱାଦୁ ପଦାର୍ଥକୁ ସୁଆଦିଆ କହେ ; ଦେହ ଝୋଲମାରିବା ଭଳି ଓ ଭାଙ୍ଗି ପଡ଼ିବା ଭଳି ଲାଗେ ; ମନରେ ଜଡ଼ତା, ଶୂନ୍ୟତା ଅନୁଭବ ହୁଏ ; ଅଜ୍ଞାନ ଓ ଗ୍ଲାନି ବୃଦ୍ଧିପାଏ ; ଏହିଭଳି ଲକ୍ଷଣ ଦେଖିଲେ ଜାଣିବ ଯେ ତମୋଗୁଣ ତା'ର ଆଧିପତ୍ୟ ବିସ୍ତାର କରିନେଇଛି। ଏହା ବଢ଼ିବା ଦ୍ୱାରା ସତ୍ତ୍ୱ ଓ ରଜୋଗୁଣ ଖୁବ୍ ଶୀଘ୍ର ହ୍ରାସ ପାଇଯାଏ। ହେ ଉଦ୍ଧବ! ମୁଁ ତୁମକୁ କେତେ ଅବା କହିବି, ତୁମେ ଜାଣ ଯେ ସଂସାରରେ ଏପରି କେହି ଜଣେ ବୋଲି ନାହିଁ ଯିଏ ଗୁଣତ୍ରୟର ଅଧୀନରେ ନାହିଁ ବୋଲି କହିପାରିବ। ସମସ୍ତେ ଗୁଣମାନଙ୍କ ଦ୍ୱାରା ପ୍ରେରିତ ହୋଇ ସକଳ ପ୍ରକାର ବ୍ୟବହାର କରିଥାନ୍ତି। କୌଣସି ଗୁଣ ବଢ଼ିଲେ ତଦନୁରୂପ ବୃତ୍ତି ବଢ଼ିଥାଏ, ଓ ଅନ୍ୟ ଗୁଣଗୁଡ଼ିକର ବୃତ୍ତି ହ୍ରାସ ପାଇଥାଏ। କୌଣସି ଗୁଣ ବଢ଼ିଲେ କୌଣସି ବର୍ଗର ବୃଦ୍ଧି ହୋଇଥାଏ।

ଉଦ୍ଧବ ପଚାରିଲେ, ''ଭଗବନ୍! କେଉଁ ଗୁଣ ବଢ଼ିଲେ, କେଉଁ କେଉଁ ବର୍ଗର ବୃଦ୍ଧି ହୋଇଥାଏ ତାହା ବୁଝାଇ ଦିଅନ୍ତୁ।''

ଭଗବାନ୍ କହିଲେ, ''ଶୁଣ! ସତ୍ତ୍ୱଗୁଣ ବଢ଼ିଲେ ଦେବତାମାନଙ୍କର ବୃଦ୍ଧି ହୋଇଥାଏ। ସତ୍ତ୍ୱପ୍ରଧାନ ପୁରୁଷଙ୍କଠାରେ ଦୈବୀଗୁଣର ଅଧିକ ସଞ୍ଚାର ହୋଇଥାଏ। ତା' ଠାରେ ଦେବତାମାନେ ଆବେଶ ହୁଅନ୍ତି। ତା' ଶରୀରକୁ ମାଧ୍ୟମ କରି ଦେବତା ଆଦେଶ ଦିଅନ୍ତି। ସେହିଭଳି ରଜୋଗୁଣ ବଢ଼ିଲେ ଅସୁରଙ୍କ ବଳ ବଢ଼ିଯାଏ। ବୃତ୍ତି ଆସୁରୀ ହୋଇଯାଏ। ଅସୁରଙ୍କ ଭାବ ହୋଇଯିବାରୁ ଅସୁରଭାବାପନ୍ନ ପ୍ରାଣୀ ହୋଇଯାଆନ୍ତି। ତମୋଗୁଣ ବଢ଼ିବା ଦ୍ୱାରା ରାକ୍ଷସ, ଭୂତ, ପ୍ରେତ,

ପିଶାଚଙ୍କ ବଳ ବଢ଼ିଥାଏ। ହେ ଉଦ୍ଧବ! ସଂସାରରେ ଯେତେ ତ୍ରିକ ଅଛନ୍ତି ଏମାନେ ସମସ୍ତେ ତିନିଗୁଣର ହିଁ ପ୍ରତୀକ। ଏହି ଯେଉଁ ତ୍ରିଦୋଷ ★ ଦେଖୁଛ ଏମାନଙ୍କର ସମ୍ବନ୍ଧ ତିନିଗୁଣ ସହିତ ଅଛି। କଫ ସତ୍ତ୍ୱ-ପ୍ରଧାନ, ପିତ୍ତ ହେଉଛି ରଜୋଗୁଣ ପ୍ରଧାନ। ତ୍ରିଲୋକର ସ୍ୱର୍ଗ ସତ୍ତ୍ୱ-ପ୍ରଧାନ, ଆଉ ରୁଦ୍ର ତମୋଗୁଣ ପ୍ରଧାନ। ତ୍ରିଲୋକରେ ସ୍ୱର୍ଗ ସତ୍ତ୍ୱ-ପ୍ରଧାନ, ପୃଥିବୀ ରଜୋଗୁଣ ପ୍ରଧାନ, ତଥା ପାତାଳ ହେଉଛି ତମୋଗୁଣ ପ୍ରଧାନ। ଅବସ୍ଥାଗୁଡ଼ିକ ଭିତରୁ ଜାଗ୍ରତ ଅବସ୍ଥା ସତ୍ତ୍ୱ-ପ୍ରଧାନ, ସ୍ୱପ୍ନାବସ୍ଥା ରଜୋଗୁଣ ପ୍ରଧାନ, ଆଉ ସୁଷୁପ୍ତି ହେଉଛି ତମୋଗୁଣ ପ୍ରଧାନ ବୋଲି କୁହାଯାଇଛି। ଏହି ତିନିର ଉପର ଯେଉଁ ତୁରୀୟାବସ୍ଥା ଅଛି ତାହା ସର୍ବବ୍ୟାପକ ଆତ୍ମା ସଦୃଶ ହୋଇଥିବାରୁ ତିନିଙ୍କଠାରେ ବ୍ୟାପ୍ତ ହୋଇଥାଏ।''

ଉଦ୍ଧବ କହିଲେ, ''ଭଗବନ୍! ତିନିଗୁଣ ସମ୍ବନ୍ଧରେ ଉତ୍ତମ ରୂପେ ଜାଣିବା ତ ନିହାତି ଦରକାର। କୃପାକରି ମୋତେ ତିନିଗୁଣର କାର୍ଯ୍ୟ ବିଷୟରେ ଅଧିକ ବୁଝାଇ ଦିଅନ୍ତୁ।''

ଭଗବାନ୍ କହିଲେ, ''ଉଦ୍ଧବ! ମୁଁ ତୁମକୁ କେତେ କହିବି! ସଂସାରରେ ସର୍ବତ୍ର ଏହି ଗୁଣ ବ୍ୟାପିଛି। ତେବେ, ସଂକ୍ଷେପରେ ତୁମକୁ କେତୋଟି କଥା କହୁଛି ଶୁଣ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ! ଭଗବାନ୍ ତ୍ରିଗୁଣର କାର୍ଯ୍ୟ ସମ୍ବନ୍ଧରେ ଯାହା କହିଲେ ମୁଁ ଆପଣମାନଙ୍କୁ ତାହା କହୁଛି, ଆପଣମାନେ ଶୁଣନ୍ତୁ।''

### ଛପ୍ପୟ

ବଢ଼େ ସତ୍ତ୍ୱ ଶମ ଆଦି ବଢ଼େଁ ଗୁନ ଚିତ ପ୍ରସନ୍ନ ଅତି।
ଜ୍ଞାନାଦିକ ସମ୍ପନ୍ନ ହୋହି ସୁଖ ଧରମ ମହଁ ମତି॥
ଜବ ରଜ ଅତି ବଢ଼ି ଜୟ କାମ ସୁଖ ଇ ପ୍ରିୟ ଲଗୈ।
ଚିତ୍ତ ଚଞ୍ଚଳ ମନ ଭ୍ରମିତ ଦ୍ରବ୍ୟ ଯଶ ଇଚ୍ଛା ଜାଗୈ॥
ତମ କୀ ହୋବୈ, ପ୍ରବଲତା, ହିଂସା, ନିଦ୍ରା, ଶୋକ, ଭୟ।
ବଢ଼ୈ ଗ୍ଲାନି, ମନ ଶୂନ୍ୟବତ, ଖିନ୍ନ ଚିତ୍ତ ଅଜ୍ଞାନମୟ॥



---

★ ବାତ, ପିତ, କଫ।

# ଉଦ୍ଧାର ପାଇବାର ଉପାୟ

**ଦ୍ରବ୍ୟଂ ଦେଶଃ ଫଳ କାଲୋ ଜ୍ଞାନଂ କର୍ମ ଚ କାରକଃ ।**
**ଶ୍ରଦ୍ଧାବସ୍ଥା କୃତିର୍ନିଷ୍ଠା ତ୍ରୈଗୁଣ୍ୟଃ ସର୍ବ ଏବ ହି ॥ ★**

[ଶ୍ରୀଭା. ୧୧ସ୍କ.୨୫ଅ. ୩୦ଶ୍ଳୋକ]

**ଛପ୍ପୟ**

ଦେବ ଅସୁର ଅରୁ ଯାତୁଧାନ ବଲ ବାଢ଼ୈ କ୍ରମ ତୈ ।
ସତ୍ୱ, ରଜୋଗୁଣ ଔର ଜ୍ଞାନନାଶକ ଗୁନ ତମ ତୈ ॥
ସ୍ୱରଗ, ଭୂମି ଅରୁ ନରକ ଦେବତ୍ରୟ ତୀନ ଅବସ୍ଥା ।
ବାତ, ପିତ୍ତ କଫ ସବନି ମାହିଁ ଗୁନ ତୀନ ଅବସ୍ଥା ॥
ଭୋଗ, ଧରମ, ବ୍ରତ, ନିୟମଫଲ, କାଲ, କରମ, କରତା କରନ ।
ଦ୍ରବ୍ୟ, ଦେଶ ନିଷ୍ଠା, କ୍ରିୟା, ଜ୍ଞାନ, ଅବସ୍ଥା ଅରୁ ଅସନ ॥

ଜାଲ ଯେପରି ଗୁଣରେ (=ସୂତା) ତିଆରି ହୁଏ, ଠିକ୍ ସେହିଭଳି ଏହି ସଂସାର ବି ଗୁଣ ସମୂହରେ ତିଆରି ହୋଇଛି । ବସ୍ତ୍ରର ଯେଉଁଠିକୁ ଦେଖିବା ସୂତା ବୁଣା ହୋଇଥିବା ଦେଖିବାକୁ ପାଇବା । ଠିକ୍ ସେହିଭଳି ସଂସାରରେ ଯେଉଁଠି ଦୃଷ୍ଟି ପକାଇବା ଗୁଣଗୁଡ଼ିକର ପ୍ରାଧାନ୍ୟ ପ୍ରତୀତ ହୋଇଥାଏ । ତ୍ରିଗୁଣର ନାମ ହେଉଛି ସଂସାର । ତ୍ରିଗୁଣର ସମ ଯେତେବେଳେ ହୁଏ ସେତେବେଳେ ପ୍ରଳୟ ହୁଏ । ଗୁଣଗୁଡ଼ିକରେ ବିଷମତା ଆସିଯିବା ସଂଗେ ସଂଗେ ସଂସାର ଚକ୍ର ଚାଲିବା ଆରମ୍ଭ କରିଦିଏ । ଏଣୁ ସଂସାରରେ ଯେତେ ଖୋଜିଲେ ସୁଦ୍ଧା କେଉଁଠି ହେଲେ ସମାନତା ମିଳେ ନାହିଁ; କିଛି ନା କିଛି ବିଷମତା ନିଶ୍ଚୟ ଥାଏ । ଗୋଟିଏ ସ୍ଥାନରେ ଏକ ବ୍ୟକ୍ତି ଏକ ହିଁ ସାଧନ ଦ୍ୱାରା ନିର୍ମିତ ଲକ୍ଷେ କି କୋଟିଏ ବସ୍ତୁରେ ସୁଦ୍ଧା ଧ୍ୟାନ ପୂର୍ବକ ଦେଖିଲେ କିଛି ନା କିଛି ନ୍ୟୂନାଧିକ ନିଶ୍ଚୟ ପ୍ରତୀତ ହୋଇଥାଏ । ଏ ସବୁ ହେଉଛି ତିନିଗୁଣର ବିଷମତାର ପ୍ରଭାବ ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ହେ ମୁନିଗଣ ! ଉଦ୍ଧବ ଯେତେବେଳେ ତିନି ଗୁଣର କାର୍ଯ୍ୟାବଳୀ ସମ୍ବନ୍ଧରେ ଅଧିକ ଜାଣିବା ପାଇଁ ଇଚ୍ଛା ପ୍ରକାଶ କଲେ, ସେତେବେଳେ ଭଗବାନ୍ କହିଲେ, "ଉଦ୍ଧବ ! ତିନିଗୁଣ ଅନୁସାରେ ଗତି ବି ତିନିପ୍ରକାର ହୋଇଥାଏ ।"

ଉଦ୍ଧବ କହିଲେ, "ଭଗବନ୍ ! କେଉଁ ଗୁଣ ଦ୍ୱାରା କି ଗତି ମିଳେ ତାହା ମୋତେ ବୁଝାଇ କୁହନ୍ତୁ ।"

---



| | | | |
|---|---|---|---|
| ଯେ ଦ୍ରବ୍ୟ ଦେଶ କାଳ ଧର୍ମ | । | ଆକୃତ ଫଳ ଶ୍ରଦ୍ଧା ଜ୍ଞାନ | ॥ |
| ଅବସ୍ଥା ନିଷ୍ଠା ଆଦି ଜାଣ | । | ତ୍ରିଗୁଣ ସକଳ ଏ ଧର୍ମ | ॥ |
| ଯେ କିଛି ଦେଖି ଶୁଣି କର୍ଣ୍ଣେ | । | ଯେ ଅବା ସ୍ଥାପି ଅନୁମାନେ | ॥ |
| ପ୍ରକୃତି ପୁରୁଷରୁ ଜାତ | । | ଏ ସର୍ବ ତ୍ରିଗୁଣେ ଯନ୍ତ୍ରିତ | ॥ |

[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କନ୍ଧ ୨୨ଅ]

ଭଗବାନ୍ କହିଲେ, ''ଗୁଣଗୁଡ଼ିକ ମଧ୍ୟରେ ସତ୍ତ୍ୱଗୁଣ ହେଉଛି ପ୍ରଧାନ। ଏହାଦ୍ୱାରା ନିରବଚ୍ଛିନ୍ନ ବେଦାଧ୍ୟୟନ କରି ବ୍ରାହ୍ମଣମାନେ ଉତ୍ତରୋତ୍ତର ଉର୍ଦ୍ଧ୍ୱଲୋକକୁ ଯାଇଥାଆନ୍ତି। ସତ୍ତ୍ୱ ଯେତେ ଅଧିକ ହୁଏ ସେତେ ଉର୍ଦ୍ଧ୍ୱ ଲୋକକୁ ଯିବାର ସୁବିଧା ମିଳେ। ସତ୍ତ୍ୱଗୁଣ ପ୍ରଧାନ ବ୍ୟକ୍ତି କ୍ରମାନୁସାରେ ଭୂଃ, ଭୁବଃ, ସ୍ୱଃ, ମହଃ, ଜନ, ତପ ତଥା ସତ୍ତ୍ୱ ପ୍ରାପ୍ତ ହୋଇଥାନ୍ତି।

''ତମୋଗୁଣ ପ୍ରଧାନ ବ୍ୟକ୍ତିମାନେ ନିମ୍ନସ୍ଥ ନରକାଦି ପ୍ରାପ୍ତ ହୁଅନ୍ତି। ସେମାନେ ପୃଥିବୀରେ ଜନ୍ମ ହୋଇଥିଲେ ଘୁସୁରି, କୁକୁର, ସର୍ପ, ବିଛା ତଥା ବୃକ୍ଷ-ଲତା ଆଦି ଯୋନି ପାଇଥାନ୍ତି। ଯେଉଁମାନେ ଏହି ତିନିଗୁଣ ଉର୍ଦ୍ଧ୍ୱରେ ଥାଆନ୍ତି ସେମାନଙ୍କୁ ସ୍ୱର୍ଗ ଲାଭ ହୁଏ ନାହିଁ କି ନରକ, ଏବଂ ସେମାନେ ପୃଥିବୀରେ ବି ଜନ୍ମ ହୁଅନ୍ତି ନାହିଁ। ସେମାନେ ମୋର ଉପାସକ, ମୋତେ ହିଁ ପ୍ରାପ୍ତ ହୋଇଥାନ୍ତି। ଏହି ଭଳି କର୍ମ ମଧ୍ୟ ତ୍ରିବିଧ।''

ଉଦ୍ଧବ ପଚାରିଲେ, ''ପ୍ରଭୁ! କର୍ମ ତ୍ରିବିଧ କିପରି ? ସାତ୍ତ୍ୱିକ, ରାଜସିକ ଆଉ ତାମସିକ କର୍ମ ଗୁଡ଼ିକ କ'ଣ କ'ଣ ?''

ଭଗବାନ୍ କହିଲେ, ''କର୍ତ୍ତବ୍ୟ ବୁଦ୍ଧିରେ ଯେଉଁ କର୍ମ କରାଯାଏ, କର୍ମର ସମସ୍ତ ଫଳ ମୋତେ ଅର୍ପଣ କରିଦିଆଯାଏ, କର୍ତ୍ତାର କର୍ତ୍ତାପଣ ରହେ ନାହିଁ। ଏପରି ସମସ୍ତ ନିଷ୍କାମ କର୍ମକୁ ସାତ୍ତ୍ୱିକ କୁହାଯାଏ। ଯେଉଁ ସଂକଳ୍ପ ପୂର୍ବ ତ୍ରିବର୍ଗ ଫଳ ପ୍ରାପ୍ତି ହେତୁ ସକାମ ହୋଇ ସୁଦ୍ଧା ହିଂସା ଦମ୍ଭଯୁକ୍ତ ହୋଇଯାଇଥାଏ, ଯାହାର ଉଦ୍ଦେଶ୍ୟ ଅନ୍ୟଙ୍କୁ ମାରିବା ଅଥବା କଷ୍ଟ ଦେବା ହୋଇଥାଏ, ସେପରି କର୍ମଗୁଡ଼ିକ ତାମସିକ ପଦବାଚ୍ୟ। କର୍ମ ଭଳି ଜ୍ଞାନ ମଧ୍ୟ ତିନି ପ୍ରକାରର।''

ଉଦ୍ଧବ ପଚାରିଲେ, ''ତିନି ପ୍ରକାର ଜ୍ଞାନ କ'ଣ କ'ଣ ?'' ଭଗବାନ କହିଲେ ''ଆତ୍ମା ଅସଙ୍ଗ। ଏହାର ଦୃଶ୍ୟ ପ୍ରପଞ୍ଚ ସହିତ କୌଣସି ସମ୍ବନ୍ଧ ନାହିଁ। ଦେହ ପୃଥକ୍। ଏଥିରେ ରହୁଥିବା ଦେହୀ ପୃଥକ୍। ଭଗବାନ କହିଲେ, ''ଆତ୍ମା ଅସଙ୍ଗ। ଏହାର ଦୃଶ୍ୟ ଏ ପ୍ରକାର ଜ୍ଞାନ ହେଉଛି ସାତ୍ତ୍ୱିକ। ଆତ୍ମା ଦ୍ୱାରା ହିଁ ସବୁକାର୍ଯ୍ୟ ହୋଇଥାଏ, ଆତ୍ମା ହେଉଛି କର୍ତ୍ତା ଓ ଆତ୍ମା ହିଁ ଭୋକ୍ତା। ଅର୍ଥାତ୍, ଏହି ଶରୀରକୁ ସବୁବୋଲି ମାନିନେଇ ପଞ୍ଚଭୂତରେ ନିର୍ମିତ ପଦାର୍ଥଗୁଡ଼ିକୁ ଦିନରାତି ଅନ୍ୱେଷଣ କରୁଥାଏ, ସେମାନଙ୍କର ସଂଯୋଗରେ ନାନାପ୍ରକାର ଘାତକ ଅସ୍ତ୍ରଶସ୍ତ୍ର ନିର୍ମାଣ କୌଶଳ ଶିଖିବା, ଶରୀରକୁ ସୁଖ ଦେବା, ତଥା ଶତ୍ରୁଙ୍କୁ ପରାସ୍ତ କରିବାର ଉପାୟ ଅଧିକରୁ ଅଧିକ ଆହରଣ କରିବା ହେଉଛି ରାଜସିକ ଜ୍ଞାନ। ଘଟ ପଟ ଆଦି ସାଧାରଣ ବସ୍ତୁ ବିଷୟରେ ଜାଣିବା, ଘୁଙ୍ଗା ତଥା ବୁଦ୍ଧିହୀନଙ୍କୁ ଜଣାଯାଏ– ଏହା ହେଉଛି ତାମସିକ ଜ୍ଞାନ। ଆଉ ଯେଉଁମାନଙ୍କର 'ମୁଁ ଗୁଣାତୀତ ପରମାତ୍ମାଙ୍କ' ସ୍ୱରୂପର ଜ୍ଞାନ ହୋଇଯାଇଥାଏ। ତେବେ ସେହି ଜ୍ଞାନ ତିନିଗୁଣର ଉର୍ଦ୍ଧ୍ୱରେ ନିର୍ଗୁଣ ହୋଇଯାଇଥାଏ। କାରଣ, ମୁଁ ହେଉଛି ସ୍ୱୟଂ ନିର୍ଗୁଣ। ଏହିଭଳି ରହିବା ସ୍ଥାନ ମଧ୍ୟ ତିନି ପ୍ରକାରର ହୋଇଥାଏ।''

ଉଦ୍ଧବ ପଚାରିଲେ, ''ସେହି ସ୍ଥାନଗୁଡ଼ିକ କ'ଣ ଭଗବନ୍।''

ଭଗବାନ୍ କହିଲେ, ''ସାତ୍ତ୍ୱିକ ବାସ ହେଉଛି ଏକାନ୍ତ ଶାନ୍ତ ବଣ। ଯେଉଁମାନେ ସାତ୍ତ୍ୱିକ ପ୍ରକୃତିର ହୋଇ ନଥାନ୍ତି, ସେମାନେ ବଣରେ ରହି ସୁଦ୍ଧା ସୁସ୍ଥିର ରହିପାରନ୍ତି ନାହିଁ। ସେଠାରେ ରହି ସେମାନେ ସକଳ ପ୍ରକାର ବିଷୟ ଭୋଗ ଏକତ୍ରିତ କରିବାରେ ଲାଗିଥାଆନ୍ତି। ବନବାସର ଅର୍ଥ ହେଉଛି, ବଣରେ ରହି ପ୍ରକୃତି ସହିତ କ୍ରୀଡ଼ା କରିବା, କନ୍ଦମୂଳ ଫଳ ଖାଇ ବଞ୍ଚିବା, ଏବଂ ମୋତେ ଚିନ୍ତା କରି ସମୟ ଅତିବାହିତ କରିଦେବା। ଏମିତି ଦେଖିବାକୁ

ଗଲେ, ଚୋର, ଡକାୟତ, ଜୁଆଡ଼ି ଆଉ ଖୁନିମାନେ ବଣରେ ରହିଥାନ୍ତି । ହେଲେ, ସେମାନଙ୍କର ରହିବା ସାତ୍ତ୍ୱିକ ହୋଇ ନଥାଏ, ତାମସ ହୋଇଥାଏ । କାରଣ ସେମାନେ ସେଠାରେ ଭଜନ ନ କରି ଦ୍ୟୂତ ବ୍ୟଭିଚାର ଆଦି କରନ୍ତି । ସେହି ଲୋକର ବନବାସ ସାତ୍ତ୍ୱିକ ହୋଇଥାଏ ଯିଏ ବୃକ୍ଷଲତାକୁ ଆଦର ଆପଣାର କରି ପ୍ରଭୁ ଚିନ୍ତନରେ ସମୟ ଅତିବାହିତ କରିଥାଏ ।

''ଗ୍ରାମ ଅଥବା ସହରରେ ରହିବାକୁ ରାଜସ ନିବାସ କୁହାଯାଏ । ବିଶେଷକରି ବୃହତ୍ ନଗରରେ ଅବସ୍ଥାନ କରିବାକୁ ସେଠାରେ ଜୀବନ ଅତ୍ୟନ୍ତ ଅଶାନ୍ତ ରହେ, ଯେଉଁଆଡ଼େ ଦୃଷ୍ଟି ପଡ଼େ, କେବଳ ରାଜସ ଠାଣି ହିଁ ଦେଖାଯାଏ । ବିବିଧ ପ୍ରକାରର ରାଜସିକ ଭୋଜନ ସବୁଆଡ଼େ ଦେଖାଯାଏ । ନୃତ୍ୟ, ଗୀତ, ନାଟକ ଅଭିନୟ, ଖେଳକୁଦ, ବିହାର ତଥା ପ୍ରତ୍ୟେକ କାମ ରାଜସିକ ହୋଇଥାଏ । ପ୍ରତ୍ୟେକ ଅଶାନ୍ତ ଓ ବ୍ୟଗ୍ର ରହିଥାନ୍ତି । ରାଜ୍ୟାଧିକାରୀମାନେ ଯା-ଆସ କରୁଥାନ୍ତି । ସେମାନଙ୍କର ରାଜସିକ ସ୍ୱାଗତ ସତ୍କାର ଲାଗିରହିଥାଏ । ଏହିଭଳି ପ୍ରତ୍ୟେକ କାମରେ ରଜୋଗୁଣ ହୋଇଥିବାରୁ ତା'ର ପ୍ରଭାବ ପ୍ରାୟତଃ ସମସ୍ତଙ୍କ ଉପରେ ପଡ଼େ। ପୁରୁଷ ଯେତେ ସତ୍ତ୍ୱ ପ୍ରଧାନ ହୋଇଥାଉ ପଛେ, ସେ ଯଦି ବଡ଼ ବଡ଼ ନଗରରେ ରହେ, ତେବେ ନିଶ୍ଚୟ କିଛି ରଜୋଗୁଣ ତା' ଭିତରେ ପ୍ରବେଶ କରିଯାଏ । ଏଣୁ, ଗ୍ରାମ ଓ ନଗରରେ ରହିବାକୁ ରାଜସ ନିବାସ କୁହାଯାଏ ।

''ଯେଉଁଠାରେ କଳହ, ବ୍ୟଭିଚାର, ଦ୍ୟୂତ ଆଦି କୁକର୍ମ ହେଉଥାଏ, ସେହି ସ୍ଥାନରେ ରହିବାକୁ ତମୋଗୁଣୀ କୁହାଯାଏ । ଜୁଆ ସହରର କେଉଁ ଏକାନ୍ତ ମହଲରେ ହେଉଥାଉ, ଅଥବା ବଣର କୌଣସି ଏକାନ୍ତ ଗୁମ୍ଫାରେ— ସେହି ସ୍ଥାନ କିନ୍ତୁ ହୋଇଥାଏ ତମୋଗୁଣୀ । ସେହିଭଳି ମଦ୍ୟପାନ, ବେଶ୍ୟାଗମନ, ତଥା ଅନ୍ୟାନ୍ୟ ବିଭତ୍ସ କୃତ୍ୟ ଯେଉଁଠାରେ ହେଉଥାଏ, ସେହି ସ୍ଥାନ ତମୋଗୁଣୀ, ଶ୍ରେୟ ଆକାଂକ୍ଷିତ ସ୍ତ୍ରୀ ପୁରୁଷମାନେ ଏପରି ସ୍ଥାନରେ ପାଦ ବି ପକାଇବା ଅନୁଚିତ। କାରଣ, ସେହି ସ୍ଥାନର କିଛି ନା କିଛି ପ୍ରଭାବ ଅବଶ୍ୟ ପଡ଼ିଥାଏ । କେହି ଜଣେ ସାଧୁ ମହାତ୍ମା ଶାନ୍ତ ଏକାନ୍ତ ସ୍ଥାନରେ ସଘନ ବୃକ୍ଷ ତଳେ ବସି ଜପତପ କରୁଥିଲେ, ସେଠାରେ ପହଞ୍ଚିଗଲେ ତତ୍‌କାଳ ଏକ ପ୍ରକାର ଅପୂର୍ବ ଶାନ୍ତି ଅନୁଭବ ହୁଏ । ଏହାର ବିପରୀତ, ଯେଉଁ ସ୍ଥାନରେ ଚୋରି ଡକାୟତି, ବ୍ୟଭିଚାର, ଦୁରାଚାର, ମଦ୍ୟପାନ ତଥା ଦ୍ୟୂତ ଆଦି କ୍ରୂରକର୍ମ ହେଉଥାଏ, ଆଜି ନୁହେଁ, ଯଦି ସେ ସ୍ଥାନରେ ଶତାଧିକ ବର୍ଷ ପୂର୍ବେ ବି ହୋଇଥିବ, ତେବେ ସେଠାରେ ପାଦ ଦେବାମାତ୍ରେ ଭଲ ଲୋକର ବି ମନ୍ଦ ସଂକଳ୍ପ ଜାତ ହେବାରେ ଲାଗେ ।

ଏ କଥା ଶୁଣି ମହର୍ଷି ଶୌନକ ମହାମୁନି ସୂତଙ୍କୁ କହିଲେ, ''ହେ ମହାପ୍ରାଜ୍ଞ ! କୁକର୍ମର ପ୍ରଭାବ କ'ଣ ଏତେଦିନ ପର୍ଯ୍ୟନ୍ତ ରହିପାରେ ?''

ମହାପ୍ରାଜ୍ଞ ସୂତ କହିଲେ, ''ମହର୍ଷିସେ ! ସ୍ଥାନମାନଙ୍କ ଉପରେ କୁକର୍ମ ସୁକର୍ମ ଉଭୟର ପ୍ରଭାବ ଅନେକ ଦିନ ପର୍ଯ୍ୟନ୍ତ ରହିଥାଏ । ସୁକର୍ମର ପ୍ରଭାବ ଯଦି ଅନେକ କାଳ ପର୍ଯ୍ୟନ୍ତ ନ ରହୁଥାନ୍ତା ତେବେ ତୀର୍ଥମାନଙ୍କର ଏପରି ମହତ୍ତ୍ୱ ଦିଆ ହେଉଥାଆନ୍ତା କାହିଁକି ? ତୀର୍ଥରେ ଅଛି କ'ଣ ? ଅମୁକ ସ୍ଥାନରେ ଅମୁକ ଋଷି ତପସ୍ୟା କରୁଥିଲେ, ସେହି ସ୍ଥାନ ତୀର୍ଥ ହୋଇଯାଏ । ବ୍ରହ୍ମା ଅମୁକ ସ୍ଥାନରେ ଯଜ୍ଞ କରିଥିଲେ, ସେ ସ୍ଥଳ ପରମ ପବିତ୍ର ହୋଇଗଲା । ଅମୁକ ସ୍ଥାନକୁ ଅମୁକ ଦେବତା ତିଆରି କରିଛନ୍ତି, ତାହା ତୀର୍ଥ ହୋଇଯାଏ । ଗଙ୍ଗାଙ୍କୁ ସର୍ବତୀର୍ଥମୟୀ କାହିଁକି କୁହାଯାଏ ? କାରଣ ସେ ଭଗବାନଙ୍କର ପରମ ପବିତ୍ରକାରିଣୀ ପାଦପଦ୍ମରୁ ବହିରାଗତା

ହୋଇଛନ୍ତି। ତାଙ୍କର ଉଭୟ ତଟରେ ଅଂସଖ୍ୟ ମୁନିଋଷିମାନେ ତପସ୍ୟା କରିଛନ୍ତି। ତପସ୍ୟା କେତେ କାଳ ପୂର୍ବେ କିଏ କରିଥିବେ, ହେଲେ ତା'ର ପ୍ରଭାବ ଅଦ୍ୟାବଧି ବିଦ୍ୟମାନ। ଗଙ୍ଗା ତଟରେ ଶାନ୍ତ ଏକାନ୍ତ ସ୍ଥାନକୁ ଚାଲିଗଲେ ଚିତ୍ତ ସ୍ୱାଭାବିକ ରୀତିରେ ଏକ ପ୍ରକାର ଶାନ୍ତି ଅନୁଭବ କରେ। କୁକର୍ମ ସ୍ଥାନର ଦଶା ମଧ୍ୟ ଠିକ୍ ଏହିଭଳି ହୋଇଥାଏ। ପୂର୍ବେ ମୁଁ ଶ୍ରୀରାମଚନ୍ଦ୍ରଙ୍କ କଥା କହିଛି। ଗୋଟିଏ ସ୍ଥାନର ପ୍ରଭାବରେ ଲକ୍ଷ୍ମଣ ଏକଦା ଶ୍ରୀରାମଚନ୍ଦ୍ରଙ୍କ ବିରୁଦ୍ଧାଚରଣ ନ କହିବା ଭଳି କଥା କହିପକାଇଥିଲେ। ଏହିପରି ଗୋଟିଏ ନୁହେଁ, ଅସଂଖ୍ୟ ଉଦାହରଣ ଅଛି।''

ଜଣେ ଲୋକ ଗୋଟିଏ ଘର କିଣିଲା। ସେ ସେହି ଘରେ କିଛି ଦିନ ରହିବା ପରେ ଛେଳି ହାଣିବା ପାଇଁ ତା'ର ସବୁବେଳେ ମନ ହେଲା। ସେ କିନ୍ତୁ ଥିଲା ସାତ୍ତ୍ୱିକ ପ୍ରକୃତିର ଲୋକ। ସେ ଆଦୌ ମାଂସ ମଦିରା ସ୍ପର୍ଶ କରୁ ନଥିଲା। ଘରେ ରହୁଥିବା ସମୟରେ ଛେଳି ମାଂସ ପାଇଁ ମନ ଉଚାଟ ହେଉଥାଏ। ଘରୁ ବାହାରକୁ ବୁଲି ବାହାରିଗଲେ ମନ ଶାନ୍ତ ସାତ୍ତ୍ୱିକ ହୋଇଯାଏ। ଏପରି ଅନେକ ଥର ହେବାରୁ ସେ ପଣ୍ଡିତମାନଙ୍କ ପରାମର୍ଶ ଲୋଡ଼ିଲା। ପଣ୍ଡିତମାନେ କହିଲେ, 'ମହାନୁଭବ! ଏହା ସ୍ଥାନର ପ୍ରଭାବ। ଏହି ସ୍ଥାନରେ ଅନେକ ଦିନ ପୂର୍ବେ ଜୀବହିଂସା ହେଉଥିଲା ନିଶ୍ଚୟ।'

ଲୋକଟି ଅନେକ ଅନୁସନ୍ଧାନ କଲା। ଜଣାପଡ଼ିଲା ଯେ ଶହେ ବର୍ଷ ପୂର୍ବେ ସେହି ସ୍ଥାନ ଏକ କଂସେଇ ଖାନା ଥିଲା। ସେଠାରେ କେବଳ ଛେଳି ହଣାହେଉଥିଲେ। ଆଜି ପର୍ଯ୍ୟନ୍ତ ସେହି କୁକର୍ମର ପରମାଣୁ ସେହି ସ୍ଥାନରେ ରହିଛି।

ଏ ସମସ୍ତ କଥାରୁ ଜଣାଯାଏ ଯେ ବାସସ୍ଥାନର ପ୍ରଭାବ ଥାଏ। ଏଣୁ, ଯେତେଦୂର ସମ୍ଭବ ହୋଇପାରେ, ତୀର୍ଥସ୍ଥାନ ଅଥବା ପୁଣ୍ୟକ୍ଷେତ୍ରରେ, ବାସଗୃହ ନିର୍ମାଣ କରି ରହିବା ଉଚିତ। ସାଧୁ, ତ୍ୟାଗୀ, ବିରାଗୀମାନେ ଏପରି ଗୃହରେ କଦାପି ରହିବା ଉଚିତ ନୁହେଁ, ଯେଉଁ ଗୃହରେ ଗୃହସ୍ଥଧର୍ମ ସୁଚାରୁରୂପେ ନିର୍ବାହ ହେଉ ନଥାଏ। ଯଦି ରୁହନ୍ତି ତେବେ ସେମାନେ ବି ଦୂଷିତ ହୋଇଯିବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନପାରେ। ଆମେ ଯାହା କହୁଥାଏ, ଯେପରି ଚିନ୍ତା କରୁଥାଏ, ତାହାର ସୂକ୍ଷ୍ମ ପରମାଣୁ ଚାରିଆଡ଼େ ବିଛେଇ ହୋଇଯାଏ। ଯଦି କୌଣସି ଦୁର୍ବଳମନା ମଣିଷ ସେଠାକୁ ଯାଏ, ତେବେ ତାହାର ପ୍ରଭାବ ତା' ଉପରେ ସହସା ପଡ଼ିଥାଏ।''

ମହର୍ଷି ଶୌନକ କହିଲେ, ''ହେ ମହାପ୍ରାଜ୍ଞ ସୂତ! ସ୍ଥାନ ପ୍ରଭାବ ମହତ୍ତ୍ୱପୂର୍ଣ୍ଣ, ଏହା ବୁଝିଗଲୁ। ଆମକୁ ଭଗବାନ୍ ସେହି କାରଣରୁ ନୈମିଷ୍ୟାରଣ୍ୟକୁ ପଠାଇ ଦେଇଛନ୍ତି। ଏଠାରେ ଅନେକ ଦିନ ଧରି ନିଶ୍ଚୟ ମୁନିଋଷିମାନେ ତପସ୍ୟା କରିଥିବେ।''

ମହାପ୍ରାଜ୍ଞ ସୂତ କହିଲେ, ''ହେ ମହର୍ଷିସେ! ଏହା ତପସ୍ଥଳୀ। ତପସ୍ଥଳୀରେ ହିଁ ତପସ୍ୱୀମାନେ ରୁହନ୍ତି। କଳିଯୁଗରେ ଏହାର ବିପର୍ଯ୍ୟୟ ଘଟେ। ମାତ୍ର ସାଧାରଣ ଭାବରେ ସ୍ଥାନର ପ୍ରଭାବ ମହତ୍ତ୍ୱପୂର୍ଣ୍ଣ। ପ୍ରାଚୀନ ରାଜର୍ଷି ଯେତେବେଳେ ରାଜ୍ୟତ୍ୟାଗ କରି ବଣକୁ ଯାଉଥିଲେ, ସେମାନେ ଯେ କୌଣସି ସ୍ଥାନରେ କୁଟୀର ନିର୍ମାଣ କରି ରହିଯାଉ ନଥିଲେ। ସେମାନେ ପ୍ରାଚୀନ ମୁନିମାନଙ୍କର ତପସ୍ଥଳୀକୁ ଯାଉଥିଲେ। ବିଶ୍ୱାମିତ୍ର ତଥା ରାଜର୍ଷି ଭରତ ଏହିପରି ହିଁ କରିଥିଲେ।

ମହାମୁନି ଶୌନକ କହିଲେ, ''ମହାପ୍ରାଜ୍ଞ ! ଆପଣ ସତ୍ୟ କହୁଛନ୍ତି । ସ୍ଥାନର ପ୍ରଭାବକୁ ଆମେ ସ୍ୱୟଂ ଅନୁଭବ ବି କରୁଛୁ । ଏବେ କୁହନ୍ତୁ, ଉଦ୍ଧବ ଭଗବାନଙ୍କୁ କ'ଣ ପଚାରିଥିଲେ ।''

ମହାପ୍ରାଜ୍ଞ ସୂତ କହିଲେ, ''ମହର୍ଷିସେ ! ଭଗବାନ୍ ଯେତେବେଳେ ତ୍ରିବିଧ ବାସସ୍ଥାନ ବର୍ଣ୍ଣନା କରିଦେଲେ, ଉଦ୍ଧବ ତାଙ୍କୁ ପଚାରିଲେ, 'ଭଗବନ୍ ! ତ୍ରିଗୁଣାତୀତ ନିବାସସ୍ଥଳୀ ବି ତ କେଉଁଠି ଥିବ ?''

ଭଗବାନ୍ କହିଲେ, ''ହଁ ! ମୋ ମନ୍ଦିରରେ ରହିଲେ ତାହା ନିର୍ଗୁଣ ବାସସ୍ଥାନ ହୋଇଥାଏ । କାରଣ ମୁଁ ସ୍ୱୟଂ ଗୁଣାତୀତ । ଯିଏ ମୋର ଅର୍ଚ୍ଚନା ବିଗ୍ରହ ସ୍ଥାପନ କରି, କୌଣସି ପ୍ରକାର ସାଂସାରିକ କଥା ଚିନ୍ତା ନ କରି, ସବୁସମୟରେ ମୋ କଥା ଚିନ୍ତାରେ ନିମଗ୍ନ ରହେ ; କହିବାକୁ ଗଲେ, ସେ ହିଁ ନିର୍ଗୁଣ ସ୍ଥାନରେ ରହିଥାଏ । ପଇସା ଉପାର୍ଜନ କରିବା ପାଇଁ ମୋ ମୂର୍ତ୍ତି ସ୍ଥାପନ କରି ଯିଏ ସେହି ମନ୍ଦିରରେ ରହିଥାଏ ସେ ବାସ୍ତବରେ ତମୋଗୁଣୀ ହିଁ ହୋଇଥାଏ । ମୋର ମନ୍ଦିର କେବଳ ମୋ ପାଇଁ ହୋଇଥିବ, ମୋ କଥା ହିଁ ସବୁସମୟରେ ଚିନ୍ତନ କରାହେଉଥିବ, ତେବେ ଶେଷରେ ସେଠାରେ ନିବାସ କରୁଥିବା ଲୋକ ମୋ ଲୋକ ହିଁ ପ୍ରାପ୍ତ ହୋଇଥାଏ । ଏହିଭଳି ବର୍ତ୍ତମାନ ବି ତିନି ପ୍ରକାରର ହୋଇଥାନ୍ତି ।''

ଉଦ୍ଧବ ପଚାରିଲେ, ''ପ୍ରଭୁ ! ସେହି ତିନି ପ୍ରକାର କର୍ତ୍ତା କିଏ କିଏ ?''

ଭଗବାନ୍ କହିଲେ, ''ଯେଉଁ କର୍ତ୍ତା ଅନାସକ୍ତ ଭାବରେ କର୍ମ କରୁଥାଏ, ସେହି କର୍ମର କୌଣସି ପ୍ରକାର ଫଳ ଚାହୁଁ ନଥାଏ, ସେ ହୋଇଥାଏ ସାତ୍ତ୍ୱିକ କର୍ତ୍ତା । ଯିଏ ରାଗଯୁକ୍ତ ହୋଇ ଆସକ୍ତିର ସହ ସକଳ କର୍ମ କରୁଥାଏ, ସେ ହେଉଛି ରାଜସ କର୍ତ୍ତା । ଆଉ ଯିଏ ଆନ୍ଧାଧୁନ୍ଧିଆ କର୍ମ କରୁଥାଏ, ପୂର୍ବାପର ବିଚାର କରେନାହିଁ, ଗଧ ଭଳି ଯାହା ଲଦି ଦେଲେ ତାହା ବୋହି ନିଏ, ଏପରି କର୍ତ୍ତା ତାମସ କର୍ତ୍ତା ହୋଇଥାନ୍ତି । କିନ୍ତୁ ଯାହାର କର୍ତ୍ତା ପଣର ଅଭିମାନ ନ ଥାଏ, କର୍ମ କରୁଥିଲେ ବି ଯାହାର ବୁଦ୍ଧି ନିର୍ଲିପ୍ତ ଥାଏ, ଏକମାତ୍ର ମୋର ଆଶ୍ରିତ ହୋଇ କର୍ମ କରିବାରେ ଲାଗିଥାଏ, ମୋର ପ୍ରସନ୍ନତା ପାଇବା ଯାହାର ଏକ ମାତ୍ର କର୍ମ ହୋଇଥାଏ ସେପରି କର୍ତ୍ତା ହେଉଛି ମୋର ସ୍ୱରୂପ । ମୁଁ ଯେପରି ନିର୍ଗୁଣ, ସେହିଭଳି ତା'ର କର୍ମ ବି ଗୁଣ ରହିତ ହୋଇଥାଏ । ଏହିଭଳି ଶ୍ରଦ୍ଧା ମଧ୍ୟ ତିନିପ୍ରକାର ହୋଇଥାଏ ।

ଉଦ୍ଧବ ପଚାରିଲେ, ''ପ୍ରଭୁ ! ତିନି ପ୍ରକାରର ଶ୍ରଦ୍ଧା କ'ଣ କ'ଣ ?''

ଭଗବାନ୍ କହିଲେ, ''ଦେଖ ଉଦ୍ଧବ ଆତ୍ମଜ୍ଞାନ ସମ୍ବନ୍ଧୀୟ ଜ୍ଞାନ ହେଉଛି ସାତ୍ତ୍ୱିକ ଶ୍ରଦ୍ଧା । ଏହି ଶ୍ରଦ୍ଧାର ଆଧାର ଅନ୍ୟ କୌଣସି ବସ୍ତୁ ନ ହୋଇ ଏକମାତ୍ର ଆତ୍ମା ହୋଇଥାଏ । ଅର୍ଥାତ୍ ଆତ୍ମଜ୍ଞାନୀ ପୁରୁଷଙ୍କଠାରେ ଶ୍ରଦ୍ଧା ରଖିବା । ସବୁଥିରେ ଏକ ଆତ୍ମା ପରିବ୍ୟାପ୍ତ ହୋଇଛି– ଏପରି ଜାଣି ସମସ୍ତ ପ୍ରାଣୀଙ୍କୁ ଶ୍ରଦ୍ଧା ପୂର୍ବକ ପ୍ରଣାମ କରିବା । ଏହି ସମସ୍ତ ଆତ୍ମା ସମ୍ବନ୍ଧରେ ଉତ୍ପନ୍ନ ହୋଇଥିବାରୁ ଏହାକୁ ସାତ୍ତ୍ୱିକ ଶ୍ରଦ୍ଧା କୁହାଯାଏ ।

''ଯେଉଁ ଶ୍ରଦ୍ଧା କର୍ମ ଦ୍ୱାରା ଉତ୍ପନ୍ନ ହୋଇଥାଏ, ତାହା ରାଜସୀ ଶ୍ରଦ୍ଧା । ଯେପରି, ଅମୁକ ହେଉଛି ଜଣେ ମହାନ୍ କର୍ମଯୋଗୀ, ସେ ଏତେ ବିଦ୍ୟାଳୟ, ଏତେ ପାଠଶାଳା, ଏତେ ଗୋଶାଳା ପ୍ରତିଷ୍ଠା କଲାଣି ; ସେ ଖୁବ୍ ସୁନ୍ଦର ପ୍ରବଚନ ଦିଅନ୍ତି, ସେ ଜଣେ ଅତି ସୁନ୍ଦର ଲେଖକ, ଚିତ୍ରକାର, କଥାବାଚକ, ବକ୍ତା, ବାକ୍‌ପଟୁ, କଳାକାର ତଥା ଅନ୍ୟ କର୍ମମାନଙ୍କରେ ନିଷ୍ଣାତ । ଏଣୁ ଶ୍ରଦ୍ଧେୟ । ଏପରି ଶ୍ରଦ୍ଧା ସ୍ଥାୟୀ ରହେନାହିଁ । ଯେଉଁ କର୍ମରେ ଶ୍ରଦ୍ଧା ଥିଲା,

ସେହି କର୍ମ ନ ଦେଖିଲେ ଶ୍ରଦ୍ଧା ଦୂର ହୋଇଯାଏ । ନିଜେ କର୍ମକୁ ଶ୍ରଦ୍ଧା କରି କର୍ମ କରୁଥିବା ଉଚିତ । କର୍ମ ନ କରିବା ଉଚିତ, ଏପରି ଦୃଢ଼ ଶ୍ରଦ୍ଧା ବ୍ୟକ୍ତ କରିବା ଉଚିତ । ଏହିଭଳି ଯେଉଁ ଶ୍ରଦ୍ଧା କର୍ମରେ ଥାଏ ତାହାକୁ ରାଜସୀ ଶ୍ରଦ୍ଧା କୁହନ୍ତି ।

''ଅଧର୍ମକୁ ଶ୍ରଦ୍ଧା କରିବା ହେଉଛି ତାମସୀ ଶ୍ରଦ୍ଧା । ବହୁତ ପରମ୍ପରାର ଗୁରୁ ଓ ଆଚାର୍ଯ୍ୟମାନେ ଅଧର୍ମୀ ହୋଇଥାନ୍ତି । ଅନେକ ସାଧୁବେଶ ଧାରଣ କରିଥାନ୍ତି । ବାସ୍ତବରେ ସେମାନେ କିନ୍ତୁ ଦୁରାଚାରୀ ଆଉ ବ୍ୟଭିଚାରୀ ହୋଇଥାନ୍ତି । କିନ୍ତୁ ସେମାନଙ୍କ ପ୍ରତି ବି ଶ୍ରଦ୍ଧା ରଖିଥିବ ଅନେକ ଅଧର୍ମ କର୍ମକୁ ଯୁକ୍ତି ପୂର୍ବକ ସମର୍ଥନ କରିବା, ସେପରି ଶ୍ରଦ୍ଧାର ବଶୀଭୂତ ହୋଇ ସହାୟତା କରିବା, ନିଜେ ବି ଅଧର୍ମ କାର୍ଯ୍ୟପ୍ରତି ଶ୍ରଦ୍ଧା ରଖିବା । କେହି କହିଲା, ଅମୁକ ଦେବତାଙ୍କୁ କୁକୁଡ଼ା ବଳି ଚଢ଼ାଇଲେ ତୋ କାମ ହୋଇଯିବ— ଅନ୍ୟ ଚିନ୍ତା ନ କରି ସେପରି କର୍ମକୁ ଶ୍ରଦ୍ଧାରେ କରିବା— ଏ ପ୍ରକାର ଶ୍ରଦ୍ଧାକୁ ତାମସୀ ଶ୍ରଦ୍ଧା କୁହାଯାଏ । ଯେଉଁମାନଙ୍କର କେବଳ ମୋତେ ସେବା ପୂଜା ଅର୍ଚ୍ଚା ତଥା ପର୍ବ-ଉତ୍ସବାଦିରେ ଶ୍ରଦ୍ଧା ଥାଏ, ସେପରି ଶ୍ରଦ୍ଧା ନିର୍ଗୁଣ ହୋଇଥାଏ । କାରଣ ସେପରି ଶ୍ରଦ୍ଧାର ଏକମାତ୍ର ସମ୍ବନ୍ଧ ମୋ ସହିତ ଥାଏ । ମୋ ସହିତ ଯେଉଁପରି କର୍ମ ହେଉ ଯଦି ଶ୍ରଦ୍ଧା ହୋଇଯାଏ, ତେବେ ସମସ୍ତ ନିର୍ଗୁଣ ହୋଇଯାଏ । ଏହିଭଳି ଆହାର ମଧ୍ୟ ତିନି ପ୍ରକାର ।''

ଉଦ୍ଧବ କହିଲେ, ''ତିନି ପ୍ରକାର ଆହାର କ'ଣ କ'ଣ ଭଗବନ୍ !''

ଭଗବାନ୍ କହିଲେ, '' ଯାହାକୁ ସ୍ୱଚ୍ଛଭାବରେ, ଶୁଦ୍ଧ, ପବିତ୍ର ଭାବନାରେ ତିଆରି କରାଯାଇଥାଏ; ରସଯୁକ୍ତ, ଚିକକ୍ଣ, ପୌଷ୍ଟିକ, ହୃଦୟକୁ ସୁଖ ଦେଇପାରୁଥିବା ମଧୁର ପଥ୍ୟ, ତଥା ଅଧିକ ପରିଶ୍ରମ ବିନା ଅନାର୍ଯ୍ୟାସରେ ମିଳିପାରୁଥିବ, ସେପରି ଆହାର ସାତ୍ତ୍ୱିକ ହୋଇଥାଏ ।

''ଯାହା ଖୁବ୍ କଡ଼ା, ଅତି ଗରମ, ଅତି ମୁସୁମୁସିଆ, ଅଧିକ ଲୁଣଯୁକ୍ତ; ଯାହାକୁ ଖାଇବା ବେଳେ ରସନେନ୍ଦ୍ରିୟ ଚଞ୍ଚଳ ହୋଇଉଠେ, ଖଟାମିଠା ନ ଖାଇବା ପର୍ଯ୍ୟନ୍ତ ମନଶାନ୍ତି ହୁଏନାହିଁ— ଏହିଭଳି ଉତ୍ତେଜକ ଆହାରକୁ ରାଜସିକ କୁହାଯାଏ ।

''ବାସି ନୀରସ ଆଉ ଅତି ଥଣ୍ଡା, ଅଇଁଠା, ଅପବିତ୍ର, ଯାହା ଖାଇଲେ ପରିଣାମରେ ଦୁଃଖ ମିଳେ ସେପରି ଆହାରକୁ ତାମସ ଆହାର କୁହାଯାଏ । ମୋ ନୈବେଦ୍ୟ କିନ୍ତୁ ହୋଇଥାଏ ନିର୍ଗୁଣ ଆହାର । କାରଣ ତହିଁରେ ମୁଁ ନିର୍ଗୁଣ ଭକ୍ଷଣ କରିଥାଏ । ଏହିଭଳି ସୁଖ ମଧ୍ୟ ତିନିପ୍ରକାର ।

ଉଦ୍ଧବ କହିଲେ, ''ପ୍ରଭୁ ! ତିନିପ୍ରକାର ସୁଖ କ'ଣ କ'ଣ ?''

ଭଗବାନ୍ କହିଲେ, ''ଆତ୍ମାରୁ ମିଳୁଥିବା ସୁଖ ହେଉଛି ସାତ୍ତ୍ୱିକ ସୁଖ । ଏପରି ସୁଖ ପାଇଁ କୌଣସି ବାହ୍ୟ ବସ୍ତୁର ଆବଶ୍ୟକତା ନଥାଏ । ଏକାନ୍ତରେ ବସି ଆତ୍ମ ଚିନ୍ତନ ହେଉଥିବେ, ଅଶ୍ରୁ ପୁଲକିତ ହୋଇଯିବ, କଣ୍ଠ ଗଦ୍‌ଗଦ ହୋଇଯିବ, ଏପରି ସୁଖ ହିଁ ସାତ୍ତ୍ୱିକ ସୁଖ ହୋଇଥାଏ ।

''କୌଣସି ପ୍ରକାର ସୁନ୍ଦର ନୃତ୍ୟ ଦେଖି, ନାଟକ ଯାତ୍ରାଦି ଦେଖି, ସୁନ୍ଦରୀ ସ୍ତ୍ରୀ ପୁରୁଷ ବା ଶିଶୁକୁ ଦେଖି ଅଥବା ଅନ୍ୟ କୌଣସି ବାହ୍ୟ ବସ୍ତୁ ଦେଖି ଯେଉଁ ସୁଖ ମିଳେ ତାହା ସାତ୍ତ୍ୱିକ ସୁଖ ହୋଇଥାଏ ।

''କୌଣସି ବ୍ୟଭିଚାରୀ ପୁରୁଷ ଅଥବା ବ୍ୟଭିଚାର ସ୍ତ୍ରୀର ଫାନ୍ଦରେ ପଡ଼ିଯିବା, ପୁଅ ବା ଅନ୍ୟ କୌଣସି ନିକଟ ସମ୍ପର୍କୀୟଙ୍କ ମୋହରେ ପଡ଼ିଯିବା, କୌଣସି ପ୍ରକାର ଜଣଙ୍କ

ପାଖରେ ଅତି ବ୍ୟାକୁଳ ଭାବରେ ଭିକ ମାଗିଲେ ଯଦି କିଛି ମିଳିଯାଏ, ଅଥବା କୌଣସି ଦୀନତା ପ୍ରଦର୍ଶନ ପୂର୍ବକ କିଛି କାମ ହାସଲ ହୋଇଗଲେ ଯେଉଁ ସୁଖ ମିଳେ, ତାହାକୁ ତାମସୀ ସୁଖ କୁହାଯାଏ। ଏହିଭଳି ଦ୍ରବ୍ୟ ମଧ୍ୟ ତିନି ପ୍ରକାରର।

ଉଦ୍ଧବ ପଚାରିଲେ, ''ତିନି ପ୍ରକାର ଦ୍ରବ୍ୟ କ'ଣ କ'ଣ ଭଗବନ୍ ?''

ଭଗବାନ୍ କହିଲେ, '' ଯାହା ସତ୍ତ୍ୱଗୁଣ ଉତ୍ପନ୍ନ କରେ ତାହା ସତ୍ତ୍ୱଗୁଣୀ, ରଜୋଗୁଣ ଉତ୍ପନ୍ନକାରୀ ରଜୋଗୁଣୀ, ଓ ତମୋଗୁଣ ଉତ୍ପନ୍ନ କାରୀ ତମୋଗୁଣୀ ହୋଇଥାଏ। ଯାହା ଅନାୟାସରେ, ମଗିଁ ନ ଥିଲେ ବି, ସରଳତାରେ, ଶୁଦ୍ଧତାପୂର୍ବକ ମିଳେ ତାହା ସତ୍ତ୍ୱଗୁଣୀ ହୋଇଥାଏ। ଯାହା ମାଗିବାପରେ, ବିଭିନ୍ନ ପ୍ରକାର ଯୁକ୍ତି ଦ୍ୱାରା, ଅନ୍ୟର ହାନିକରିବା ପରେ ମିଳେ ତାହା ରଜୋଗୁଣୀ ହୋଇଥାଏ। ଯାହା ଛନ୍ଦ, କପଟ, ଚାପ, ତଥା ବିଭିନ୍ନ ପ୍ରକାରର ଅନୁଚିତ ଉପାୟ ଅବଲମ୍ବନରେ, ଅନ୍ୟ ସହିତ ଦ୍ୱନ୍ଦ୍ୱରେ ମିଳିଥାଏ ତାହା ତମୋଗୁଣୀ ହୋଇଥାଏ। ହେ ଉଦ୍ଧବ! ତୁମକୁ କେତେ କହବି, ଯେତେ ଦେଶ, କାଳ, ଫଳ ସ୍ୱଭାବ, କର୍ତ୍ତା କରଣ, କ୍ରିୟା, ନିଷ୍ଠା ତଥା ଆଚାର-ବ୍ୟବହାର ଦେଖାଯାଏ, ସମସ୍ତ ତ୍ରିବିଧ ହିଁ ହୋଇଥାଏ। ସମସ୍ତର ସାତ୍ତ୍ୱିକ, ରାଜସ ଓ ତାମସ ଏଭଳି ତିନିପ୍ରକାର ଭେଦ ଥାଏ। ଏ ସମସ୍ତକୁ ଗଣନା କରିବା ଅତି, ଦୁଷ୍କର । ଯାହା ସବୁ ପ୍ରକୃତି ଦ୍ୱାରା ଅଧିଷ୍ଠିତ ଭଳି ଦେଖାଯାଏ, ଶୁଣାଯାଏ, ଅନୁମାନ କରାଯାଏ ତଥା ସୂକ୍ଷ୍ମ ଠାରୁ ବି ସୂକ୍ଷ୍ମ ବୁଦ୍ଧି ଦ୍ୱାରା ଭାବନା କରାଯାଇ ହୁଏ। ତାହା ମଧ୍ୟ ତ୍ରିଗୁଣମୟ ହୋଇଥାଏ।''

ଉଦ୍ଧବ ପଚାରିଲେ, ''ହେ ଭଗବନ୍! ଏପରି ତ୍ରିଗୁଣମୟ ସଂସାର ବନ୍ଧନ ଜୀବଙ୍କୁ କାହିଁକି ପ୍ରାପ୍ତ ହୁଏ ?''

ଭଗବାନ୍ କହିଲେ, ''ହେ ଉଦ୍ଧବ! ସଂସାରର ପ୍ରତ୍ୟେକ କର୍ମ ତ୍ରିଗୁଣମୟ ହୋଇଥାଏ। କର୍ମ ଯେ କରେ ସେ ଅବଶ୍ୟ ସଂସାର ପ୍ରାପ୍ତହୁଏ। ଏହାପରେ ସେ ବ୍ରହ୍ମଲୋକ ପ୍ରାପ୍ତ ହେଉ ଅଥବା ସ୍ୱର୍ଗ, ନର୍କ, ବା ମର୍ତ୍ତ୍ୟଲୋକ— କର୍ମର ବଶୀଭୂତ ହୋଇ ଜୀବ ସଂସାରକୁ ଆସେ ଓ ନାନା ଯୋନିରେ ଭ୍ରମଣ କରିବାରେ ଲାଗେ।''

ଉଦ୍ଧବ କହିଲେ, ''ତା' ହେଲେ ହେ ଭଗବନ୍! ଜୀବର ଏହି ସଂସାର ଚକ୍ର ତ କଟି ପାରିବ ନାହିଁ। କାରଣ କୌଣସି ପ୍ରାଣୀ ମୁହୂର୍ତ୍ତକ ପାଇଁ ବି କର୍ମ ବିନା ରହିପାରିବ ନାହିଁ।''

ଭଗବାନ୍ କହିଲେ, ''ନା, କଟିବ ନାହିଁ, କାହିଁକି? ସେ ଯେତେବେଳେ ଗୁଣ ଜିତି ଯିବ, ସଂସାର ବନ୍ଧନରୁ ଜୀବ ତତ୍କାଳ ମୁକ୍ତ ହୋଇଯିବ।''

ଉଦ୍ଧବ କହିଲେ,''ଭଗବନ୍! ଗୁଣ ଉପରେ କିପରି ବିଜୟ ମିଳିପାରିବ ?''

ଭଗବାନ୍ କହିଲେ, ''ଭକ୍ତିଯୋଗ ଦ୍ୱାରା ଗୁଣ ଉପରେ ବିଜୟ ଲାଭ କରାଯାଇ ପାରେ। ଜୀବ ଯେତେବେଳେ ସମସ୍ତ ଉପରୁ ଆଶା ହରାଇ ପକାଏ, ଏକମାତ୍ର ମୋତେ, ସଚ୍ଚିଦାନନ୍ଦଘନରେ ନିଜର ସମସ୍ତ ବୃତ୍ତିକୁ ଲଗାଇ ଦିଏ, ମୋ ନିମନ୍ତେ ସକଳ ପ୍ରକାର କାର୍ଯ୍ୟ କରିବାରେ ଲାଗେ, ସେତେବେଳେ ସେ ମୋ ଠାରେ ଅନନ୍ୟ ନିଷ୍ଠା ରଖିଥିବା ଭକ୍ତି ମୋର ସ୍ୱରୂପ ପ୍ରାପ୍ତ ହୁଏ। ଏଣୁ ତୀବ୍ର ପୁରୁଷାର୍ଥ ଦ୍ୱାରା ଏହି ଗୁଣକୁ ଜୟ କରାଯାଇ ପାରେ।''

ଉଦ୍ଧବ କହିଲେ, ''ଭଗବନ୍! ତୀବ୍ର ପୁରୁଷାର୍ଥ କାହାକୁ କୁହନ୍ତି ?''

ଭଗବାନ୍ କହିଲେ, ''ଏହି ଗୁଣ ସଂଗ ରୂପ ସାଂସାରିକ ସୁଖକୁ ତିଳାଞ୍ଜଳି ଦେଇ ଅହର୍ନିଶ ମୋତେ ଚିନ୍ତନ କରିବ, ମୋତେ ହିଁ ଭଜନ କରିବ, ମୋର ନାମ ଆଉ ଗୁଣକୁ କୀର୍ତ୍ତନ କରିବ, କେତେ କହିବା, ଯାହା କରୁଥିବା ମୋ ଉଦ୍ଦେଶ୍ୟରେ କରୁଥିବ। କାରଣ ଜ୍ଞାନ-ବିଜ୍ଞାନ ପାଇବାର ସାଧନାଭୂତ ଏହି ମାନବ ଶରୀରର ଏହାହିଁ ସର୍ବଶ୍ରେଷ୍ଠ ପରମ ପୁରୁଷାର୍ଥ। ଏହାରି ଦ୍ୱାରା ହିଁ ଜୀଏ ଭଗବାନ୍ଙ୍କର ସାକ୍ଷାତ୍କାର କରିପାରେ।''

ଉଦ୍ଧବ ପଚାରିଲେ, ''ତାହା ହେଲେ ହେ ଭଗବନ୍! ସହସା ଗୁଣାତୀତ ଜଣେ କିପରି ହୋଇ ପାରିବ? ଆମେ ଗୁଣତ୍ରୟ ଦ୍ୱାରା ଉତ୍ପନ୍ନ ହୋଇଛେ, ଗୁଣମାନଙ୍କରେ ଚଳିବାରେ ଲାଗିଚେ, ଏକାବେଳକେ ଆଦୌ କିଛି ନ ଭାବି ଗୁଣମାନଙ୍କଠାରୁ ଉର୍ଦ୍ଧ୍ୱକୁ ଉଠିଯିବା– ଏହା ତ ଏକ କଳ୍ପନାତୀତ କଥା। ଏପରି କଥା ଚିନ୍ତା ବି କରାଯାଇ ପାରେନା।''

ଭଗବାନ୍ କହିଲେ, ''ଆରେ ଭାଇ! ଏକାବେଳକେ ସହସା ଗୁଣାତୀତ ହୋଇଯିବାପାଇଁ କିଏ କହୁଚି କି? ବିଚାରଶୀଳ ବୁଦ୍ଧିମାନ୍ ବିବେକୀ ପୁରୁଷ ଭାବିବା ଉଚିତ ଯେ, ପ୍ରଥମ ରଜୋଗୁଣ ଦ୍ୱାରା ତମୋଗୁଣକୁ ଜୟ କରିନେବ, ଏହାପରେ ସତ୍ତ୍ୱଗୁଣ ଦ୍ୱାରା ରଜ ଆଉ ତମ ଏହି ଦୁଇ ଗୁଣକୁ ଜୟ କରିନେବ। ସତ୍ତ୍ୱର ବୃଦ୍ଧି ଯେତେବେଳେ ବଢୁଥିବ, ଧୀରେ ଧୀରେ ଇନ୍ଦ୍ରିୟକୁ ବଶୀଭୂତ କରୁଥିବ, ସଂଯମନ କରୁଥିବ। ଏହାପରେ ପ୍ରମାଦବଶତଃ ବିଷୟ ଅଭିମୁଖେ ମନ ଚାଲିଯାଉଥିବା ବେଳେ ମନ ବିଷୟ ପ୍ରତି ଅଧିକ ଆସକ୍ତି ହୋଇ ଯାଉଥିବା ସମୟରେ ତହିଁରୁ ମନକୁ ଦୂରେଇ ନେବା ଉଚିତ। ମନ ବିଷୟରୁ ଯେତେ ଯେତେ ଦୂରେଇ ଯାଉଥିବ ସେ ସେତେ ସେତେ ଆସକ୍ତିହୀନ ହୋଇଯାଉଥିବ। ମନ ତ ଆଧାର ବିନା ରହିପାରେ ନାହିଁ। ତା' ପାଇଁ କିଛି ନା କିଛି ଅଧାର ସବୁବେଳେ ଦରକାର। ତେଣୁ ଅନ୍ୟ କାହାକୁ ଆଧାର କରିବା ଅପେକ୍ଷା ମୋତେ ଆଧାରରୂପେ ଗ୍ରହଣ କରିନେଲେ ହେଲା। ମୋଠାରେ ମନକୁ ଲଗାଇ ଦେବ, ନିରନ୍ତର ମୋର ଭଜନ ଓ ଧ୍ୟାନ କରୁଥିବ। ଏହିଭଳି କରୁ କରୁ ଯେତେବେଳେ ପୂରା ସତ୍ତ୍ୱଗୁଣ ଆସିଯିବ ସେତେବେଳେ ଏଥିରେ ବି ଆସକ୍ତ ନ ହୋଇ ଶାନ୍ତ ଚିତ୍ତ ଓ ନିରେପେକ୍ଷ ଭାବରେ ଶାସ୍ତ୍ରରେ କୁହାଯାଇଥିବା ବିବିଧ ଯୁକ୍ତି ଦ୍ୱାରା ସତ୍ତ୍ୱଗୁଣ ଉପରେ ବିଜୟ ହାସଲ କରିବ।''

ଉଦ୍ଧବ କହିଲେ, ''ଭଗବନ୍! ସତ୍ତ୍ୱଗୁଣକୁ କିପରି ଯୁକ୍ତି ମାଧ୍ୟମରେ ଜୟ କରାଯାଇ ପାରିବ ?''

ଭଗବାନ୍ କହିଲେ, ''ଯିଏ ଯାହାକୁ ନିରବଚ୍ଛିନ୍ନ ଧ୍ୟାନ କରୁଥାଏ, ସେ ଠିକ୍ ତା' ଭଳି ହୋଇଯାଏ। ମୁଁ ହେଉଛି ଗୁଣରହିତ, ନିରବଚ୍ଛିନ୍ନ ଭାବରେ ମୋତେ ଧ୍ୟାନ କରୁଥିଲେ ଜୀବ ନିଜର ଜୀବତତ୍ତ୍ୱକୁ ତ୍ୟାଗକରି ମୋତେ ହିଁ ପାଇଯାଏ। ଏ ପର୍ଯ୍ୟନ୍ତ ଜୀବ ନିଜକୁ ତ ଅପୂର୍ଣ୍ଣ ମନେ କରୁଥାଏ। କାରଣ ସେ ଲିଙ୍ଗ ଶରୀରରୂପୀ ଉପାଧି ଯୁକ୍ତ ରହିଥାଏ। ଯେତେବେଳେ ସେ ଅନ୍ତଃକରଣ ଦ୍ୱାରା ସେହି ଉପାଧିକୁ ପରିତ୍ୟାଗ କରି ଦେବ, ସେତେବେଳେ ସେ ନିଜର ଅପୂର୍ଣ୍ଣତାକୁ ତ୍ୟାଗ କରି ମୋତେ, ପରିପୂର୍ଣ୍ଣ ବ୍ରହ୍ମକୁ ପାଇଯିବ। ସେତେବେଳେ ସେ ଆଉ ବାହ୍ୟବିଷୟକୁ ନା ଚିନ୍ତନ କରିବ, ନା ଆନ୍ତରିକ ବିଷୟକୁ। ବିଷୟ ସମୂହରୁ ରହିତ ଗୁଣତୀତ, ଶୁଦ୍ଧ, ପରିପୂର୍ଣ୍ଣ ହୋଇଯିବ। ମୁଁ ତୁମକୁ ଅତି ସଂକ୍ଷେପରେ ଗୁଣ ସମୂହର

କାର୍ଯ୍ୟ କହିଲି। ଏବଂ ଗୁଣାତୀତ ହେବାର ଯୁକ୍ତି କହିଲି। ଏବେ ତୁମେ ଆଉ କ'ଣ ଶୁଣିବାକୁ ଚାହୁଁଛ ?''

ଉଦ୍ଧବ କହିଲେ, ''ଭଗବନ୍! ସବୁଦିନ ଭୋଗ କରୁଥିଲେ ସୁଦ୍ଧା ସଂସାରୀ ବିଷୟ ପ୍ରତି ବୈରାଗ୍ୟ ହୁଏ ନାହିଁ। ଥରେ ଭୋଗର ସୁଯୋଗ ପାଇଗଲେ ତହିଁରୁ ମନ ଆଉ ଛାଡ଼େ ନାହିଁ। ଆଉ ଯେତେ ଭୋଗ ହେଉଥାଏ ସେତେ ଅଧିକରୁ ଅଧିକ ଭୋଗେଚ୍ଛା ହେଉଥାଏ। ଏଥିପାଇଁ କି ଉପାୟ ଅଛି ?''

ଭଗବାନ୍ କହିଲେ, ''ଏହାର ଗୋଟିଏ ଉପାୟ ଅଛି ତାହା ହେଉଛି କୁସଙ୍ଗ ପରିହାର ପୂର୍ବକ ଚିତ୍ତକୁ ସତ୍ସଙ୍ଗରେ ଲଗାଇଦେବା। ଏପରି କଲେ ସତ୍ସଙ୍ଗର ପ୍ରଭାବରେ ଚିତ୍ତ କୁସଙ୍ଗରୁ ଦୂରେଇ ଯିବ। ବିଷୟ ପ୍ରତି ବୈରାଗ୍ୟ ଆସିଯିବା ମାତ୍ରେ ମନ ମୋ'ଠାରେ ସ୍ୱତଃ ଲାଗିଯାଏ।''

ଉଦ୍ଧବ ପଚାରିଲେ, ''ଭଗବନ୍! କୃପାକରି ମୋତେ ବୁଝାଇ କୁହନ୍ତୁ, ବିଷୟ ପ୍ରତି ବୈରାଗ୍ୟ ହେବ କିପରି ?''

ଭଗବାନ୍ କହିଲେ, ''ଭଲ କଥା। ମୁଁ ତୁମକୁ ଏବେ ସଂସାର ପ୍ରତି ବୈରାଗ୍ୟ ଜାତ ହେବାର ଉପାୟ କହୁଛି ଶୁଣ। ଏହି ସମ୍ବନ୍ଧରେ ମହାରାଜ ଐଳଙ୍କର ଉଦାହରଣ ଅତି ଉପଯୋଗୀ। ତାହା ତୁମକୁ କହିବି।''

ମହାପ୍ରାଜ୍ଞ ସୂତ କହିଲେ, ''ହେ ମୁନିଗଣ! ବର୍ତ୍ତମାନ ଭଗବାନଙ୍କ ମୁଖ ନିସୃତ ଐଳଗୀତ ଆପଣମାନେ ସମାହିତ ଚିତ୍ତରେ ଶ୍ରବଣ କରନ୍ତୁ।''

### ଛପ୍ପୟ

ସବଇ ହୈ ତ୍ରିଗୁଣାତ୍ମ ପ୍ରକୃତି ଅରୁ ପୁରୁଷ ଅଧିଷ୍ଠିତ।
ଦେଖେ ସମୁଝେ ସୁନେ ବୁଦ୍ଧି ଦ୍ୱାରା ଜୋ ନିଶ୍ଚିତ॥
ହୋହି କରମ ବଶ ବନ୍ଧ ଭକ୍ତି ତେଁ ଗୁନ ଭଗି ଜାବେଁ।
ମୋ ମେ ରାଖେ ଭାବ ଭକ୍ତ ତେ ମୋକୁଁ ପାବେ॥
ରଜ, ତମକୁଁ ଜୟ ସତ୍ତ୍ୱ ତେ କରୈ ସଦ୍ୱ ମମ ଭଜନ ତେ।
ହୋବୈ ତ୍ରିଗୁନାତୀତ ତବ, ଲିପଟୈ ସୋ ମମ ଚରନ ତେ॥



# ଐଳ-ଗୀତ

**ଐଳଃ ସମ୍ରାଡ଼ିମାଂ ଗାଥାମଗାୟତ ବୃହଦ୍‌ଶ୍ରବାଃ ।**
**ଉର୍ବଶୀବିରହାନ୍ ମୁହ୍ୟନ୍ନିର୍ବିଣ୍ଣଃ ଶୋକସଂୟମେ ।।★**

[ଶ୍ରୀଭା. ୧୧ସ୍କ. ୨୬ଅ. ୪ଶ୍ଳୋକ]

## ଛପ୍‌ପୟ

ମାନବ ତନୁ ଲହି ରହୈ ଚରନ ମେରେ ଲିପଟାନୋ ।
ନର ଜୀବନ ଫଲ ଲହ୍ୟୋ ଯଥାରଥ ତାନେ ଜାନୋ ।।
ହୋବୈ ଜବଇ ଜ୍ଞାନ ଜଗତ ମାୟା ନସି ଜାବୈ ।
ଅଜ୍ଞାନିନିକୋ ସଂଗ କରୈ ବିଷୟନି ଫସି ଜାବୈ ।।
ଫସେ ଉରବସୀ ମୋହ ମହଁ, ଐଳ ନୃପତି ସମ୍ରାଟ ଜବ ।
ଭୟୋ ଜ୍ଞାନ ପଛିତାଇ ପୁନି, ସୁଖକର ଗାୟେ ଗୀତ ତବ ।।

ବାସ୍ତବରେ ଜୀବର ବନ୍ଧନ ବୋଲି କିଛି ନାହିଁ । ବିଷୟର ସଙ୍ଗ ହେତୁ, ଜୀବ ଜ୍ଞାନର ବଶୀଭୂତ ହୋଇ ତାହାର ଗୁଣଗୁଡ଼ିକୁ ନିଜର ବୋଲି ଗ୍ରହଣ କରିନେଇ ଥାଏ । ତେଣୁ ନିଜକୁ ସୁଖୀ ବା ଦୁଃଖୀ ଅନୁଭବ କରେ । 'ଏହି ବିଷୟ ସମୂହରେ ମୋର କୌଣସି ସମ୍ବନ୍ଧ ନାହିଁ' ଏପରି ଜ୍ଞାନ ଯେତେବେଳେ ହୋଇଯାଏ ସେତେବେଳେ ନା ଦୁଃଖ– ଏପରି କିଛି ନ ହୋଇ ସର୍ବତ୍ର ଆନନ୍ଦ ହିଁ ଆନନ୍ଦ ଅନୁଭୂତ ହେବାରେ ଲାଗେ । ଜୀବ ମାୟାର ସ୍ୱରୂପକୁ ନ ଜାଣି ତହିଁରେ ଫସି ଯାଇଥାଏ । ଆଉ ଯେତେବେଳେ ସ୍ୱରୂପକୁ ଜାଣିନିଏ ସେତେବେଳଠାରୁ ଲାଜବତୀ ମାୟା ଆଉ ତା' ପାଖ ମାଡ଼େ ନାହିଁ । ଏ ସମ୍ବନ୍ଧରେ ଗୋଟିଏ କଥା ଅଛି ।

ଜଣେ ଅତି କୁଳୀନ ସଦାଚାରୀ ବ୍ରାହ୍ମଣ ଯୁବକ ଥିଲା । ତା' ପାଖରେ ଜଣେ ସୁନ୍ଦରୀ ସ୍ତ୍ରୀ ରହୁଥାଏ । ଏମିତି ଦେଖିଲେ ସ୍ତ୍ରୀଟି ଖୁବ୍ ସୁନ୍ଦରୀ, ସୁଶୀଳା, ଲଜ୍ଜାବତୀ, ଗୁଣବତୀ, ଆଉ ସଦାଚାରିଣୀ ଜଣାଯାଉଥିଲା । ହେଲେ, ବାସ୍ତବରେ ସେ ଥିଲା ବ୍ୟଭିଚାରିଣୀ । ଯାହାକୁ ସାଦାସିଧା ସରଳ ଦେଖେ ତାକୁ ଫାନ୍ଦରେ ପକାଇ ଦେଉଥାଏ । ସେ ଯଦି ସର୍ବସାଧାରଣ

---



ଥିଲା ଯେ ବୁଧଗ୍ରହ-ସୁତ । ସେ ପୁରୁରବା ନରନାଥ ।।
ଉର୍ବଶୀ ବିରହେ ସେ ବୀର । ସକାମେ ତେଜିଲା ନଗର ।।
ଉନ୍ମତ୍ତ-ଉଲଗ୍ନ-ଶରୀରେ । ଭ୍ରମିଲା ଦେଶ-ବନ-ଘୋରେ ।।
ପୁଣ ଗନ୍ଧର୍ବ ସେବାଫଳେ । ରମିଲା ଉର୍ବଶୀର ମେଳେ ।।
ଏମନ୍ତ ରାତ୍ରଦିନ ଭାବେ । ନୟନୁ ଅଶ୍ରୁଜଳ ଗଳେ ।।
ଏମନ୍ତେ କେତେଦିନ ଗଲା । ହୃଦରେ ଜ୍ଞାନ ପ୍ରସରିଲା ।।
ଏମନ୍ତେ ରାତ୍ରେ ଏକଦିନେ । ରାଜା ବିଚାରୁଅଛି ମନେ ।।

[ଭାଗବତ :ଜଗନ୍ନାଥ ଦାସ : ୧୧ଶ ସ୍କ. ୨୬ଅ]

ବେଶ୍ୟାଙ୍କ ଭଳି ହୋଇଥାଆନ୍ତା ତେବେ ଭଦ୍ରଲୋକମାନେ ତା' ପାଖକୁ କଦାପି ଯାଇ ନଥାନ୍ତେ। ତେଣୁ ସେ ତା'ର ବାସ୍ତବ ରୂପକୁ ଗୋପନ୍ ରଖି, ଓଢ଼ଣା ପକାଇ ଲାଜକୁଳୀଙ୍କ ଭଳି ବାହାରୁଥାଏ, ଯେମିତି ଲୋକମାନେ ତାକୁ ଜଣେ ସଦାଚାରିଣୀ ବୋଲି ଭାବିବେ। ଭଲ ଭଲ ଲୋକମାନେ ତା'ର ଫାନ୍ଦରେ ପଡ଼ିଯାଉଥିଲେ। ତା'ର ଗେହ୍ଲାଳିଆ କଥାରେ ମୋହିତ ହୋଇଯାଉଥିଲେ। ସେ ଯାହା ସହିତ ସମ୍ବନ୍ଧ ଆରମ୍ଭ କରିଦେଉଥାଏ ତା' ପାଖରେ ଲକ୍ଷେ ପ୍ରକାର ରାଣ ନିୟମ କରି କହେ, ମୁଁ ତୁମକୁ କେବଳ ପ୍ରେମ କରୁଛି। ତୁମ ଛଡ଼ା ମୋର ଆଉ କେହି ନାହାନ୍ତି।' ଏପରି କଥା ଶୁଣି ସରଳ ସଦାଚାରୀ ଯୁବକ ଫସି ଯାଆନ୍ତି। ସେଇ ସଦାଚାରୀ ବ୍ରାହ୍ମଣ ଯୁବକ ବି ଫସିଯାଇଥିଲା। ଯୁବତୀର ମଧୁର ମୋହକ ବାଣୀରେ ଯୁବକ ଦ୍ୱାରା ବିମୋହିତ ହୋଇ ତାକୁ ପ୍ରାଣଠାରୁ ଅଧିକ ଭଲ ପାଇବାରେ ଲାଗିଲା। ଯୁବତୀ ବି ବିବିଧ ପ୍ରକାର ଶପଥ କରି କହୁଥାଏ, 'ପ୍ରାଣନାଥ। ତୁମେ ହିଁ ମୋର ସର୍ବସ୍ୱ।'

ଦିନେ ସେହି ବ୍ରାହ୍ମଣ ଯୁବକ ହଠାତ୍ ଅସମୟରେ ଯୁବତୀର ଘରେ ପହଞ୍ଚିଗଲା। ସେଠାରେ ଦୁଇଜଣ ଧୀର ସ୍ୱରରେ କଥାବାର୍ତ୍ତା ହେଉଥିବା ଶୁଣି ଯୁବକ ଲୁଚିଯାଇ ସେମାନଙ୍କ କଥାକୁ ଶୁଣିବାରେ ଲାଗିଲା। ସେହି ଦୁଇଜଣଙ୍କ ଭିତରୁ ଜଣେ ଥିଲା ମାୟାବତୀ ଯୁବତୀ ଓ ଅନ୍ୟ ଜଣେ ସୁନ୍ଦର ଯୁବକ। ମାୟାବତୀ ଯୁବତୀ ତାକୁ ପୂର୍ବେ ଯେଉଁଭଳି ରାଣ ନିୟମ ପକାଇ ଭଲ ପାଉଛି ବୋଲି କହିଥିଲା ଏହି ଯୁବକକୁ ଅବିକଳ ସେହିଭଳି କହିବାରେ ଲାଗିଥାଏ। ସବୁ କଥା ମନଦେଇ ଶୁଣିବା ପରେ ବ୍ରାହ୍ମଣ ଯୁବକର ହେଜ ପଶିଲା। ସେ ତା'ର ଭ୍ରମ ବୁଝିଲା। ମାୟାବତୀ ଯେ ପ୍ରେମର ନକଲୀ ନାଟକ ଅଭିନୟ କରି ତାକୁ ଫାନ୍ଦରେ ପକାଇ ଦେଇଥିବା ବୁଝିଗଲା। ଏହି ସମୟରେ ମାୟାବତୀ ଯୁବତୀ ହଠାତ୍ କବାଟ ଖୋଲିଦେବାରୁ ତା' ଦୃଷ୍ଟି ସିଧା ବ୍ରାହ୍ମଣ ଯୁବକ ଉପରେ ପଡ଼ିଗଲା। ନିଜେ ବ୍ରାହ୍ମଣ ଯୁବକ ପାଖରେ ଧରା ପଡ଼ିଯାଇଥିବା ଜାଣି ତା' ମୁହଁ ରଙ୍ଗ ପଡ଼ିଗଲା। ଯୁବକ ତା'ର ଯଥାର୍ଥ ରୂପ ଜାଣି ପାରିଛି। ସେ ଲଜ୍ଜିତା ହୋଇଗଲା। ଏଣେ ଯୁବକର ବି ମୋହ ନଷ୍ଟ ହୋଇଗଲା। ସଦାଚାରର ପୂର୍ବ ସ୍ମୃତି ତା'ର ହେତୁ ହୋଇଯିବାରୁ ସେ ସ୍ୱଚ୍ଛ ହୋଇଗଲା। ପୂର୍ବେ ଯେତେବେଳେ ବ୍ରାହ୍ମଣ ଯୁବକ ମାୟାବତୀକୁ ମାର୍ଗରେ ଦେଖୁଥିଲା ତା' ମନ ଉଲ୍ଲସିତ ହୋଇ ଯାଉଥିଲା, ତା' ସହିତ କଥାବାର୍ତ୍ତା କରିବାକୁ ଉଦ୍‌ବିଗ୍ନ ହୋଇ ଯାଉଥିଲା। ମାତ୍ର ଏବେ ତାକୁ ଦେଖି ତା' ମନରେ ସାମାନ୍ୟମାତ୍ର ଉଲ୍ଲାସ ଜାତ ହେଉ ନଥାଏ। ଅତି ସାଧାରଣ ନଗଣ୍ୟ ଭଳି ସେହି ଯୁବତୀ ତାକୁ ଜଣାଯାଉଥାଏ। ଯୁବତୀ ମଧ୍ୟରେ ନିଜର ସ୍ୱରୂପ ଧରାପଡ଼ିଯାଇଥିବା ଜାଣି ଅତି ଲଜ୍ଜିତ ହୋଇଯାଇଥିଲା। ସେ ତା' ପାଖକୁ ଆଉ କେବେ ବି ଆସିବାକୁ ସାହସ କଲାନାହିଁ।

ଏହା ଏକ ଦୃଷ୍ଟାନ୍ତ ମାତ୍ର। ଏଥିରୁ ଆମେ ଜାଣିଲେ ଯେ ଠକ ମାୟା ହିଁ ହେଉଛି ସୌରାଚାରିଣୀ ସ୍ତ୍ରୀ। ଜୀବ ହେଉଛି ସଦାଚାରୀ ଯୁବକ। ଯେ ପର୍ଯ୍ୟନ୍ତ ଜୀବ ଏହି ମାୟାର ଯଥାର୍ଥ ସ୍ୱରୂପକୁ ନ ଜାଣିପାରିଛି ସେ ପର୍ଯ୍ୟନ୍ତ ଚୌରାଅଶୀ ଚକ୍ରରେ ଘୂରୁଥିବ। ମାୟାର ଯଥାର୍ଥ ରୂପ ଜାଣି ନେବା ପରେ ଜ୍ଞାନ ଉଦୟ ହୋଇଯାଏ। ସେତେବେଳେ ମାୟା କୁଆଡ଼େ ପଳାଇ ଯାଏ ନାହିଁ। ହେଲେ, ତା' ସାମନାକୁ ଆସିବାକୁ ଲାଜ କରେ। ତା' ପଛରେ ଆଉ ଗୋଡ଼ାଏ ନାହିଁ। ଏହାପରେ ଜୀବ ଏହି ଶରୀରରେ ରହିଥିଲେ ବି ସଂସାରର କୌଣସି ଘଟଣା ତାକୁ ଆଉ କ୍ଷୁବ୍ଧ କରିପାରେ ନାହିଁ। ଜୀବନ୍ମୁକ୍ତ ହୋଇ ବ୍ରହ୍ମସୁଖ ଅନୁଭବ କରିବାରେ

ଲାଗେ। ମାୟାରୁ ମନ ଦୂରେଇ ଯିବାମାତ୍ରେ, ମାୟେଶଙ୍କ ଚରଣାବିନ୍ଦପ୍ରତି ସେହି ପ୍ରେମ ହୋଇଯାଏ, ଯାହା ହେଉଛି ସଚ୍ଚିଦାନନ୍ଦ ସ୍ୱରୂପ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ହେ ମୁନିଗଣ ! ଉଦ୍ଧବ ଯେତେବେଳେ ବୈରାଗ୍ୟ ସମ୍ବନ୍ଧରେ ପ୍ରଶ୍ନ କଲେ, ସେତେବେଳେ ଭଗବାନ୍ କହିଲେ, ''ହେ ଉଦ୍ଧବ ! ଜଣେ ଦରିଦ୍ରକୁ ହଠାତ୍ ବିପୁଳ ଧନ ଯଦି ମିଳିଯାଏ, ସେ ଧନର ମୂଲ୍ୟ ଜାଣିପାରେ ନାହିଁ। ଯିଏ ସହଜରେ ପୁଅ ପାଇଥାଏ ପୁଅର ମହତ୍ତା ସେ ଅନୁଭବ କରିପାରେ ନାହିଁ। ଯାହାର ପୁଅ ହେଉ ନଥାଏ, ଅନେକ ବର୍ଷ ଧରି ଅସାଧ ଉଦ୍ୟମ କରିବା ପରେ, ବୃଦ୍ଧାବସ୍ଥାରେ ଯଦି ପୁତ୍ର ସନ୍ତାନଟିଏ ପାଏ ସେ ପୁଅର ଯଥାର୍ଥ ମହତ୍ତା ଅନୁଭବ କରିପାରେ। ଏହିଭଳି ଜୀବ ମୋର ଏହି ସ୍ୱରୂପ ଜାଣିପାରିବାରେ ସାଧନ ରୂପୀ ସୁଦୁର୍ଲଭ ମାନବ ଶରୀର ସହଜରେ ପାଇଥିବାରୁ ସେ ଏହାର ମହତ୍ତା ଜାଣିପାରେ ନାହିଁ। ଆଉ ସେଇଥିପାଇଁ ଅମୂଲ୍ୟମାନବ ଦେହର ଉପଯୋଗ ତୁଚ୍ଛ ଓ ନାଶବାନ୍ ଭୋଗ ଉପଭୋଗ କରିବାରେ ଲଗାଇ ଦେଇଥାଏ। ଏହି ମାନବ ଶରୀରର ମହତ୍ତା ଯିଏ ଜାଣି ଦେଇ ଥାଏ, ସେ କ୍ଷଣିକ ସୁଖ ଭୋଗରେ ସମୟ ନଷ୍ଟ କରେ ନାହିଁ। ସେ ସବୁବେଳେ ଭଗବଦ୍ ସେବା, ପୂଜା, ଉପାସନା ତଥା ଅନ୍ୟ କଥା-କୀର୍ତ୍ତନାଦି ଭଗବଦ୍ ଧର୍ମରେ ହିଁ ଲଗାଇ ଦେଇଥାଏ। ଏହିଭଳି ନିରନ୍ତର ମୋର ପରିଚର୍ଯ୍ୟାରେ ଲଗାଇ ରହିଥିବା ପୁରୁଷ ଏହି ସଂସାରକୁ ଆଉ ଫେରିଆସେ ନାହିଁ। ସେ ତା' ଅନ୍ତଃକରଣରେ ସ୍ଥିତ ଆନନ୍ଦ ସ୍ୱରୂପ ମୁଁ ସଚ୍ଚିଦାନନ୍ଦ ପରମାତ୍ମାଙ୍କୁ ହିଁ ପାଇଯାଏ।''

ଉଦ୍ଧବ ପଚାରିଲେ, ''ତାହାହେଲେ କ'ଣ ଭଗବନ୍ ! ଆପଣଙ୍କୁ ଜାଣିନେବା ମାତ୍ରେ ନାଶବାନ୍ ଏହି ଭୌତିକ ଶରୀର ଛାଡ଼ିଯାଏ ?''

ଭଗବାନ୍ କହିଲେ, ''ନା ! ଛାଡ଼ିଯିବାର ଆବଶ୍ୟକତା କ'ଣ ? ଏହି ଶରୀରରେ ରହି ବି ସେ ବ୍ରହ୍ମାନନ୍ଦ ସୁଖ ଅନୁଭବ କରିପାରେ।''

ଉଦ୍ଧବ ପଚାରିଲେ, ''ସେତେବେଳେ ମାୟାର ଯେଉଁ ତିନିଗୁଣ, ସେମାନେ କୌଣସି ପ୍ରତିବନ୍ଧକ ସୃଷ୍ଟି କରନ୍ତି ନାହିଁ ?''

ଭଗବାନ୍ କହିଲେ, ''ଜୀବର ଜୀବାବସ୍ଥା ସେ ପର୍ଯ୍ୟନ୍ତ ଥାଏ ଯେ ପର୍ଯ୍ୟନ୍ତ ତାହା ଗୁଣମୟୀ ମାୟାର ଅଧୀନରେ ଥାଏ। କିନ୍ତୁ ଯେତେବେଳେ ଜ୍ଞାନନିଷ୍ଠାଦ୍ୱାରା ତ୍ରିଗୁଣାତୀତ ମୋ ବିଷୟରେ ଯଥାର୍ଥ ଜ୍ଞାନ ହୋଇଯାଏ ସେତେବେଳେ ମାୟାର ଏହି ସମସ୍ତ ଗୁଣ ଅବାସ୍ତବିକ ପ୍ରତୀତ ହେବାରେ ଲାଗେ। ଏହାପରେ ସେ ଆଉ ଏମାନଙ୍କ ଆଡ଼କୁ ଆକର୍ଷିତ ହୁଏ ନାହିଁ। ପ୍ରାଚୀନ କାଳରେ ରାଣୀମାନଙ୍କ ଦେହରକ୍ଷୀ ଯେଉଁମାନେ ହେଉଥିଲେ ସେମାନେ ଦେଖିବାକୁ ତ ଥିଲେ ପୁରୁଷଙ୍କ ଭଳି, ମାତ୍ର ସେମାନଙ୍କର ପୁରୁଷତ୍ୱ ନଷ୍ଟ କରି ଦିଆଯାଉଥିଲା। ଏମାନେ ରହିଲେ ତେଣୁ ଆପତ୍ତିକର କିଛି ନଥିଲା। ବୀଜକୁ ଭୁଣିଦେବା ପରେ ତାହା ପୂର୍ବଭଳି ଦେଖାଯାଏ, ମାତ୍ର ତହିଁରେ ଅଙ୍କୁର ହେବ, ଏଥିରେ କାହାର ସନ୍ଦେହ ନଥାଏ। ଠିକ୍ ଏହିଭଳି ଗୁଣର ଅବାସ୍ତବିକତାର ଜ୍ଞାନ ହୋଇଯିବା ପରେ ମାୟାମାତ୍ର ଗୁଣରେ ବର୍ତ୍ତମାନ ରହିଥିଲେ ବି ପୁରୁଷ ତହିଁରେ ଫସେ ନାହିଁ। ତହିଁରେ ନିର୍ଲିପ୍ତ ହିଁ ରହିଥାଏ।''

ଉଦ୍ଧବ କହିଲେ, ''ଭଗବନ୍ ! ଏହି ମାୟାର ଫାନ୍ଦରେ ନ ପଡ଼ିବା ପାଇଁ ଏପରି କିଛି ସରଳ ସୁଗମ ଉପାୟ ତ ନିଶ୍ଚୟ ଥିବ ! ତାହା ମୋତେ କୁହନ୍ତୁ ?''

ଭଗବାନ୍ କହିଲେ, ''ହେ ଉଦ୍ଧବ! ଏହି ପ୍ରଶ୍ନର ଉତ୍ତର ମୁଁ ଅନେକ ଥର କହିଛି। ତେବେ ପୁଣ୍ଣା କହୁଛି ଯେ ଯଦି ତୁମେ ନିରନ୍ତର ବିଷୟର ସଙ୍ଗ କରୁଥିବ ତେବେ ବିଷୟରେ ନିଶ୍ଚୟ ଫସିଯିବ। ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। ଏଣୁ, ଯିଏ ବିଷୟର ଦାସ, ପେଟ ପୂରାଇବା, କାମ ବାସନାକୁ ତୃପ୍ତ କରିବା– ଏ ସବୁକୁ ଯିଏ ପରମ ପୁରୁଷାର୍ଥ ବୋଲି ଗ୍ରହଣ କରିଥାଏ ସେହି ଶିଶ୍ନୋଦର ପରାୟଣ ଅସତ୍ ପୁରୁଷର ଶ୍ରେୟ ଇଚ୍ଛା କରୁଥିବା ପୁରୁଷଙ୍କର ଭୁଲରେ ବି ସାଙ୍ଗ ହେବା ଉଚିତ ନୁହେଁ। ତ୍ୟାଗୀ, ସଦାଚାରୀ, ଇନ୍ଦ୍ରିୟଜିତ୍ ସତ୍‌ପୁରୁଷଙ୍କର ସଙ୍ଗ କରିବା ଉଚିତ। ଉଦ୍ଧବ! ତୁମେ ସ୍ଥିର କର। ତୁମେ କୌଣସି ମାର୍ଗ ଜାଣିନାହଁ, ଆଖିକୁ ବି ଦେଖାଯାଉ ନାହିଁ। ଯଦି ତୁମେ ସେହି ମାର୍ଗର ଜ୍ଞାତା କୌଣସି ସୁନ୍ଦର ଦୃଷ୍ଟି ସମ୍ପନ୍ନ ପୁରୁଷଙ୍କ ପଛେ ପଛେ ଅନୁଧାବନ କର, ତୁମେ ନିଶ୍ଚୟ ଗନ୍ତବ୍ୟ ସ୍ଥାନରେ ପହଞ୍ଚି ଯିବ। କିନ୍ତୁ ଯଦି କୌଣସି ଅନ୍ଧ ପଛରେ ଅନୁଧାବନ କର ତେବେ ସେଇ ଅନ୍ଧ ତ କୌଣସି କୂଅରେ ଗଳିପଡ଼ିବ, ତାକୁ ଅନୁଧାବନ ଅନୁସରଣ କରୁଥିବା ଦୃଷ୍ଟିହୀନ ବି ଅବସ୍ଥା ସେୟା ହେବ। ଯିଏ ନିଜେ ବିଷୟର ଦାସ, ତାର ସଂଗ କଲେ, ତା' ପଛେ ପଛେ ଅନୁଧାବନ କଲେ ତୁମେ ବିଷୟୀ ହିଁ ହୋଇଯିବ। କଳିଯୁଗର ଗୁରୁ, ଆହେ ଉଦ୍ଧବ! ଏହିପରି ହୋଇଥାଆନ୍ତି। ସେମାନେ ପରଧନ ଓ ପରସ୍ତ୍ରୀଙ୍କ ପଛରେ ଲାଗି ରହିଥାନ୍ତି। ନିଜଭଳି କେତେକଙ୍କୁ ସାଙ୍ଗରେ ଧରି ଭଲ ଭଲ ଲୋକଙ୍କୁ ଫାନ୍ଦରେ ପକାଇ ସେମାନଙ୍କୁ ଶିଷ୍ୟ ବନାନ୍ତି। ସେମାନେ ନିଜେ ତ ନର୍କରେ ପଡ଼ନ୍ତି, ନିଜ ସହିତ ଶିଷ୍ୟଙ୍କୁ ବି ନେଇ ଯାଆନ୍ତି। ଏଣୁ ଯେଉଁମାନେ ଯଥାର୍ଥ ପରମାର୍ଥ ଲାଭ କରିବାକୁ ଚାହାନ୍ତି, ଏପରି ବିଷୟ ଲୋଲୁପ, ଲୋଭୀ ଆଉ କାମୀ ପୁରୁଷଙ୍କର ପଛରେ କଦାପି ଅନୁଗମନ କରିବା ଅନୁଚିତ। ଯେ ପର୍ଯ୍ୟନ୍ତ ସଂସାର ପ୍ରତି ଯଥାର୍ଥ ବୈରାଗ୍ୟ ନ ହୋଇଛି ସେ ପର୍ଯ୍ୟନ୍ତ ଲଣ୍ଡା ହୁଅ ବା ଦାଢ଼ିବାଳ ଜଟା ଛାଡ଼, ଲୁଗା ରଙ୍ଗକର ଅଥବା ମାଳା ବୋଝେ ଗଳାଅ, ମନ ବିଷୟ ଅଭିମୁଖେ ଦୌଡ଼ିବ ହିଁ ଦୌଡ଼ିବ। ଭଗବାନଙ୍କ କୃପାରୁ ବିଷୟ ପ୍ରତି ଯେତେବେଳେ ବୈରାଗ୍ୟ ହୋଇଯିବ, ସେତେବେଳେ ଏହି ବିଷୟ ବିଷବତ୍ ପ୍ରତୀତ ହେବାରେ ଲାଗିବ। ଦେଖ, ମହାରାଜ ପୁରୁରେବାଙ୍କର ଯେତେବେଳେ ବିଷୟ ପ୍ରତି ବୈରାଗ୍ୟ ଆସିଗଲା, ସେତେବେଳେ ସେଇ ଉର୍ବଶୀ, ଯାହା ବିୟୋଗରେ କ୍ଷଣେ ବୋଲି ରହିପାରୁ ନଥିଲେ, ତୁଚ୍ଛ ଓ ଘୃଣିତ କାମିନୀ ରୂପେ ପ୍ରତୀତ ହେବାରେ ଲାଗିଲା।''

ଉଦ୍ଧବ ପଚାରିଲେ, ''ପ୍ରଭୁ! ସମ୍ରାଟ୍ ପୁରୁରେବା ଉର୍ବଶୀଙ୍କୁ ପ୍ରେମ କଲେ କିପରି ? ଆଉ ତାଙ୍କ ଯୋଗୁଁ ସମ୍ରାଟଙ୍କର ବୈରାଗ୍ୟ ପୁଣି ହେଲା କିପରି ?''

ଭଗବାନ୍ କହିଲେ, ''ମହାରାଜ ପୁରୁରେବା ଇଳାଙ୍କର ପୁଅ। ସେ ଥିଲେ ଅପୂର୍ବ ସୁନ୍ଦର। ଦିନେ ସେ ଉର୍ବଶୀଙ୍କୁ ଦେଖି ମୋହିତ ହୋଇଗଲେ। ଉର୍ବଶୀ ବି ପୁରୁରେବାଙ୍କୁ ଦେଖି ବିମୋହିତା ହୋଇଗଲେ। ଅଭିଶାପବଶତଃ ଉର୍ବଶୀ ରାଜାଙ୍କର ପତ୍ନୀ ହେଲେ। ମହାରାଜ ତାଙ୍କୁ ପ୍ରାଣଠାରୁ ଅଧିକ ଭଲ ପାଇବାରେ ଲାଗିଲେ। କିନ୍ତୁ ଦିନେ ଉର୍ବଶୀ ହଠାତ୍ ରାଜାଙ୍କୁ ପରିତ୍ୟାଗ କରି ପଳାଇଗଲେ। ମହାରାଜ ପୁରୁରେବାଙ୍କ ସେତେବେଳେ ଖୁବ୍ ଖରାପ ଦଶା ପଡ଼ିଥିଲା। ଯଦିଓ ମହାରାଜ ପ୍ରବଳ ଯଶସ୍ୱୀ ଓ ସପ୍ତଦ୍ୱୀପବତୀ ବସୁନ୍ଧରାର ଏକଛତ୍ରପତି ସମ୍ରାଟ୍ ଥିଲେ, ମହାନ୍ ମହାନ୍ ମହାରାଜାମାନେ ସେମାନଙ୍କର ମଣି ସୁବର୍ଣ୍ଣ ଖଚିତ ମୁକୁଟ ପରିଧାନ କରି ସମ୍ରାଟଙ୍କ ପାଦତଳେ ମୁଣ୍ଡିଆ ମାରୁଥିଲେ, ତେବେ ପୁଣ୍ଣା ସେହି ସ୍ୱର୍ଗୀୟ ବେଶ୍ୟାର ବିରହରେ ଏତେ ବିମୋହିତ ହୋଇଯାଇଥିଲେ ଯେ, ତାଙ୍କ ପାଇଁ ବିହ୍ୱଳ ହୋଇଯାଇ, ଉନ୍ମତ୍ତ ପାଗଳଙ୍କ ଭଳି ଉଲଗ୍ନ ଅବସ୍ଥାରେ ଦୌଡ଼ିବାରେ ଲାଗିଥିଲେ। ସେ ଅତ୍ୟନ୍ତ ଦୀନ

ରୂପେ ପ୍ରଳାପ କରୁଥିଲେ– 'ଆରେ ଏ କଠୋର ହୃଦୟା କାମିନି ! କ୍ଷଣେ ମାତ୍ର ରହି ମୋ ସହିତ ଦୁଇ ପଦ କଥା ହୋଇଯା । ତୋ ବିନା ମୁଁ ବଞ୍ଚିବି କିପରି ?' କିନ୍ତୁ ହାୟ ! ସେହି ସ୍ୱର୍ଗୀୟ ବେଶ୍ୟା ରାଜାଙ୍କ କଥାକୁ କାନ ନ ଦେଇ ପରିତ୍ୟାଗ କରିଗଲା । ରାଜା ମୂର୍ଚ୍ଛା ହୋଇ ତଳେ ପଡ଼ିଗଲେ ।

''ହେ ଉଦ୍ଧବ ! କାମ କେଡ଼େ କ୍ରୂର ଦେଖ । ଯେଉଁ ସ୍ୱର୍ଗୀୟ ଲଳନା ଉର୍ବଶୀ ସହିତ ବର୍ଷ ବର୍ଷ ବିତାଇଥିଲେ, ଆସକ୍ତିଚିତ୍ତ ମହାରାଜ ଯାହା ଯୋଗୁ ଦିନ ରାତି ବି ଭୁଲିଯାଇଥିଲେ, ଯାହାର ଅଧରାମୃତ ପାନ କରି କରି ମହାରାଜ ଆତ୍ମହରା ହୋଇଯାଉଥିଲେ, ଏବେ ତା'କୁ କ୍ଷଣକ ପାଇଁ ପାଇବାକୁ ଏଡ଼େ ବଡ଼ ସମ୍ରାଟ୍ କିପରି ବ୍ୟାକୁଳ ହୋଇଗଲେ । କାମର କି ନିଷ୍ଠୁର ବିଡ଼ମ୍ବନା ! ଅପ୍‌ସରାର ବିୟୋଗରେ ମହାରାଜ ଅନେକ ଦିନ ପର୍ଯ୍ୟନ୍ତ ବିହ୍ୱଳ ରହିଲେ । ପରିଶେଷରେ ମହାରାଜଙ୍କର ଶୋକର ବି ପରିସମାପ୍ତି ହୋଇଗଲା । ବିଷୟ ପ୍ରତି ତାଙ୍କର ବୈରାଗ୍ୟ ଆସିଗଲା । ଏବେ ଉର୍ବଶୀର ଯେଉଁ ଅଙ୍ଗକୁ ଯେତେ ଦେଖୁଥିଲେ ବି ପରିତୃପ୍ତି ଆସୁ ନଥିଲା ତାହା ରାଜାଙ୍କୁ ପରମ ନିନ୍ଦନୀୟ ଏବଂ ଘୃଣିତ ପ୍ରତୀତ ହେବାରେ ଲାଗିଲା । ଏପରି ବୈରାଗ୍ୟ ସମୟରେ ମହାରାଜ ନିଜକୁ ନିଜେ ଧିକ୍‌କାର କରି ଗୀତ ଗାନ କରିବାରେ ଲାଗିଲେ–

(୧)

ହାୟ ! ଜୀବନଟି ବୃଥା ହୋଇଗଲା !

ଦେଖ ଚଞ୍ଚଳ ମୋର ଚିତ୍ତ । କାମିନୀ-କାମେ ବିମୋହିତ ॥
ନାରୀ ସଙ୍ଗମେ ଗଲା କାଳ । ଧିକ ମୋ ଜୀବନ ନିଷ୍ଫଳ ॥
ଦେଖ ମୁଁ ନୃପ ଶିରୋମଣି । ମୋ ପ୍ରାଣ ଛିଣିଲା ତରୁଣୀ ॥
ଉର୍ବଶୀ-ବିଯୋଗେ ବିକଳ । ଅଜ୍ଞାନେ ନାଶିଲି ସକଳ ॥
ଧନ ସମ୍ପତ୍ତି ମୋର କେଣେ । ଗଲା ନ ଜାଣେ ଅନ୍ଧ ପଣେ ॥
ଏକାନ୍ତେ ଭ୍ରମଇ ଜଗତେ । ଉଲଗ୍ନ ବେଶେ ଉନ୍ମତ୍ତେ ॥
ଦେଖ ନିର୍ଦ୍ଦୟା ତା ହୃଦୟେ । ଲେଉଟି କେବେହେଁ ନ ଚାହେଁ ॥
ଯେ ଅବା ନାରୀବଶ ହୋନ୍ତି । କିବା ତାହାଙ୍କ ତେଜ ମତି ॥
ଯେସନେ ଗଧ କାମ ଭୋଳେ । ଗଧୁଣୀ ପାଶେ ଯାଇ ମିଳେ ॥
ସେ ତାକୁ ଚରଣେ ତାଡ଼ଇ । ନିର୍ଲ୍ଲଜ ସେ ତା ନ ଜାଣଇ ।
ଏ ପାପ ଚିତ୍ତ ନିରୋଧନେ । ଉପାୟ ନ ଦିଶେ ମୋ ମନେ ॥

-୨-

ହାୟ ! ମୋ ଜପ ତପ ଦାନ ବୃଥା ହୋଇଗଲା !

ବିଦ୍ୟା ତପସ୍ୟା ଶାସ୍ତ୍ର ଦାନ । ଏକାନ୍ତ ନିବାସ ମଉନ ॥
ଏଣେ ତା ପ୍ରୟୋଜନ କିସ । ଯା ମନ ନାରୀ କଲା ବଶ ॥
ଏଣୁ ଜୀବନ ମୋର ଧିକ । ନିଷ୍ଫଳ ମୋ ଜ୍ଞାନ-ବିବେକ ॥
ମୁହିଁ ଯେ ପ୍ରଭୁପଣ ପାଇ । ଗୋରୁ-ଗର୍ଦ୍ଦଭ ପ୍ରାୟ ହୋଇ ॥
କି ତପବିଦ୍ୟା ତା ସାଧନ । କଟାକ୍ଷେ ମୋହିଲା ମୋ ମନ ॥
ସର୍ବ ନିଷ୍ଫଳ ନାରୀ ସଙ୍ଗେ । ବଞ୍ଚିତ ହେଲି ନର ଅଙ୍ଗେ ॥
ଉର୍ବଶୀ ସଙ୍ଗେ ଏତେ ଦିନ । ବଞ୍ଚିଲି ଧିକ ମୋ ଜୀବନ ॥
ମୋତେ ନ ଛାଡ଼େ କାମଜ୍ୱର । ମୁଁ ରୋଗୀ ପାପିଷ୍ଠ ପାମର ॥

ନାରୀ ସଙ୍ଗମେ ଯାର ମନ । ମୋହେ ହୁଅଇ ହତଜ୍ଞାନ ॥
ତା'ର ଜୀବନ ଉଦ୍ଧାରଣେ । କେ ପାରେ ବିନା ନାରାୟଣେ ॥

-୩-

ହାୟରେ ! ମୂଢ଼ ମନ !

ଜ୍ଞାନ ଆଧାର ଭଗବାନ । ଗୁଣ-ରଞ୍ଜନ ପୂର୍ଣ୍ଣକାମ ॥
ମୋର ଜୀବନ ପରିତ୍ରାଣେ । କୃଷ୍ଣ ହୁଁ ଅନ୍ୟ ନାହିଁ ଜଣେ ॥
ଇନ୍ଦ୍ରିୟମାନଙ୍କୁ ନ ଜିତି । ମୁଁ ମୂଢ଼ ଅତ୍ୟନ୍ତ ଦୁର୍ମତି ।
ଉର୍ବଶୀ ଉଚିତ ବଚନ । ଯେଣୁ ନ ବୁଝି ହେଲି ଭ୍ରମ ॥
ତାହାର କିସ ଅବା ଦୋଷ । ମୋର ଅଜ୍ଞାନେ ମୁହିଁ ନାଶ ॥
ଏ ନର କଳେବର ପାଇ । ମୁଁ କ୍ରୀଡ଼ାମୃଗ ପ୍ରାୟେ ହୋଇ ॥
ଉର୍ବଶୀ ବିୟୋଗ ବିକଳ । ଅଜ୍ଞାନେ ନାଶିଲି ସକଳ ॥

-୪-

ହାୟରେ ! ସେ ନାରୀ ଅଙ୍ଗ !

ଏ ଦେହେ କିବା କାର୍ଯ୍ୟ ଅଛି । ଦୁର୍ଗନ୍ଧ ମଳିନ ଅଶୁଚି ॥
ରୁଧିର ମାଂସ ମଳ ମୂତ୍ର । ଅନ୍ତ୍ର ଜଡ଼ିତ ଶିରା ସୂତ୍ର ॥
ଅଙ୍ଗ ନିର୍ମିତ ଅସ୍ଥି-ଚର୍ମେ । ଏ ନରଦେହ ପାଇ କର୍ମେ ॥
ଏ ସର୍ବ ଅମେଧ-ମନ୍ଦିର । ଅନିତ୍ୟ ନର କଳେବର ॥
ଏହାକୁ ନିତ୍ୟ ପ୍ରାୟ ମଣି । ଯେ ପ୍ରାଣୀ ରମନ୍ତି ତରୁଣୀ ॥
ସେ କୀଟ କୃମି ସଙ୍ଗେ ସଙ୍ଗ । ଯେ ନିତ୍ୟ ମଣେ ନାରୀ ଅଙ୍ଗ ॥
ଏ ବୋଲି ବୁଝି ନାରୀ ସଙ୍ଗେ । ପଣ୍ଡିତେ ନୋହେ ମତିଭଙ୍ଗେ ॥

-୫-

ସ୍ତ୍ରୀ ସଙ୍ଗ ପରିହାର କର !

ବିଷୟ-ସଙ୍ଗ ଇନ୍ଦ୍ରିମେଳେ । ମନ-ବିକ୍ଷେପ ରସଭୋଳେ ॥
ନିତ୍ୟେ ସେବନ୍ତି ଅନୁସଙ୍ଗେ । ଯେସନେ ଜଳଧି ତରଙ୍ଗେ ॥
ବଢ଼ଇ ରସଲୋଭେ ଚିତ୍ତ । କେବେହେଁ ନୁହଇ ଆୟତ୍ତ ॥
ନ ଦେଖେ ନ ଶୁଣଇ ଯେବେ । ମନ ନିଶ୍ଚଳ ହୋଏ ତେବେ ॥
ମନ ନିଷ୍ଟଳେ ଇନ୍ଦ୍ରିଗଣ । ବଳେ ଯେ ହୁଅନ୍ତି ସଂଯମ ॥
ତେଣୁ ସ୍ତ୍ରୀ ସଙ୍ଗ ପରିହାରେ । ଇନ୍ଦ୍ରିୟଗଣଙ୍କୁ ନିବାରେ ॥
ଶ୍ରବଣେ ଶୁଣି ସ୍ତିରୀରୂପ । ଚିତ୍ତେ ଜଡ଼ଇ କାମକଳ୍ପ ॥
ଏଣୁ କାମିନୀ ସଙ୍ଗଦୋଷେ । ପଣ୍ଡିତଜନ ମନ ତ୍ରାସେ ॥

ଭଗବାନ କହିଲେ, "ହେ ଉଦ୍ଧବ ! ଉର୍ବଶୀର ବିୟୋଗରେ ମହାରାଜଙ୍କର ଏହିପରି ଆତ୍ମଗ୍ଲାନି ହେଲା । ସେ ବାରମ୍ବାର ନିଜକୁ ଧିକ୍କାର କରିବାରେ ଲାଗିଲେ । ମୋର ତାଙ୍କ

ପ୍ରତି କୃପା ହୋଇଗଲା । ବିଷୟ ଭୋଗର ଯଥାର୍ଥ ଜ୍ଞାନ ତାଙ୍କର ହୋଇଗଲା । ସେ ଥରକୁଥର ଦୀର୍ଘଶ୍ୱାସ ପକାଇ କହିବାରେ ଲାଗିଲେ– "ହାୟ ! ମୁଁ ନିଜକୁ ନିଜେ ଜଣେ ମହାନ୍ ପଣ୍ଡିତ ବୋଲି ଭାବିଥିଲି । କିନ୍ତୁ ବାସ୍ତବରେ ମୁଁ ହିଁ ଜଣେ ମହାମୂର୍ଖ । ତାହା ହୋଇ ନଥିଲେ ରାଜରାଜେଶ୍ୱର ହୋଇ, ସମଗ୍ର ପୃଥିବୀର ରକ୍ଷକ ହୋଇ ଜଣେ ସାମାନ୍ୟ କାମିନୀର କ୍ରୀଡ଼ାମୃଗ ହୋଇଯାଇ ନଥାନ୍ତି । ତା' ଇଙ୍ଗିତରେ ନାଚି ନଥାନ୍ତି । ମୋର ବୁଦ୍ଧି ବିଚାର ହଜି ଯାଇଥିଲା । ମୁଁ ଘୋଡ଼ା ଗଧ ଷଣ୍ଢ ଭଳି ନାରୀ ପଛରେ ଗୋଡ଼ାଇବାରେ ଲାଗିଥିଲି । ମୁଁ ଚାହୁଁଛି କ'ଣ ? ତା' ସହିତ ଥରେ ମାତ୍ର ମିଳନ ! ମାତ୍ର ଏଥିରେ କ'ଣ କାମ ବାସନା କେବେ ତୃପ୍ତ ହୋଇପାରେ ! କାମ ବାସନା ଆହୁରି ବର୍ଦ୍ଧିତ ହେବ । ପ୍ରଜ୍ଜ୍ୱଳିତ ଅଗ୍ନିରେ ଘୃତ ଦାନ କଲେ ଅଗ୍ନି ଶାନ୍ତ ହୁଏ କି ? ଏବେ ଥରୁଟିଏ ପାଇଁ ପାଗଳ ହୋଇଛି, ଏତେ ଦିନ, ଏତେ ବର୍ଷ ମୋ ସହିତ ଥିଲା ତ ! କାହିଁ ଚିତ୍ତ ଶାନ୍ତ ହେଲାନାହିଁ ତ ! ତେବେ ଆଉ ଥରକରେ କିପରି ଚିତ୍ତ ଶାନ୍ତ ହୋଇଯିବ ! ନା ନା ଏହା ଅସମ୍ଭବ ! ମୋ ମନକୁ ଚୋରଣୀ କାମିନୀ ଚୋରାଇ ନେଇଛି । ମୁଁ ଏବେ ଯିବି କୁଆଡ଼େ ? ହାୟ ! ମୁଁ କାହାର ଶରଣ ନେବି । ଏପରି ମୋର ସୁହୃଦ, ହିତୈଷୀ କିଏ ଅଛି ? ସଂସାରର ସମସ୍ତ ଲୋକ ସ୍ୱାର୍ଥପର । ମୈତ୍ରୀ ତ ସ୍ୱାର୍ଥସାଧନ ନିମିତ୍ତ ହୋଇଥାଏ । ଏକମାତ୍ର ମୁନି-ମନ-ସେବିତ ଭକ୍ତ-ଜନ-ବନ୍ଦିତ ଜଗତର ସୁହୃଦ୍ ସର୍ବେଶ୍ୱର ହିଁ ମୋତେ ରକ୍ଷା କରିପାରନ୍ତି ! ତାଙ୍କର ଶରଣ ଗ୍ରହଣ କରି ପ୍ରକୃତ ଶାନ୍ତି ମିଳି ପାରିବ ।

"ହାୟ ! ସେଇ କାମିନୀ ତ ମୋତେ ପ୍ରଥମରୁ ସ୍ପଷ୍ଟ କହିଦେଇଥିଲା– 'ଆମେ ସୌରିଣୀ । ଆମେ ଜଣଙ୍କ ପାଖରେ ରହିପାରୁନା । ପ୍ରତିଦିନ ନୂଆ ପତି ସେବା କରୁ । ଆମେ ଜାତି, ବର୍ଣ୍ଣ, ବିଦ୍ୟା, କୁଳ, ଐଶ୍ୱର୍ଯ୍ୟ ଦେଖୁନା । ସ୍ଥାନ-ଅସ୍ଥାନ, ଶୁଚି-ଅଶୁଚି, ସମୟ-ଅସମୟ ବିଚାର କରୁନା । ଯେଉଁଠି ହେଉ, ଯେତେବେଳେ ହେଉ, ଯାହା ସହିତ ଆମକୁ କାମ ସୁଖ ମିଳେ ଆମେ ତା'ର ହୋଇଯାଉ ।' ଏହିଭଳି ସତ୍ୟ କଥା କହି ସେ ତ ମୋତେ ସଚେତନ କରିଦେଇ ଥିଲା । ହେଲେ, ମୋ ବୁଦ୍ଧିକୁ ଦେଖ ! ମୁଁ କାମାନ୍ଧ ହୋଇଯାଇଥିଲି । ବିବେକ ବିଚାର ହରାଇ ପକାଇ ଥିଲି ।

"ହାୟ ! ମୁଁ କାମାନ୍ଧ ହୋଇ କାମିନୀକୁ ପ୍ରେମ କରିବାରେ ଲାଗିଲି । ଅରେ ! ମୁଁ ପ୍ରେମ ଶବ୍ଦକୁ ତ ଅପମାନ କରିଛି । ପ୍ରେମ ତ ନିତ୍ୟବସ୍ତୁ, ସାକ୍ଷାତ୍ ଭଗବାନଙ୍କ ସ୍ୱରୂପ । ପ୍ରେମ ତ କେବଳ ପ୍ରଭୁଙ୍କୁ କରାଯାଇ ପାରେ । ତେବେ ଅସତ୍, ମଳିନ ଆଉ ପରମ ଘୃଣିତ ଏହି ଶରୀର କିପରି ସତ୍ୟ, ଶୁଦ୍ଧ ଆଉ ପ୍ରେମ ନିମନ୍ତେ ଯଥାର୍ଥ ହୋଇ ପାରିବ । ମୁଁ ହଳାହଳକୁ ଅମୃତ ବୋଲି ସମ୍ବୋଧିତ କରିଛି ।

"ପ୍ରେମ ତ ଭଗବାନଙ୍କର ରୂପ । ହେଲେ, ଏହି ଶରୀର କାହାର କେହି ଜାଣେ କି ? ମାତା ପିତା କୁହନ୍ତି ଯେ ପୁତ୍ରର ଶରୀର, ତାଙ୍କର ରଜ, ବୀର୍ଯ୍ୟରେ ତିଆରି ହୋଇଥିବାରୁ ସେମାନଙ୍କର । ସ୍ତ୍ରୀ କହେ, 'ତମେମାନେ କେବେ ଜନ୍ମ କରିଥିଲ ନା, ଏବେ ତ ଅଗ୍ନିକୁ ସାକ୍ଷୀରଖି ମୋତେ ବିବାହ କରିଛନ୍ତି- ତେଣୁ, ପ୍ରାଣନାଥଙ୍କ ଶରୀର ଗୋଟାପଣେ ମୋର ଯେଉଁଠାରେ କାମକରେ, ସେହି ମାଲିକ କହେ, ମୁଁ ତାଙ୍କୁ ପଇସା ଦେଇ କିଣିଛି, ତେଣୁ ତା' ଶରୀର ଉପରେ ମୋର ପୂର୍ଣ୍ଣ ଅଧିକାର ଅଛି । ଶ୍ୱାନ, ଶୃଗାଳ, ଶ୍ୱେନ ତଥା ଅଗ୍ନି ଏମାନେ କୁହନ୍ତି,, ତୁମେମାନେ ସେମିତି ବକର, ବକର ହେଉଥାଅ, ଯିଏ ଯାହା ଖାଏ ତାହା ତା'ର ହିଁ ହୋଇଥାଏ । ପରିଶେଷରେ ଆମେ ହିଁ ତାକୁ ଖାଇବୁ— ଏହିଭଳି ମଣିଷ

ଶରୀରର ଗ୍ରାହକ ଅନେକ ହେଲେ, ଅନ୍ତରେ ତାହା ପଞ୍ଚଭୂତରେ ମିଶିଯାଏ, ମୁଠାଏ ମାଟି ହୋଇଯାଏ। ଆଉ ଏଇ ଅନିତ୍ୟ ଶରୀର ପାଇଁ ସ୍ତ୍ରୀ-ପୁରୁଷ ମରୁଥାନ୍ତି। ସ୍ତ୍ରୀ କହେ-'ତୁମେ ମୋର ଜୀବନର ପ୍ରାଣନାଥ, ତମେ ମୋର ସର୍ବସ୍ୱ, ତୁମେ ତ ମୋର ଜୀବନଧାର। ' ପୁରୁଷ କହେ-' ପ୍ରିୟେ! ତୁମେ ଚନ୍ଦ୍ରବଦନୀ, ମୃଗନୟନୀ, ସୁଘନା ବିପୁଳା, କମଳନୟନୀ, ମୋର ପ୍ରାଣପ୍ରିୟା। ତୁମର ଗୋଲାପୀ ଗୋଲାପୀ ଓଠର ଈଷତ୍ ହାସ୍ୟରେଖା ପାଇଁ ମୁଁ ମୋର ସର୍ବସ୍ୱ ହରାଇ ଦେବି। ଅହୋ କାମର କି କ୍ରୁରତାପୂର୍ଣ୍ଣ କ୍ରୀଡ଼ା ସତେ!''

ଏ ସମସ୍ତର ଏକମାତ୍ର ଉପାୟ ହେଉଛି ଇନ୍ଦ୍ରିୟଙ୍କୁ ବିଷୟରୁ ଦୂରକରି ବିରକ୍ତ ହୋଇଯିବା। ବିଷୟ ଓ ଇନ୍ଦ୍ରିୟଙ୍କର ସଂଯୋଗରେ ମନରେ ବିକାର ପରିପୂର୍ଣ୍ଣ ହୋଇଯାଏ। ଯେଉଁ ବିଷୟକୁ ଆମେ କେବେ ବି ଦେଖି ନ ଥିବା, ଶୁଣି ନ ଥିବା ବା ଭୋଗକରି ନ ଥିବା ତାକୁ ଦେଖି ବି ଚିତ୍ତରେ ତାହାର ବାସନା ଯେପରି ନ ଉଠେ। ଆମେ ଏପରି ଯତ୍ନ କରିବା ଉଚିତ ଯେ ଯଥାଶକ୍ତି ଇନ୍ଦ୍ରିୟଙ୍କୁ ବିଷୟ ସହିତ ସଂଯୋଗ କରିବାକୁ ଦେଉ ନଥିବା। ଏପରି କରିବା ଦ୍ୱାରା ଚିତ୍ତର ଚଞ୍ଚଳତା ଧୀରେ ଧୀରେ ନଷ୍ଟ ହୋଇଯାଏ। ମନ ସ୍ଥିର ତଥା ଶାନ୍ତ ହୋଇଯାଏ। ଏଥିପାଇଁ ଯେତେଦୂର ସମ୍ଭବ କାମୀ ଓ କାମିନୀଙ୍କ ସଙ୍ଗ କଦାପି, ଭୁଲରେ ବି କରିବା ଅନୁଚିତ। ତ୍ୟାଗମାର୍ଗର ଦୀକ୍ଷା ଗ୍ରହଣକାରୀ ଭୁଲରେ ବି ଏମାନଙ୍କର ସଙ୍ଗ କରିବା ଅନୁଚିତ। ଯିଏ ଭୁଲରେ ବି ଏମାନଙ୍କର ସଙ୍ଗ କରେ, ସେ ନିଶ୍ଚୟ ଫସିଯାଏ। ମନ ମୋର ବଶୀଭୂତ ହୋଇଯିବ- ଏପରି କଥାକୁ କଦାପି ବିଶ୍ୱାସ କରିବା ଅନୁଚିତ। ମହାନ୍ ମହାନ୍ ଜ୍ଞାନୀ, ଧ୍ୟାନୀ ଆଉ ବିବେକୀ ପୁରୁଷଙ୍କୁ ବି ଅଭିମାନ ଆସିଯିବା ମାତ୍ରେ ଏହା ଚାରିଆଡ଼କୁ ଚିତ୍ତକୁ ଘେନିଯାଏ ଏବଂ ଅଭିମାନକୁ ଛିନ୍‌ଭିନ୍ କରିଦିଏ। ତେଣୁ ସେହି ଅପ୍ସରାକୁ ଆଉ ନ ଭାବି ନିରନ୍ତର ଭଗବାନ ଅଚ୍ୟୁତଙ୍କୁ ଚିନ୍ତନ କରିବି। ତାଙ୍କର ଚରଣାରବିନ୍ଦରେ ଶରଣ ଘେନିବି।''

ଭଗବାନ୍ କୃଷ୍ଣଚନ୍ଦ୍ର କହୁଛନ୍ତି, ''ହେ ଉଦ୍ଧବ! ମହାରାଜ ପୁରୁରେବା ଏହିଭଳି ଉର୍ବଶୀ ଲୋକକୁ ପରିତ୍ୟାଗ କରି ଚାଲିଗଲେ। ଆଉ ନିଜର ଅନ୍ତଃକରଣରେ ଆତ୍ମାରୂପରେ ସ୍ଥିତ ମୁକ୍ତ ପରମାତ୍ମାଙ୍କୁ ଚିହ୍ନି ସୁଖୀ ଓ ଶାନ୍ତ ହୋଇଗଲେ। ରାଜାଙ୍କର ସଙ୍ଗଦୋଷରୁ ମୋହ ହୋଇଯାଇଥିଲା। ଏଣୁ ପରମାର୍ଥ ଇଚ୍ଛାକାମୀ ପୁରୁଷ କଦାପି କାମୀ ପୁରୁଷଙ୍କର କୁସଙ୍ଗ ନ କରିବା ଉଚିତ। ସଦା ସର୍ବଦା ସନ୍ଥଜନଙ୍କର ସଙ୍ଗ କରୁଥିବା ଉଚିତ। ଯେଉଁ ମନ କାମଙ୍କ ସହିତ ଲାଗିଯାଇଛି ତାକୁ ଭଗବଦ୍ ଭକ୍ତଙ୍କ ଠାରେ ଲଗାଇ ଦେବା ଉଚିତ। ସେମାନଙ୍କୁ ସ୍ନେହ ଅନୁରାଗ କରିବା ଉଚିତ। ନିରନ୍ତର ସନ୍ଥଙ୍କ ପାଖକୁ ଯିବାଦ୍ୱାରା ପରମାର୍ଥରେ ସ୍ୱତଃ ରୁଚି ହୋଇଯାଏ । ସନ୍ଥ ଜନ ଭଗବତୀ କଥାକୁ ଶୁଣୁଥିଲେ ସଦୁପଦେଶ ଦେଉଥିଲେ– ମନର ବିଷୟାସକ୍ତି ନଷ୍ଟ ହୋଇଯିବ''।

ଉଦ୍ଧବ ପଚାରିଲେ, ''ଭଗବନ୍! ଆପଣ କୁସଙ୍ଗର ପରିଣାମ କହିଲେ। ଏବେ ସତ୍‌ସଙ୍ଗର ମହିମା ଭିତରୁ କିଛି ଶୁଣାନ୍ତୁ। ସନ୍ଥଙ୍କ ପାଖକୁ ଗଲେ କି ପ୍ରକାର ଲାଭ ମିଳିଥାଏ।''

ଭଗବାନ୍ କହିଲେ, ''ଠିକ୍ ଅଛି ଉଦ୍ଧବ! ଏବେ ମୁଁ ତୁମକୁ ସତ୍‌ସଙ୍ଗର ମାହାତ୍ମ୍ୟ କହୁଛି ଶୁଣ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ! ଭଗବାନଙ୍କ ଶବ୍ଦରେ ଆପଣମାନେ ସତ୍‌ସଙ୍ଗର ମହିମା ଶ୍ରବଣ କରନ୍ତୁ।''

**ଛପ୍ପୟ**

ଯୋ ବହୁ ପଛିତାଇ ଉରବଶୀ ପୁର ତଜି ଆୟେ।
ମନ ମହଁ ମୋକୁଁ ଧାଇ ଶାନ୍ତ ହ୍ୱୈ ଅତି ହରଷାୟୋ॥
ଭୟୋ ଯଥାରଥ ଜ୍ଞାନ ମୋହ କୋ ନାତୋ ତୋରେୟା।
ସବ ଜଗତେ ମୁଖ ମୋଇ ପ୍ରେମ ମୋଇ ତେ ଜୋରେୟା॥
ଜୋ ଚାହେ କଲ୍ୟାନ ନିଜ, ଜାଇ ନ କବହୁଁ କୁସଙ୍ଗ ମହିଁ।
କାମୀ କାମିନି ସଂଗ ତଜି, ରହେ ସଦା ସତସଂଗ ମହିଁ॥



# ସନ୍ତ ସମାଗମ ମାହାତ୍ମ୍ୟ

**ସନ୍ତୋଽନପେକ୍ଷା ମଚ୍ଚିତ୍ତା ପ୍ରଶାନ୍ତାଃ ସମଦର୍ଶିନଃ।**
**ନିର୍ମମା ନିରହଙ୍କାରା ନିର୍ଦ୍ୱନ୍ଦ୍ୱା ନିଷ୍ପରିଗ୍ରହାଃ॥**
**ତେଷୁ ନିତ୍ୟଂ ମହାଭାଗ ! ମହାଭାଗେଷୁ ମତ୍କଥାଃ।**
**ସମ୍ଭବନ୍ତି ହିତା ନୃଣାଂ ଜୁଷତାଂ ପ୍ରପୁନନ୍ତ୍ୟଘମ୍॥ ★**

[ଶ୍ରୀଭା.୧୧ସ୍କ.୨୬ଅ. ୨୭-୨୮ ଶ୍ଳୋକ]

**ଛପ୍ପୟ**

ସମଦରଶୀ ଶୁଚି ସଂତ ସରଲଚିତ ଶାନ୍ତ ଅମାନୀ।
ଭୋରେ ମମତାଶୂନ୍ୟ ଅକଞ୍ଚନ ନିରମମ ଜ୍ଞାନୀ॥
ହୋବୈ ତନକେ ଯହାଁ କଥା ନିତ ହରି କୀ ମନହର।
ସୁନତ ହୋତ ଅଘନାସ ହୋହି ହିୟ ନିରମଲ ସୁଖକର॥
ସନ୍ତନିକେ ଢିଁଗ ବୈଠିକେ, ସୁନୈ କଥା ଜେ ଚାବ ତେଁ।
ତେ ପାବେ ଧ୍ରୁବ ପରମ ପଦ, କରେଁ କୀରତନ ଭାବ ତେଁ॥

---



ସ୍ୱଭାବେ ସାଧୁଜନ ଯେତେ । ସମାନ ଦେଖନ୍ତି ଜଗତେ ॥
ତାହାଙ୍କ ଚିତ୍ତ ନିରପେକ୍ଷ । ମିତ୍ର-ଅରିରି ବେନିପକ୍ଷ ॥
ଚିତ୍ତ ନିବେଶି ମୋ ଚରଣ । ସ୍ୱଭାବେ ଶାନ୍ତ-ପରାୟଣ ॥
ନିର୍ଦ୍ୱନ୍ଦ୍ୱ ନିଷ୍କାମ ନିର୍ମୋହ । ସ୍ୱଭାବେ ନାହିଁ ପରିଗ୍ରହ ॥
ଏହାଙ୍କ ସଙ୍ଗେ ସଙ୍ଗ କର । ମୋର ଭକତି ହୃଦେ ଧର ॥
ସାଧୁଜନଙ୍କ ସଭାମଧ୍ୟେ । ମୋ ନାମ-ଗୁଣ ଅନୁବାଦେ ॥
ନିତ୍ୟେ କହନ୍ତି ମୋର କଥା । ମୋ ପୁଣ୍ୟ ଯଶ ଗୁଣ ଗାଥା ॥

[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କନ୍ଧ : ୨୭ ଅ]

ଏହି ଜଗତ ହେଉଛି ଭାବମୟ । ମଣିଷ ଭାବନା ଯେପରି କରେ ସେହିପରି ହୋଇଯାଏ । ଶରୀର କ'ଣ ? ପରମାଣୁ ପୁଞ୍ଜ । ଯିଏ ଯେଉଁଭଳି ପରମାଣୁରେ ନିର୍ମିତ ହୋଇଥାଏ, ସେ ସେହିଭଳି ପ୍ରଭାବ ତା'ର ଚତୁର୍ପାଶ୍ୱରେ ସ୍ଥାପିତ କରିଦିଏ । ଜଣେ ବ୍ୟବସାୟୀ ବ୍ୟବସାୟ କରି କରି ତାର ଅଣୁ ପରମାଣୁରେ ବ୍ୟବସାୟ ଇ. ବ୍ୟବସାୟ ପଶିଗଲା । ସେ ଯେଉଁଠି ବସି ଯାଉଥାଏ କେବଳ ବ୍ୟବସାୟ କଥା ଆରମ୍ଭ କରି ଦେଉଥାଏ । ବାଲି ଉପରେ ବସାଇ ଦେଲେ ବାଲି ବ୍ୟବସାୟ ବିଷୟରେ କହିଚାଲେ । ଭିକାରିକୁ ବସାଇଲେ ସେ ଭିକମଗା ବିଷୟରେ କହିଚାଲେ । ଯାହାର ବିଚାରଧାରା ଯେଉଁପରି ହୋଇଥାଏ ସେ ସେତେ ଅଧିକ ନିଜଠାରୁ କମ୍ ବିଚାରଶୀଳଙ୍କୁ ପ୍ରଭାବିତ କରି ପାରେ । ଜଣେ ମଣିଷ ଥିଲା । ସେ ଡକାୟତି କରି କରି ତହିଁରେ ତା' ଚିନ୍ତାଧାରା ଦୃଢ଼ ହୋଇଗଲା । ଆଉ ଜଣେ ଡକାୟତିକୁ ଅତି ଖରାପ ଭାବେ, ହେଲେ କୌଣସି ପ୍ରକାର ଜୀବିକା ନିର୍ବାହ ନିମନ୍ତେ ବିବଶ ଥିଲା । ବେଳେ ବେଳେ ସେ ଅତିଷ୍ଠ ହୋଇ 'ଡକାୟତ ବି କରନ୍ତା କି' ବୋଲି ମଧ ଭାବେ । ସଂଯୋଗକ୍ରମେ ଦିନେ ପୋଖତ୍ ଡକାୟତ ସହିତ ତାର ଦେଖା ହୋଇଗଲା । ପୋଖତ୍ ଡକାୟତି ଲୋକଟିର ବିବଶତା ଶୁଣି ସହାନୁଭୂତି ଦେଖାଇଲା, ଏବଂ ଧୀରେ ଧୀରେ ଡକାୟତି କରିବା ପାଇଁ ପ୍ରବର୍ତ୍ତାଇଲା, ଉତ୍ତେଜିତ କଲା । ଫଳରେ ଭଲ ଲୋକଟି ଅଳ୍ପ ଦିନ ଭିତରେ ଗୋଟିଏ ଡାକୁ ହୋଇଗଲା । ଡାକୁଦଳ ଏହିଭଳି ଗଠନ ହୋଇଥାଏ । ଏହା ସଙ୍ଗ ମାଧ୍ୟମରେ ହିଁ ହୁଏ । ପ୍ରକୃତରେ ଦେଖିବାକୁ ଗଲେ ଗୋଟିଏ ଡାକୁଦଳର ସମସ୍ତେ ଡକାୟତ ହୋଇ ନଥାନ୍ତି । ଡାକୁ ସର୍ଦ୍ଦାରର ପ୍ରଭାବରେ ପ୍ରଭାବିତ ହୋଇ ସେମାନଙ୍କର ପ୍ରକୃତି ସେହିଭଳି ହୋଇଯାଇଥାଏ ।

ଆମେ ଯେତେ ସବୁ ବଡ଼ ବଡ଼ ମୁନିଋଷିଙ୍କ ସମ୍ବନ୍ଧରେ ପଢ଼ିଛେ ବା ଶୁଣିଛେ, ଯେ ଅମୁକ ଋଷି ଏତେ ସହସ୍ର ବର୍ଷ ଘୋର ତପ କରିଥିଲେ, କିନ୍ତୁ ଦିନେ ହଠାତ୍ ଅମୁକ ସ୍ୱର୍ଗୀୟ ଅପ୍‌ସରାର ଫାନ୍ଦରେ ପଡ଼ିଗଲେ– ଏହା ଠିକ୍ ସେହିଭଳି କଥା । ପ୍ରତ୍ୟେକ ପ୍ରାଣୀଙ୍କ ହୃଦୟରେ ସ୍ୱଭାବତଃ କାମ ବାସନା ଥାଏ । ଏହା ଅତି ସ୍ୱାଭାବିକ କଥା । ତାକୁ ଚପାଇ ତପ କରିବାକୁ ହୁଏ । କାମ ବାସନା ଯେତେବେଳେ ଉତ୍ପନ୍ନ ହୁଏ, ଠିକ୍ ସେତିକିବେଳେ ତାକୁ ଚପାଇ ଦେବାକୁ, ଦବାଇଦେବାକୁ ହୁଏ । ଯଦି କୌଣସି ଶୁଦ୍ଧ ଆଚରଣ ବିଶିଷ୍ଟା ସ୍ତ୍ରୀ ସମ୍ମୁଖକୁ ଆସିଯାଏ ତେବେ ମନରେ କାମ ବାସନା ସହଜରେ ସକ୍ରିୟ ହୁଏନାହିଁ । ଏହାର କାରଣ ତପକାରୀ ଓ ସ୍ତ୍ରୀ ଉଭୟଙ୍କର ପରମାଣୁ ଏକାଭଳି ଶୁଦ୍ଧ ଥାଏ । କିନ୍ତୁ ଯେଉଁ ଅପ୍‌ସରାମାନେ ଆସନ୍ତି, ସେମାନଙ୍କର କେବଳ ଏକମାତ୍ର କାମ ହେଉଛି ସ୍ୱର୍ଗୀୟ ପୁରୁଷଙ୍କୁ କାମସୁଖ ପ୍ରଦାନ କରିବା । ଫଳତଃ ସ୍ୱର୍ଗୀୟ ପୁରୁଷଙ୍କର ସଙ୍ଗ ଲାଭ ନିରବଚ୍ଛିନ୍ନ ଭାବେ କରି କରି ଏହି ସଂସ୍କାର ସେମାନଙ୍କ ପାଖରେ ସୁଦୃଢ଼ ହୋଇଯାଇଥାଏ । ସେମାନଙ୍କର ଶରୀରର ସମସ୍ତ ପରମାଣୁ ବି ଠିକ୍ ସେହିଭଳି ହୋଇଯାଇଥାଏ । ସେମାନେ ଘୋରତର ତପରତ ମୁନିଋଷିଙ୍କ ସମ୍ମୁଖକୁ ଆସି ଅତି ବିନୟ ଭାବ ଦେଖାଇ ହୁଅନ୍ତି, ଖୁବ୍ ସେବା ଶୁଶ୍ରୁଷା କରନ୍ତି । ହେଲେ, ଏହି ସଂସାରରେ ପ୍ରତ୍ୟେକ ପ୍ରାଣୀ, ବିଶେଷକରି ନାରୀ ଜାତି ପ୍ରେମ ପାଇଁ କ୍ଷୁଧାର୍ତ୍ତଭଳି ଥାନ୍ତି । ସେମାନେ ପ୍ରେମ ଉଦ୍ଦୀପନା ପ୍ରକାଶ ଶୈଳୀରେ ମଧ ସିଦ୍ଧହସ୍ତା ହୋଇଯାଇଥାନ୍ତି । ସ୍ୱର୍ଗୀୟ ଅପ୍‌ସରାଙ୍କୁ ଏ ବିଷୟରେ ଅଧିକ ଉପମା ବା କ'ଣ ଦେବା । ଯେତେବେଳେ ସେମାନେ ତପସ୍ୱୀଙ୍କ ପ୍ରତି ପ୍ରେମ ପ୍ରକଟ କରନ୍ତି, ତପସ୍ୱୀଙ୍କର ଆକର୍ଷଣ ହୋଇଯାଏ । ସେମାନେ ସଙ୍ଗ କରନ୍ତି । ଏମାନଙ୍କ ସଙ୍ଗଲାଭ ଦ୍ୱାରା ଯେଉଁ ଦୁର୍ଜ୍ଜୟ କାମକୁ ଏତେକାଳଧରି ଚପାଇ ରଖିଥିଲେ ତାହା ବଳବାନ୍ ତଥା ପ୍ରବଳ ପରମାଣୁ ପାଇ ଚଞ୍ଚଳ ଓ ସକ୍ରିୟ ହୋଇଯାଆନ୍ତି । ଏବଂ

ସମ୍ମୁଖରେ କାମ-ଆହାର ପାଇ ଅତ୍ୟଧିକ ଉତ୍ତେଜିତ ହୋଇଯାଆନ୍ତି। ସଂଯମ କ୍ଷଣକ ପାଇଁ ନଷ୍ଟଭ୍ରଷ୍ଟ ହୋଇଯାଏ।

ଶୁଭ ଚିନ୍ତନର ମଧ୍ୟ ଠିକ୍ ଏହିଭଳି ଦଶା ହୋଇଥାଏ। ସଂସାରର ଅନିତ୍ୟତାକୁ ଦେଖି ସମସ୍ତଙ୍କର ଅଳ୍ପ ବହୁତ ବୈରାଗ୍ୟ ହୋଇଥାଏ। କାରଣ ସମସ୍ତେ ଚାହାଁନ୍ତି ଶାନ୍ତି। କିନ୍ତୁ ଘର ସଂସାର ତଥା ଗାର୍ହସ୍ଥ୍ୟ ଜୀବନର ଝଞ୍ଜଟିଆ ପରିବେଶରେ ବୈରାଗ୍ୟ ନା ସୁସ୍ଥିର ହୋଇପାରେ ନା ଚିତ୍ତ ଶାନ୍ତି ହୁଏ। ସଂସାର ନାଶବାନ୍ ବୋଲି ସାଧୁମହାତ୍ମାମାନେ ନିରନ୍ତର ଚିନ୍ତା କରି କରି ବୈରାଗ୍ୟକୁ ସୁସ୍ଥିର ରଖିବାକୁ ଉଦ୍ୟମ କରିଥାନ୍ତି। ସେମାନେ ସଂସାର କଥା ଚିନ୍ତା ନକରି ସବୁ ସମୟରେ ବୈରାଗ୍ୟ କଥା ଚିନ୍ତା କରୁଥାନ୍ତି। ମନକୁ ଶାନ୍ତ ଓ ଏକାଗ୍ର କରିବାପାଇଁ ସତତ ଚେଷ୍ଟା ଚଳାଇଥାନ୍ତି। ସଂସାରର ଘାତ ପ୍ରତିଘାତର ତାଡ଼ନାରେ ମଣିଷ ଯେତେବେଳେ ଅତିଷ୍ଠ ହୋଇ ପଳାଇଯାଇ ସାଧୁ ମହାତ୍ମାଙ୍କ ସମ୍ମୁଖରେ ପହଞ୍ଚନ୍ତି ସେତେବେଳେ ସାଧୁଙ୍କର ବୈରାଗ୍ୟର ପ୍ରବଳ ପରମାଣୁ ସଂସ୍ପର୍ଶରେ ଆସିଥାନ୍ତି। ଏହି ସ୍ପର୍ଶ ହେବା ସଂଗେ ସଂଗେ ସେମାନଙ୍କର ଅନ୍ତର୍ନିହିତ ବୈରାଗ୍ୟ ଧୀରେ ଧୀରେ ଉଦ୍ଭାସିତ ହେବାରେ ଲାଗେ। ଫଳରେ ସଂସାରୀ ଲୋକ କିଛିଟା ଶାନ୍ତି ଅନୁଭବ କରେ। ସେଠାରୁ ପଳାଇଯିବା ପରେ ବୈରାଗ୍ୟ ଭାବ ସାଂସାରିକ ଅଶାନ୍ତ ଭାବଦ୍ୱାରା ଚାପି ହୋଇଯାଏ, ଏବଂ ମଣିଷ ସଂସାର କଥା ଅଧିକ ଭାବି ଅଶାନ୍ତି ହୋଇଯାଏ। ବିରାଗୀଙ୍କ ପାଖରେ ଜୀବନୋପଯୋଗୀ ନିଜର ଇଚ୍ଛାମୁତାବକ ସୁବିଧା ନ ଦେଖି ବି ସଂସାରୀ ଲୋକର ବୈରାଗ୍ୟ ଶିତଳ ହୋଇଯାଏ।

କହିବାର ଅଭିପ୍ରାୟ ହେଉଛି, ଯାହାର ଯେଉଁ ବସ୍ତୁର ଆବଶ୍ୟକତା ଥାଏ ସେ ସେହି ବସ୍ତୁ ସମ୍ବନ୍ଧରେ ଅଧିକ ଜାଣିଥିବା ଲୋକ ସହିତ ସମ୍ବନ୍ଧ ରଖିବା ଉଚିତ; ସଂଗ କରିବା ଉଚିତ। ଯିଏ କାମ ସୁଖ ନିମନ୍ତେ ଆଗ୍ରହୀ ସେ କାମୀ ଓ କାମିନୀଙ୍କ ସଙ୍ଗ ଅଧିକ କରୁଥିବା ଉଚିତ। ଯିଏ ଭଗବତ ଭକ୍ତି ପାଇବା ନିମନ୍ତେ ଇଚ୍ଛା କରୁଥାଏ, ସେ ଭଗବତ୍ ଭକ୍ତ ସନ୍ଥ ମାହାତ୍ମ୍ୟଙ୍କ ସଙ୍ଗ ଅଧିକ କରିବା ଉଚିତ। ସତ୍‌ସଙ୍ଗକୁ ଛାଡ଼ି ପରମାର୍ଥ ପାଇବାର ଅନ୍ୟ କୌଣସି ଉତ୍ତମ ସାଧନ ନାହିଁ। ସତ୍‌ସଙ୍ଗ ଦ୍ୱାରା ହିଁ ପରମାର୍ଥ ବସ୍ତୁ ଯଥାର୍ଥ ରୂପରେ ସୁଗମତାର ସହିତ ମିଳିପାରେ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ହେ ମୁନିଗଣ! ଉଦ୍ଧବ ଯେତେବେଳେ ସତ୍‌ସଙ୍ଗ ବିଷୟରେ ବିଶେଷ ଆଗ୍ରହ ପ୍ରକାଶ କଲେ ତାହା ବୁଝାଇବାକୁ ଯାଇ ଭଗବାନ୍ ଶ୍ୟାମସୁନ୍ଦର କହିଲେ, "ହେ ଉଦ୍ଧବ! ଏହି ସଂସାର ସାଗରରୁ ପାରି ହେବା ପାଇଁ ଯେଉଁମାନଙ୍କର ପ୍ରବଳ ଇଚ୍ଛା ହେଉଥିବ ସେମାନେ ସବୁସମୟରେ ସତ୍‌ପୁରୁଷଙ୍କ ସଙ୍ଗରେ ରହିଥିବା ବିଧେୟ। ଭୁଲ୍‌ରେ ବି କଦାପି କାମିନୀଙ୍କର ସଂଗ କରିବା ଅନୁଚିତ। ସଜ୍ଜନଙ୍କ ସହିତ ବିଶେଷ ଅନୁରାଗ ବୃଦ୍ଧି କରିବା ଉଚିତ। ଯାହାର ଯାହାଠାରେ ଅନୁରାଗ ହୋଇଯାଏ, ସେ ତାକୁ ନିଜର ସବୁଠାରୁ ଅତି ପ୍ରିୟ ବସ୍ତୁ ଦେଇଦିଏ। ସନ୍ଥଙ୍କର ଅତି ପ୍ରିୟ ବସ୍ତୁ ଆଉ କ'ଣ ଥାଇପାରେ– ଜ୍ଞାନ ବୈରାଗ୍ୟ ଆଉ ଭକ୍ତି। ଜ୍ଞାନ ଆଉ ବୈରାଗ୍ୟ ହେଉଛନ୍ତି ଭକ୍ତିଙ୍କ ଦୁଇ ପୁଅ। ଭକ୍ତି ହୋଇଯିବା କ୍ଷଣି ଏହି ଦୁଇବାଳକ ଆପଣା ଛାଏଁ ପଛେ ପଛେ ପଳାଇ ଆସିଥାନ୍ତି। ଏଥିପାଇଁ ଭକ୍ତଗଣ ନିଜର ଆଶ୍ରିତମାନଙ୍କୁ ଭଗବାନଙ୍କର ଭକ୍ତିର ଉପଦେଶ ଦେଇଥାନ୍ତି। ଏହା ସହିତ ଏହି ଅସାର ସଂସାରରୁ ବୈରାଗ୍ୟ କରାଇ ଥାଆନ୍ତି। ସଂସାରର ସମସ୍ତ ବସ୍ତୁ ନଶ୍ୱର, କ୍ଷଣଭଙ୍ଗୁର ଅଶାଶ୍ୱତ, ତେଣୁ ଏ ସବୁକୁ ମୋହ କରିବା ଅନୁଚିତ। ଏହିଭଳି ସଦୁପଦେଶ ଦେଇ ଭକ୍ତମାନେ ଆଶ୍ରିତମାନଙ୍କର

ମନର ବିଷୟାସକ୍ତିର ମୂଳ ଉତ୍ପାଟନ କରିଦିଅନ୍ତି। ସନ୍ଥଙ୍କ ପାଖକୁ ଯାଇଥିବା କୌଣସି ବ୍ୟକ୍ତିର କେବେହେଲେ ଅକଲ୍ୟାଣ ହୁଏନାହିଁ।''

ଉଦ୍ଧବ ପଚାରିଲେ, **''ଭଗବନ୍! ସନ୍ଥଙ୍କୁ ଚିହ୍ନିବା କିପରି ? ସେମାନଙ୍କ ପାଖରେ କି ପ୍ରକାର ବିଶେଷତା ଥାଏ ?''**

ଭଗବାନ୍ କହିଲେ, ''ସନ୍ଥ ଲୁଚିରହି ପାରନ୍ତି ନାହିଁ। କସ୍ତୁରୀ ଯେପରି ଲୁଚି ପାରେ ନାହିଁ, ସନ୍ଥଙ୍କ ଗୁଣ ସେହିଭଳି ଲୁଚି ପାରେ ନାହିଁ। ସନ୍ଥଙ୍କ ଗୁଣ ଅଲୌକିକ୍ ହୋଇଥାଏ। ବିନା କୁହାରେ ତାହା ପ୍ରକଟ ହୋଇଯାଏ। ଏପରି ତ ସନ୍ଥଙ୍କ ପାଖରେ ଗୁଣ ହିଁ ଗୁଣ ପରିପୂର୍ଣ୍ଣ ହୋଇ ରହିଥାଏ, ସେମାନେ ତ ଗୁଣର ଭଣ୍ଡାର, ଖଣି ହୋଇଥାନ୍ତି, ତେବେ ଶୁଦ୍ଧା ସେମାନଙ୍କଠାରେ କେତେକ ବିଶେଷ ଗୁଣ ଥାଏ।

(୧)ନିଷ୍କାମ :— ସନ୍ଥଙ୍କ ମନରେ କୌଣସି ପ୍ରକାର ସାଂସାରିକ କାମନା ନ ଥାଏ। ସେମାନେ ଯାହା ବି କରନ୍ତି କାମନାହୀନ ଭାବରେ ପ୍ରଭୁ ପ୍ରୀତ୍ୟର୍ଥେ ହିଁ କରିଥାଆନ୍ତି। କାହାକୁ ଦେଖିଲେ ନିସ୍ୱାର୍ଥ ପରମାର୍ଥ ଭାବନାର ସହିତ ମିଶନ୍ତି। ଯିଏ ସକଳ କାମନା ପରିତ୍ୟାଗ କରିଥାଏ ତା' ପାଖରେ ପୁଣି କାମନା ଆସିବ କୁଆଡ଼ୁ! ଯେଉଁ ସନ୍ଥମାନେ କାମନାର ଉଦ୍‌ଗମ ସ୍ଥାନ କାମପୂରକ ଶ୍ରୀହରିଙ୍କୁ ପାଇ ଯାଇଛନ୍ତି ସେମାନେ ଏହି ସଂସାରୀ କ୍ଷଣିକ ନାଶବାନ୍ ଶବ୍ଦ,ରୂପ, ରସ, ଗନ୍ଧ ଆଉ ସ୍ପର୍ଶ ସମ୍ବନ୍ଧୀୟ ସୁଖର କାମନା କିପରି କରିପାରନ୍ତେ।

(୨)ମଚ୍ଚିତ୍ତ ମଦ୍‌ଗତ ପ୍ରାଣ :— ସନ୍ଥଙ୍କ ଚିତ୍ତ ସବୁବେଳେ ମୋଠାରେ ଲାଗିରହିଥାଏ। ସେମାନେ ସାଧାରଣ ଲୋକଙ୍କ ଭଳି ଆଚାର, ବ୍ୟବହାର କରୁଥାନ୍ତି, ଇନ୍ଦ୍ରିୟଙ୍କ ସାହାଯ୍ୟରେ ଅନ୍ୟ ସବୁ କାମ କରୁଥାନ୍ତି, ମାତ୍ର ସେମାନଙ୍କ ଚିତ୍ତ ସବୁବେଳେ ମୋ ଠାରେ ଲାଗିରହିଥାଏ ଓ ପ୍ରତ୍ୟେକ ଶ୍ୱାସ ମୋ ନାମ ହିଁ ଉଚ୍ଚାରଣ କରୁଥାଏ। ସେମାନଙ୍କର ସକଳ କର୍ମ ମୋ ନିମିତ୍ତ ହୋଇଥାଏ।

(୩)ପ୍ରଶାନ୍ତ :— ସନ୍ଥଜନ ସବୁସମୟରେ ଅତି ଶାନ୍ତ ରହିଥାନ୍ତି। ସେମାନଙ୍କ ମୁଖ ମଣ୍ଡଳରୁ ସର୍ବଦା ଶାନ୍ତି-ମକରନ୍ଦ ନିର୍ଗତ ହେଉଥାଏ। ସେମାନେ ଅତ୍ୟନ୍ତ ଉତ୍ତେଜନାପୂର୍ଣ୍ଣ ଘଟଣାରେ ଅଶାନ୍ତ ହୁଅନ୍ତି ନାହିଁ। ତରଙ୍ଗ ଶୂନ୍ୟ ସମୁଦ୍ର ଭଳି ଶାନ୍ତ ଓ ଗମ୍ଭୀର ରହିଥାନ୍ତି।

(୪)ସମଦର୍ଶୀ :— ଏହା ମୋ ଘରର, ଏହା ବାହାରର; ଇଏ ମୋ ଜାତିର, ସେ ଅନ୍ୟ ତଳ ଜାତିର ତଥା ପରିବାରର ଏପରି ଭେଦ ଭାବନା ସନ୍ଥଙ୍କର ହୃଦୟରେ ଆଦୌ ନଥାଏ। ସେମାନଙ୍କ ଦୃଷ୍ଟିରେ ପ୍ରତ୍ୟେକ ପ୍ରାଣୀ ଆତ୍ମ-ସ୍ୱରୂପ ହୋଇଥା'ନ୍ତି। ଅବଶ୍ୟ ଯୋନି ଅନୁରୂପ ବ୍ୟବହାର ତ କରିବାକୁ ହୋଇଥାଏ, ପୁଣି କେହି ରୋଗୀ, ଅନ୍ୟ କେହି ସୁସ୍ଥ, ଏମାନଙ୍କର ଖାଦ୍ୟପେୟର ତ ଭେଦଭାବ କରିବାକୁ ଇ ହୋଇଥାଏ। ବିଭିନ୍ନ ପ୍ରକାର ବୃତ୍ତିର ଲୋକ, ତଥା ମାନସିକ କର୍ମ ଅଧିକ କରୁଥିବା, ଶାରୀରିକ ଶ୍ରମ ଅଧିକ କରୁଥିବା— ଏମାନଙ୍କ ଭୋଜନରେ ବିଷମତା ଅବଶ୍ୟ କରିବାକୁ ପଡ଼ିଥାଏ। କେହି ଯଜମାନ ହୋଇଥାନ୍ତି, କେହି ପୁରୋହିତ, କେହି ଅବା ପରିଚାରକ ହୋଇଥାନ୍ତି, ଏମାନଙ୍କ ପାଇଁ ସ୍ଥାନର ଭେଦଭାବ କରିବାକୁ ପଡ଼େ। ଏ ସବୁ ବାହ୍ୟ ଭେଦ ସତ୍ତ୍ୱେ, ସମସ୍ତଙ୍କଠାରେ ଏକ ଆତ୍ମା ବ୍ୟାପ୍ତ ବୋଲି ମନରେ ଧାରଣ କରି ସମସ୍ତଙ୍କ ସହିତ ସମଭାବ ରଖିଥାନ୍ତି ସନ୍ଥଜନ। ଯାହାଙ୍କ ଦୃଷ୍ଟିରେ ସବୁ ପ୍ରାଣୀ ସମାନ ହୋଇଥାନ୍ତି ସେ ହିଁ କେବଳ ସନ୍ଥ ହୋଇଥାନ୍ତି।

(୫)ମମତାଶୂନ୍ୟ :— ସଂସାରୀ ଲୋକମାନେ ମମତାରେ ମଗ୍ନ ହୋଇଯାଇଥା'ନ୍ତି। ଏହା ମୋ ଘର, ଏହା ମୋ ଧନ, ସମ୍ପତ୍ତି, ଇଏ ମୋ ପୁଅ-ଝିଅ, କୁଟୁମ୍ବ ପରିବାରର ଲୋକ, ଏମାନଙ୍କର ଦାୟିତ୍ୱ ମୋ ଉପରେ ନ୍ୟସ୍ତ— ଏ ସମସ୍ତରେ ମମତା ହୋଇଯାଇଥିବାରୁ ସଂସାରୀ ଲୋକମାନେ ଦୁଃଖୀ ଓ ଚିନ୍ତିତ ରହିଥାନ୍ତି। ସନ୍ଥ ଜାଣିଥାନ୍ତି ଯେ ସେମାନଙ୍କର ଏକମାତ୍ର ହରି ଅଛନ୍ତି। ସେମାନେ ମୋତେ ହିଁ ସର୍ବସ୍ୱ ମନେ କରନ୍ତି। ମୋ ଠାରେ ସଂସାରର ସମସ୍ତ ମମତା ଠୁଳକରି ଦେଇଥାନ୍ତି। ଯାହା କରନ୍ତି, ମୋ ସେବା ବୋଲି ଭାବନା କରି କରିଥାନ୍ତି। ସେମାନେ କାହାକୁ ପର ବୋଲି ଭାବନ୍ତି ନାହିଁ କି କାହାକୁ ଆପଣାର। ସମସ୍ତଙ୍କୁ ମୋ ରୂପ ବୋଲି ଭାବନ୍ତି। ଏଥିପାଇଁ ମୋତେ ଛାଡ଼ି ସେମାନଙ୍କର ମମତା ଅନ୍ୟ କୌଣସିରେ ହୁଏ ନାହିଁ।

(୬)ଅହଂକାର ରହିତ :— ମୁଁ ଜ୍ୟେଷ୍ଠ, ମୁଁ ଶ୍ରେଷ୍ଠ, ଏପରି ଅହଙ୍କାର ସନ୍ଥଙ୍କର ଆଦୌ ନଥାଏ। ମୋତେ ସମସ୍ତେ ପୂଜା କରନ୍ତୁ, ମୋର ପ୍ରତିଷ୍ଠା ବଢ଼ୁ, ମୋତେ ଭଲ ନ ପାଉଥିବା ଲୋକ ପରମ ଦ୍ୱେଷୀ, ଶତ୍ରୁ— ଏପରି କଥା ସନ୍ଥ ଆଦୌ ଭାବିପାରେ ନାହିଁ। ଅହଙ୍କାର ଯୋଗୁ ହିଁ ଯେତେ ସବୁ ଯୁଦ୍ଧ, କଳି ଆଦି ହୋଇଥାଏ।

(୭)ନିର୍ଦ୍ୱନ୍ଦ :— ସୁଖ-ଦୁଃଖ, ପାପ-ପୁଣ୍ୟ, ଭଲ-ଖରାପ, ଉଚ୍ଚ-ନୀଚ, ଛୋଟ-ବଡ଼, ହାନି-ଲାଭ, ଜୀବନ-ମରଣ, ଯଶ-ଅପଯଶ ତଥା ସଂସାରର ଆଉ ଯେତେ ଦ୍ୱନ୍ଦ ଅଛି ସନ୍ଥଙ୍କ ପାଖରେ ଏ ସବୁର କିଛି ନ ଥାଏ। କାରଣ ଭଗବାନଙ୍କ ପାଖରେ ଦ୍ୱନ୍ଦ୍ୱ ତ ଆଦୌ ନଥାଏ। ସେପରି ସ୍ଥଳରେ ଭକ୍ତଙ୍କ ପାଖରେ କୁଆଡୁ ଆସିବ। ସେମାନେ ଦ୍ୱନ୍ଦ୍ୱାତୀତ ହୋଇ ଆନନ୍ଦ ପୂର୍ବକ ମୋର ଭଜନରେ ହିଁ ଲାଗିରହିଥାନ୍ତି।

(୮)ଅକିଞ୍ଚନ :— କାଳେ କେତେବେଳେ ଆବଶ୍ୟକ ମନେ କରୁଥିବା ଭୋଗ୍ୟ ବସ୍ତୁ ମିଳି ନ ପାରେ। ଏପରି ଆଶଙ୍କା କରି ସଂସାରୀ ଲୋକମାନେ ଭୋଗ୍ୟ ବସ୍ତୁ ସଂଗ୍ରହ କରିଥାଆନ୍ତି। ଅନେକ ଦ୍ରବ୍ୟ ଘରେ ସାଇତି ଥାଆନ୍ତି। କିନ୍ତୁ ଭଗବଦ୍ ଭକ୍ତମାନେ ଜାଣିଥାନ୍ତି ଯେ ଯୋଗ୍ୟ କ୍ଷେମର ଚାଳକ ହେଉଛନ୍ତି ଶ୍ରୀହରି, ସେ ଯେତେବେଳେ ଯେଉଁ ବସ୍ତୁକୁ ଆବଶ୍ୟକ ଓ ଉଚିତ ମନେ କରିବେ ତାହା ସେ ନିଶ୍ଚୟ ଆମକୁ ଯୋଗାଇ ଦେବେ। ଏପରି ସ୍ଥଳରେ ସଂଗ୍ରହ କରି ରଖିବା ପୁଣି କ'ଣ? ସନ୍ଥମାନେ ଏପରି ଭାବି ସଂଗ୍ରହ କରନ୍ତି ନାହିଁ, ହଁ, କିନ୍ତୁ କଥା କୀର୍ତ୍ତନ ଆଉ ମୋ ପୂଜା ନିମିତ୍ତ ଆବଶ୍ୟକ ଦ୍ରବ୍ୟର ସଂଗ୍ରହକୁ ପରିଗ୍ରହ କୁହାଯାଏ ନାହିଁ। କାରଣ ମୋର ସମ୍ବନ୍ଧ ହୋଇଯିବା ପରେ ସମସ୍ତ ବସ୍ତୁ ତ ନିର୍ଗୁଣ ହୋଇଯାଏ। ନିଜର କିମ୍ବା ନିଜ ଆଶ୍ରିତମାନଙ୍କ ନିମିତ୍ତ ସେମାନେ କିଛି ବି ରଖନ୍ତି ନାହିଁ।

ଏହିଭଳି ଅକିଞ୍ଚନ ନିର୍ଦ୍ୱନ୍ଦ ସନ୍ଥ ଦର୍ଶନ ହୋଇଗଲେ, ସତ୍‌ସଙ୍ଗ ହୋଇଗଲେ ସଂସାର ବନ୍ଧନ ତତ୍‌କାଳ ଛିଣ୍ଡିଯାଏ। ଏଣୁ ଏପରି ସନ୍ଥଙ୍କର ସତ୍‌ସଙ୍ଗରେ ରହିବା ଉଚିତ।''

ଉଦ୍ଧବ ପଚାରିଲେ, ''ପ୍ରଭୁ! ଏହି ଗୁଣ ତ ଭିତରର କଥା। ଆପଣ କିଛି ବାହ୍ୟ ଚିହ୍ନ କୁହନ୍ତୁ ଯାହା ଦେଖି ଆମେ ସନ୍ଥଙ୍କୁ ଚିହ୍ନି ପାରିବା।''

ଭଗବାନ୍ କହିଲେ, ''ହେ ଉଦ୍ଧବ! ସଂସାରୀ ଲୋକମାନେ ନ ଖାଇ ଯେପରି ରହିପାରନ୍ତି ନାହିଁ ସନ୍ଥମାନେ ସେହିଭଳି ମୋ କଥା ନ ଶୁଣି ରହିପାରନ୍ତି ନାହିଁ। ମୋ କଥା ଶୁଣିବାରେ ସେମାନଙ୍କର ବ୍ୟସନ ହୋଇଯାଇଥାଏ। ଯେପରି ମଦ୍ୟପ ଥରେ ଦି'ଥର ଭୋଜନ ନ କରି

ରହିପାରେ, ମାତ୍ର ମଦ୍ୟ ବିନା ବ୍ୟାକୁଳ ହୋଇଯାଏ, ଠିକ୍ ସେହିଭଳି ମୋ ଭକ୍ତଙ୍କୁ ପ୍ରସାଦ ନ ମିଳିଲେ ସୁଦ୍ଧା ସେମାନଙ୍କର ଚିନ୍ତା ନ ଥାଏ, କିନ୍ତୁ କଥା କୀର୍ତ୍ତନ ନିଶ୍ଚୟ ହେଉଥିବା ଦରକାର। ଏଣୁ ମୋ ଭକ୍ତଙ୍କ ଆସ୍ଥାନରେ ନିରବଚ୍ଛିନ୍ନ ବାରମାସଯାକ ମୋ କଥା ଚାଲିଥାଏ। ସେହି ସୌଭାଗ୍ୟବତୀ ଭକ୍ତମାନେ ଏକାଠି ବସି ମୋ କଥା ଆଲୋଚନା କରିବାରେ ଲାଗନ୍ତି, ଭାଗବତ କଥାକୁ ବିଭିନ୍ନ ଦୃଷ୍ଟିକୋଣରୁ ପର୍ଯ୍ୟାଲୋଚନା କରୁଥାନ୍ତି। ସଂସାରୀ ଲୋକମାନେ ଏଣୁ ତେଣୁ କଥାବାର୍ତ୍ତା ହୁଅନ୍ତି, ମାତ୍ର ମୋର ଭକ୍ତମାନେ ମୋର ସୁମଧୁର ନାମ କୀର୍ତ୍ତନ ତଥା ମୋର ମନହାରିଣୀ କଥା ହେଉଥାନ୍ତି। ଏହି କଥା ଆଉ କୀର୍ତ୍ତନ ଆଦି କାର୍ଯ୍ୟରେ ସଂସାରର ସକଳ ଲୋକଙ୍କର କଲ୍ୟାଣ ହୁଏ। କଥା ଶୁଣାନ୍ତି, କୀର୍ତ୍ତନ ଶୁଣାନ୍ତି, ଫଳରେ ଶୁଣିବା ଲୋକର ପାପ ହରଣ ହୋଇଯାଏ। ଯେଉଁମାନେ କଥା କୀର୍ତ୍ତନକୁ ଶୁଣି ପ୍ରସନ୍ନ ହୁଅନ୍ତି, ଏକାନ୍ତରେ ତାହାକୁ ମନନ କରନ୍ତି, ଅନ୍ୟକୁ ଶୁଣାନ୍ତି, ଅନୁମୋଦନ ତଥା ସମର୍ଥନ କରନ୍ତି, ଅନ୍ୟମାନଙ୍କୁ ସେପରି କରିବା ପାଇଁ ପ୍ରୋତ୍ସାହିତ କରନ୍ତି ସେମାନଙ୍କୁ ମୋର ଅନନ୍ୟ ଭକ୍ତି ସୁଲଭ ହୁଏ।''

ଉଦ୍ଧବ ପଚାରିଲେ, ''ଭଗବନ୍! ଆପଣଙ୍କର ଭକ୍ତି ବ୍ୟତୀତ ସେମାନେ ଆଉ କ'ଣ କରିପାରନ୍ତି ?''

ଭଗବାନ୍ କହିଲେ, ''ଅରେ ଭାଇ! ମୋ ଭକ୍ତି ପାଇଯିବା ପରେ ଆଉ ଅବଶେଷ କିଛି ରହିଥାଏ କି? ଏକମାତ୍ର ମୋର ଭକ୍ତି ତ ପ୍ରାଣୀମାନଙ୍କର ପରମ ପ୍ରାପ୍ୟ ସ୍ଥାନ, ଏହା ହିଁ ତ ଚରମ ଲକ୍ଷ୍ୟ। ମୋର ଅନନ୍ୟ ଗୁଣ ସମ୍ପନ୍ନ, ଆନନ୍ଦାନୁଭବ ସ୍ୱରୂପ, ସଚ୍ଚିଦାନନ୍ଦ ଘନ, କରୁଣାକରୁଣାଳୟ, ପରଂବ୍ରହ୍ମ ପରମାତ୍ମାଙ୍କଠାରେ ଅନନ୍ୟ ଭକ୍ତି ପାଇବା ଅର୍ଥ ତ ସମସ୍ତ ଇଚ୍ଛା ଏକାସହିତ ପୂରଣ ହୋଇଯିବା। ଯେପରି କୌଣସି ମଣିଷ ହିଂସ୍ର ଜନ୍ତୁ ପରିପୂର୍ଣ୍ଣ ଘୋର ଅରଣ୍ୟରେ ମାଘ ମାସର ରାତିରେ ଉଲଗ୍ନ ଅବସ୍ଥାରେ ଏକାକୀ ପଡ଼ିଥାଏ– ସେତେବେଳେ ପ୍ରଥମେ ତ ତାକୁ ପ୍ରବଳ ଶୀତ ଲାଗେ, ତା' ଉପରେ ପ୍ରତ୍ୟେକ ମୁହୂର୍ତ୍ତରେ ହିଂସ୍ର ଜନ୍ତୁଙ୍କର ଆକ୍ରମଣ ଭୟ ଥାଏ, ତୃତୀୟରେ ଅନ୍ଧକାର ଯୋଗୁଁ କିଛି କରି ନ ପାରି ଅସହାୟ ପରି ହୋଇଯାଇଥାଏ,– ଏବେ ଶୀତରୁ ରକ୍ଷା ପାଇବା ପାଇଁ ତାର କିଛି ଦରକାର, ଭୟ ଦୂର କରିବା ପାଇଁ କିଛି ଦରକାର– କିନ୍ତୁ ସେ ସବୁ କିଛି କରି ନ ପାରି ଅନ୍ଧକାର ଦୂର କରିବା ପାଇଁ ଶୁଖିଲା କାଠପତ୍ର ଯୋଗାଡ଼ କରି ଅଗ୍ନି ଲଗାଇ ଦିଏ– ତେବେ ଏକାସଂଗରେ ଅନ୍ଧକାର ଦୂର ହୋଇଯାଏ, ଶୀତରୁ ରକ୍ଷା ମିଳେ ଓ ହିଂସ୍ର ଜନ୍ତୁଙ୍କ ଭୟ ବି ରହେ ନାହିଁ– ଠିକ୍ ସେହିଭଳି ଭଗବାନଙ୍କର ଭକ୍ତି ପାଇଯିବା ପରେ ଆଉ କିଛି ପ୍ରାପ୍ୟ ବଳକା ରହିଯାଏ ନାହିଁ। ସାଧୁ ପୁରୁଷଙ୍କର ସତ୍‌ସଙ୍ଗ କରିବା ଦ୍ୱାରା ଜନ୍ମ ଜନ୍ମାନ୍ତରର ପାପ, ସଂସାରର ଭୟ ଆଉ ଅଜ୍ଞାନ ଏହି ତିନୋଟିଯାକ ନିବୃତ୍ତ ହୋଇଯାଏ। ଏଥିପାଇଁ ସୁଖକାମୀ ପୁରୁଷମାନେ ସବୁବେଳେ ସାଧୁଙ୍କ ସଙ୍ଗରେ ରହିବା ଉଚିତ। ଏହି ସଂସାର ସାଗରରେ ଉବୁଟୁବୁ ହେଉଥିବା, ହନ୍ତସନ୍ତ ହେଉଥିବା, ଅବଲମ୍ବ ଅନ୍ୱେଷଣ କରୁଥିବା ଲୋକ ଏକମାତ୍ର ବ୍ରହ୍ମବେତ୍ତା ତଥା ଶାନ୍ତ ଚିତ୍ତ ସମଦର୍ଶୀ ସାଧୁ ହିଁ ଅବଲମ୍ବ। ଭବ ସାଗରରେ ଉବୁଟୁବୁ ହେଉଥିବା ଲୋକମାନଙ୍କ ପାଇଁ ଭଗବଦ୍ ଭକ୍ତ ମହାପୁରୁଷ ହିଁ ସୁଦୃଢ଼ ପୋତ ସଦୃଶ। ଯେପରି ବାୟୁ, ଜଳ ଓ ଅନ୍ନ ପ୍ରାଣୀମାନଙ୍କର ଆଧାର, ମାଛଙ୍କ ପାଇଁ ଜଳ ହିଁ ଜୀବନ, ସେହିଭଳି ଦେହଧାରୀଙ୍କ ପାଇଁ ମୁଁ ହେଉଛି ଜୀବନ। ଅନ୍ଧ ଯେପରି ଲଉଡ଼ି ଦରକାର କରେ, ସଦ୍ୟଜାତ ଶିଶୁ ମାତାର ସ୍ତନ ଆବଶ୍ୟକ କରେ, ସେହିଭଳି ଦୀନ ଦୁଃଖୀଙ୍କ ଏକମାତ୍ର ଆଶ୍ରୟ ହେଉଛି ମୁଁ। ବିଦ୍ୟା ଯେପରି

ବିଦ୍ୱାନଙ୍କର ଧନ, ବ୍ୟବସାୟୀଙ୍କ ନିମନ୍ତେ ଦ୍ରବ୍ୟ ଧନ ହୋଇଥାଏ, ପରଲୋକ ନିମନ୍ତେ ସେହିଭଳି ଧର୍ମ ହେଉଛି ଧନ। ଏହିଭଳି ସଂସାରରେ ଭୟଭୀତ ପୁରୁଷଙ୍କ ପାଇଁ ସନ୍ଥଜନ ହିଁ ଏକମାତ୍ର ଧନ। ସେମାନେ ହିଁ ପରମ ଆଶ୍ରୟ।''

ଉଦ୍ଧବ କହିଲେ, ''ଭଗବନ୍! ସନ୍ତାନଙ୍କ ପିତାମାତା ତଥା ପତ୍ନୀଙ୍କୁ ପତି– ଏମାନେ ବି ତ ସୁଖ ଦିଅନ୍ତି। ଏମାନଙ୍କଠାରୁ ବଳି ସନ୍ଥଙ୍କ ମହିମା ଏତେ ଅଧିକ ବୋଲି କାହିଁକି କୁହାଯାଉଛି ?''

ଭଗବାନ୍ କହିଲେ, ''ଉଦ୍ଧବ! ତୁମେ ଭଲକରି ଜାଣ ଯେ ପିତାମାତା, ପତି ଏମାନେ ସାଂସାରିକ ସୁବିଧା ପ୍ରତି ବିଶେଷ ଧ୍ୟାନ ଦେଇଥାଆନ୍ତି। ହେଲେ, ସନ୍ଥଜନ ପରଲୋକ ବିଷୟରେ ବିଶେଷ ଧ୍ୟାନ ଦିଅନ୍ତି। ସୂର୍ଯ୍ୟ ଉଦୟ ହୋଇ ବାହ୍ୟଚକ୍ଷୁକୁ ପ୍ରକାଶିତ କରନ୍ତି ; କିନ୍ତୁ ସନ୍ଥଜନ ଭିତରର ଚକ୍ଷୁକୁ ଖୋଲି ଦେଇଥାଆନ୍ତି। ସେମାନେ ତ ମୋର ସାକ୍ଷାତ୍କାର କରାଇ ଦିଅନ୍ତି। ଏଥିପାଇଁ ସନ୍ଥଜନ ହେଉଛନ୍ତି ମାତା-ପିତା, ଆତ୍ମୀୟ-ସ୍ୱଜନ, ସୁହୃଦ-ମିତ୍ର, ସେବକ ଓ ସ୍ୱାମୀ, ଇଷ୍ଟ ତଥା ଦେବତା, ଆତ୍ମା ତଥା ପରମାତ୍ମା– ଆଉ କେତେ କହିବି ଉଦ୍ଧବ! ହେ ଉଦ୍ଧବ! ସନ୍ଥ ଆଉ ମୋ ଭିତରେ ଏତେ ଟିକିଏ ବି ପ୍ରଭେଦ ନାହିଁ। ସନ୍ଥ ହେଉଛନ୍ତି ମୋର ସ୍ୱରୂପ। ସେମାନଙ୍କର ସଙ୍ଗ ସବୁସମୟରେ କରୁଥିବା ଉଚିତ।''

ଭଗବାନ୍ କହି ଚାଲିଛନ୍ତି, ''ହେ ଉଦ୍ଧବ! ପ୍ରତିଷ୍ଠାନପୁରର ଚକ୍ରବର୍ତ୍ତୀ ମହାରାଜ ପୁରୁରେବା ଏହିଭଳି ସିଦ୍ଧାନ୍ତ କରି ଉର୍ବଶୀ-ଲୋକରୁ ପୃଥିବୀକୁ ପ୍ରତ୍ୟାବର୍ତ୍ତନ କରିଆସିଲେ। ଏହା ପରଠାରୁ ସେ ସନ୍ଥସଙ୍ଗ କରିବାରେ ଲାଗିଲେ ଓ ସ୍ୱଚ୍ଛନ୍ଦରେ ତୀର୍ଥସ୍ଥାନମାନଙ୍କରେ ବିଚରଣ କରିବାରେ ଲାଗିଲେ। ସେ ଅନାସକ୍ତ ଓ ଆତ୍ମାରାମ ହୋଇ ପୃଥିବୀରେ ଭ୍ରମଣ କରି କରି ଜୀବନମୁକ୍ତର ଆନନ୍ଦ ଉପଭୋଗ କରିବାରେ ଲାଗିଲେ। ଏହି ଭଳି ହେ ଉଦ୍ଧବ! ତୁମେ ବି ସବୁଥିରୁ ମୋହ ମମତା ଛାଡ଼ି ପୃଥିବୀ-ବିଚରଣ କରି କରି ସମୟ ଅତିବାହିତ କର। ତୁମ ପାଇଁ ମୋ କୃପାରେ ଆଉ କିଛି କର୍ତ୍ତବ୍ୟ କରିବାକୁ ନାହିଁ। ତୁମେ ଏକମାତ୍ର ମୋ-ପୂଜନକୁ ନିଜର କର୍ତ୍ତବ୍ୟ ବୋଲି ଜାଣ। କ୍ରିୟାଯୋଗ ଦ୍ୱାରା ମୋତେ ହିଁ ଭଜନ କରିବାରେ ଲାଗି ରୁହ।''

ଉଦ୍ଧବ କହିଲେ, **''ଭଗବନ୍! କ୍ରିୟାଯୋଗ କାହାକୁ କୁହନ୍ତି ? ଭକ୍ତଜନ ଆପଣଙ୍କର କେଉଁ ମୂର୍ତ୍ତିକୁ ଧ୍ୟାନ କରନ୍ତି ? କାହାର ଉପାସନା କରନ୍ତି ? କିପରି ଉପାସନା କରନ୍ତି ?** କୃପାକରି ସେହି କ୍ରିୟାଯୋଗ ମୋତେ ଉତ୍ତମରୂପେ ବୁଝାଇ ଦିଅନ୍ତୁ।''

ଭଗବାନ୍ କହିଲେ, ''ଉଦ୍ଧବ! ଯେତେ ସବୁ ମୁନି ଋଷି ଅଛନ୍ତି ସେମାନେ ସମସ୍ତେ ମୋ କ୍ରିୟାଯୋଗ ବର୍ଣ୍ଣନା କରିଛନ୍ତି।''

ଉଦ୍ଧବ କହିଲେ, ''ପ୍ରଭୁ! ଏଇଥିପାଇଁ ତ ମୋର ଅତ୍ୟଧିକ ଜିଜ୍ଞାସା ହେଉଛି। ଦେବର୍ଷି ନାରଦ ପାଞ୍ଚରାତ୍ର ଆଦିରେ ଏହାକୁ ବିସ୍ତାରିତ କରିଛନ୍ତି, ଅଙ୍ଗିରାନନ୍ଦନ ଭଗବାନ୍ ବୃହସ୍ପତି, ବେଦମାନଙ୍କର ବ୍ୟାସକାରୀ ଭଗବାନ୍ ବେଦବ୍ୟାସ ତଥା ଅନ୍ୟାନ୍ୟ ଋଷି ମହର୍ଷିଗଣ ମନୁଷ୍ୟଙ୍କର ପରମ କଲ୍ୟାଣାର୍ଥେ ବାରମ୍ବାର ଏହି କ୍ରିୟାକୁ ପରମ ସାଧନ ବୋଲି କହିଛନ୍ତି। ଆପଣ ହେଉଛନ୍ତି ଏହି କ୍ରିୟା ଯୋଗର ଆଚାର୍ଯ୍ୟ। ଆପଣ ଆପଣଙ୍କ ପୁଅ ବ୍ରହ୍ମାଙ୍କୁ ଏହି ଯୋଗ କହିଥିଲେ। ବ୍ରହ୍ମା ତାଙ୍କର ଭୃଗୁ, ଶଙ୍କର ଆଦି ପୁତ୍ରଙ୍କୁ ଏହାର ଉପଦେଶ ଦେଇଥିଲେ। ଶଙ୍କର ପାର୍ବତୀଙ୍କୁ ଏହା ଶୁଣାଇଥିଲେ। ଭଗବନ୍! ଅନ୍ୟ ବୈଦିକ କର୍ମକାଣ୍ଡ ଆଦି ପାଇଁ

ନିୟମ ଥାଏ ଯେ ଅମୁକ ପଢ଼ିବା, ଅମୁକ ନ ପଢ଼ିବା ଉଚିତ, ଇତ୍ୟାଦି ଇତ୍ୟାଦି, ହେଲେ ଏହି କ୍ରିୟାଯୋଗ ତ ସବୁପ୍ରକାର ଆଶ୍ରମୀ ଅଧିକାରୀ। ସ୍ତ୍ରୀ ଓ ଶୁଦ୍ରମାନେ ବି ଏହି କ୍ରିୟାଯୋଗ ଆଚରଣ କରି ନିଜର କଲ୍ୟାଣ କରି ପାରନ୍ତି। ମୋ ମତରେ ଏହି କ୍ରିୟା ଯୋଗରେ ସମସ୍ତଙ୍କର ମଙ୍ଗଳ ହୋଇପାରେ। ହେ ନାଥ! ସେହି କର୍ମଯୋଗ ମୁଁ ଶୁଣିବାକୁ ବିଶେଷ ଆଗ୍ରହୀ। ହେ କମଳନୟନ! ଆପଣ ହିଁ ମୋତେ ଏହାର ଉପଦେଶ ଦିଅନ୍ତୁ। ହେ ଜଗଦୀଶ୍ୱର! ଆପଣ ମୋ ଅଭିଳାଷ ପୂରଣ କରନ୍ତୁ। ହେ ସ୍ୱାମିନ୍! ମୋ ବିନତୀ ସ୍ୱୀକାର କରିବା ହୁଅନ୍ତୁ।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ! ଉଦ୍ଧବ ଏହିଭଳି ପ୍ରଭୁଙ୍କୁ ପ୍ରାର୍ଥନା କରିବାରୁ ଭଗବାନ୍ କହିଲେ, ଠିକ୍ ଅଛି ଉଦ୍ଧବ! ମୁଁ ତୁମକୁ କ୍ରିୟାଯୋଗର ଉପଦେଶ ଦେଉଛି।' ଏବେ ଭଗବାନ୍ ଯେଉଁଭଳି କ୍ରିୟାଯୋଗର ଉପଦେଶ ଦେଇଥିଲେ ତାହା ମୁଁ ଆପଣମାନଙ୍କୁ କହୁଛି।''

## ଛପ୍ପୟ

ଶରଦ ହୁତାସନ ଲେତ ଶୀତ ତମ ସବ ନାସି ଜାବେ।
ତ୍ୟୋ ସଂତନି ସଂଗ ପାପ ତାପ ତମ ସବ ନସି ଜବେ॥
ସତ୍ ସଂଗତି ଫଲ ସମୁଝି ଏୀଲ ନୃପ ସୁଖୀ ଭୟୋ ଅତି।
କରି ଉଦ୍ଧବ-ସତ୍‌ସଙ୍ଗ ଲଗାଓ ମମ ଚରନନି ମତି॥
ଉଦ୍ଧବ ବୋଲେ ଦୟାନିଧି, କ୍ରିୟାଯୋଗ ମୋତେ କହେ।
କୈସେ ତୁମକୁଁ ପୂଜି ହମ, ନିତ ପଦ ପଦମନି ମହିଁ ରହେ॥



# କ୍ରିୟା ଯୋଗର କାରଣ

ନ ହ୍ୟନ୍ତୋଽନନ୍ତପାରସ୍ୟ କର୍ମକାଣ୍ଡସ୍ୟ ଚୋଦ୍ଧବ ।
ସଂକ୍ଷିପ୍ତଂ ବର୍ଣୟିଷ୍ୟାମି ଯଥାବଦନୁପୂର୍ବଶଃ ॥ ★

[ଶ୍ରୀଭା.୧୧ସ୍କ.୨୭ଅ. ୬ ଶ୍ଳୋକ]

**ଛପ୍ପୟ**

ହରି ବୋଲେ-ଯହ କ୍ରିୟା-ଯୋଗ ହୈ ବିସ୍ତୃତ ଭାରୀ ।
ଅତି ସମାସ ତେ କହୂଁ ସବନିକୋ ଜୋ ହିତକାରୀ ॥
ବୈଦିକ, ତାନ୍ତ୍ରିକ, ଉଭୟ ତୀନ ବିଧି ପୂଜା ମମ ପ୍ରିୟ ।
ପଂଚଭୂତ, ଦ୍ୱିଜ, ଅତିଥି, ମୂର୍ତିମହଁ ଅଥବା ନିଜ ହିୟ ॥
କରୈ ନିତ୍ୟକରମନି ନିବଟି, ପ୍ରତିମା ସୁଘର ବନାଇକେ ।
ପତ୍ର, ପୁଷ୍ପ, ଫଲ ନୀର ତେ, ମୋମେ ଚିତ ଲଗାଇକେ ॥

ପ୍ରତିଦିନ ନିୟମିତ ଭଗବାନଙ୍କ କଥା ଶୁଣିବା, କୀର୍ତ୍ତନ କରିବା, ସେବାପୂଜା କରିବା, ବୈଷ୍ଣବୋଚିତ ତିଳକ ଆଦି ଧାରଣ କରିବା, ପ୍ରତ୍ୟେକ ସମୟରେ ଆମାନୀ ରହିବା, ପ୍ରତ୍ୟେକଙ୍କୁ ମାନ ଦେବା, ସମସ୍ତଙ୍କଠାରେ ଭଗବାନଙ୍କୁ ଦର୍ଶନ କରିବା, ପ୍ରତ୍ୟେକ ଜୀବଙ୍କୁ ଦୟା କରିବା, ପ୍ରତ୍ୟେକ କାର୍ଯ୍ୟକୁ ଭଗବାନଙ୍କ ନିମିତ୍ତ କରିବା, ବିଷୟ ବାସନାରୁ ଦୂରେଇ ରହିବା, ପ୍ରତ୍ୟେକ କର୍ମକୁ ପ୍ରଭୁଙ୍କ ପ୍ରୀତ୍ୟର୍ଥେ କରିବା, ସବୁବେଳେ ସନ୍ତଙ୍କ ସେବା ନିମିତ୍ତ ତତ୍ପର ରହିବା, ପ୍ରଭୁଙ୍କ ପ୍ରସାଦ ପାଇ ସନ୍ତୁଷ୍ଟ ରହିବା– ଏ ସମସ୍ତ ହେଉଛି ଭଗବଦ୍ ଭକ୍ତଙ୍କ ଲକ୍ଷଣ । ବୈଷ୍ଣବ ଶାସ୍ତ୍ରମାନଙ୍କରେ ଏହି କଥାଗୁଡ଼ିକ ବାରମ୍ବାର କୁହାଯାଇଥାଏ । ଆଉ ଏ ସମସ୍ତ ହେଉଛି ପ୍ରଭୁ-ପୂଜା ପ୍ରଧାନ । ଏଣୁ ପ୍ରଭୁ-ପୂଜା ପଦ୍ଧତି ଉପରେ ଅନେକ ପ୍ରଶ୍ନ ହୋଇଛି, ଆଉ ଯେଉଁମାନେ ଏ ସଂକ୍ରାନ୍ତରେ ପ୍ରଶ୍ନ କରିଛନ୍ତି ସେହିମାନେ ନାନା ପ୍ରକାର ଉତ୍ତର ଏ ସବୁ ଉପରେ ବୟାନ କରିଛନ୍ତି । ଭଗବାନଙ୍କୁ ଅନେକ ପ୍ରକାର ଭାବରେ ପୂଜା କରାଯାଇ ହୁଏ । ଯାହାକୁ ଯେପରି ଅନୁକୂଳ ବୋଧ ହୁଏ, ଯିଏ ଯେପରି କରିବା ପାଇଁ ଅଧିକାରୀ ମନେକରେ ସେ ସେପରି ନିୟମରେ ପୂଜା କରୁଥିବା ଉଚିତ ।

ମହାପ୍ରାଜ୍ଞ ସୂତ କହୁଛନ୍ତି, ହେ ମୁନିବୃନ୍ଦ ! ଉଦ୍ଧବ ଯେତେବେଳେ କ୍ରିୟା ଯୋଗ ସମ୍ବନ୍ଧରେ ଭଗବାନଙ୍କୁ ପ୍ରଶ୍ନ କଲେ, ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ର କହିଲେ, ''ହେ ଉଦ୍ଧବ ! ଏହି କର୍ମକାଣ୍ଡର

---

★ ଶୁଣ ଉଦ୍ଧବ ଏକମନେ । ଯାହା ପୁଚ୍ଛିଲୁ ସନ୍ନିଧାନେ ॥
ଉଦ୍ଧବ କର୍ମ-ଯୋଗ କଥା । କେବା କଥନ ସାମରଥା ॥
ଅନନ୍ତ ମହିମା କର୍ମର । କେ କରି ପାରିବ ଗୋଚର ॥
କିଛି କହିବା ସଂକ୍ଷେପରେ । ଶୁଣ ଉଦ୍ଧବ ମନ ସ୍ଥିରେ ॥

[ଭାଗବତ : ଜଗନ୍ନାଥ ଦାସ : ୧୧ସ୍କନ୍ଧ ୨୮ ଅ]

ଅନ୍ତ ନାହିଁ। କର୍ମକାଣ୍ଡ ଏତେ ବିସ୍ତୃତ ଯେ, ବେଦ, ପୁରାଣ ଶାସ୍ତ୍ର ତଥା ସମସ୍ତ ସ୍ମୃତିରେ ଏହାର ବର୍ଣ୍ଣନା ଦେଖିବାକୁ ମିଳେ। ସବୁଥିରେ କିନ୍ତୁ ସେହି ଏକ ବିଧିନିଷେଧ କଥା କୁହାଯାଇଛି। ଅସଂଖ୍ୟ ତନ୍ତ୍ର ଅଛି, ଆଉ ସେ ସମସ୍ତରେ ବି କ୍ରିୟାଯୋଗର ବିସ୍ତୃତ ବର୍ଣ୍ଣନା ଅଛି। କିପରି ପୂଜା କରିବାକୁ ହୁଏ, କାହାକୁ ପୂଜା କରିବା କଥା, କି କି ଦ୍ରବ୍ୟରେ ପୂଜା କରବା ଉଚିତ— ଏ ସମସ୍ତ ହେଉଛି ପ୍ରଧାନ ବିଷୟ।''

ଉଦ୍ଧବ ପଚାରିଲେ, ''ଭଗବନ୍! ପୂଜା କେତେପ୍ରକାର ହୋଇଥାଏ ?''

ଭଗବାନ୍ କହିଲେ, ''ପୂଜାର ପ୍ରକାର ଭେଦ ଅନନ୍ତ। ମୁଖ୍ୟତଃ ଏହାକୁ ତିନି ଭାଗରେ ବିଭକ୍ତ କରାଯାଏ– ଯଥା ବୈଦିକ ପୂଜା, ତାନ୍ତ୍ରିକ ପୂଜା ଓ ଉଭୟାତ୍ମିକା ମିଶ୍ରିତ ପୂଜା। ବୈଦିକ ବିଧିରେ ବେଦମନ୍ତ୍ର ମାଧ୍ୟମରେ ଯେଉଁ ପୂଜା କରାହୁଏ ତାହାକୁ ବୈଦିକ ପୂଜା କହନ୍ତି। ପୌରାଣିକ ତଥା ଅନ୍ୟ ତାନ୍ତ୍ରିକ ବିଧିରେ ସେହି ମନ୍ତ୍ରରେ ଯେଉଁ ପୂଜା କରାଯାଏ ତାହାକୁ ତାନ୍ତ୍ରିକ ପୂଜା କୁହାଯାଏ। ଯେଉଁ ପୂଜା ଉଭୟର ମିଶ୍ରିତ ବିଧିରେ ଉଭୟର ମନ୍ତ୍ରରେ କରାଯାଏ ତାକୁ ମିଶ୍ରିତ ପୂଜା କୁହନ୍ତି। ଯାହାକୁ ଯେଉଁଭଳି ପୂଜା ଅନୁକୂଳ ସେ ସେହିଭଳି ପୂଜା କରିଥାନ୍ତି। ତନ୍ତ୍ର ପୁରାଣ ମନ୍ତ୍ରରେ ପୂଜା ସ୍ତ୍ରୀ ଶୂଦ୍ର ଆଦି ବି କରିପାରନ୍ତି। ବୈଦିକ ତଥା ମିଶ୍ରିତ ପୂଜା କେବଳ ଦ୍ୱିଜମାନେ କରିଥାନ୍ତି।''

ଉଦ୍ଧବ କହିଲେ, ''ପ୍ରଭୁ! ଏବେ ପୂଜା କେତେ ପ୍ରକାରର ତାହା କୁହନ୍ତୁ।''

ଭଗବାନ୍ କହିଲେ, ''ଦେଖ! ଯେପରି ପୂଜା କରାଯିବ, ସେହି ପୂଜାର ପ୍ରଥମେ ଅଧିକାର ପ୍ରାପ୍ତ ହେବା ଉଚିତ। ଯେପରି ଦ୍ୱିଜ ହୋଇଥିଲେ ତାକୁ ଶାସ୍ତ୍ର ବିଧି ଅନୁସାରେ ନିଜର ଯଜ୍ଞୋପବୀତ ସଂସ୍କାର କରିବା ଉଚିତ। ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କର ପ୍ରଥମ ଜନ୍ମ ତ ମାତୃ ଉଦରରୁ ହୋଇଥାଏ, ହେଲେ ଦ୍ୱିତୀୟ ଜନ୍ମ ହୋଇଥାଏ ଯଜ୍ଞୋପବୀତ ସଂସ୍କାର ସମୟରେ। ସେତେବେଳେ ତାର ଦ୍ୱିଜ ସଂଜ୍ଞା ହୋଇଯାଏ। ଏହିଭଳି ଉପନୟନ ଦ୍ୱାରା ଦ୍ୱିଜତ୍ୱ ପ୍ରାପ୍ତି ହୋଇ ସେ ତିନି ପ୍ରକାରର ପୂଜାର ଅଧିକାରୀ ହୋଇଯାଏ। ଏହାପରେ ସେ ଅତ୍ୟନ୍ତ ଶ୍ରଦ୍ଧା ଭକ୍ତିର ସହିତ ମୋ ପୂଜା କରିପାରେ।''

ଉଦ୍ଧବ କହିଲେ, ''ପ୍ରଭୁ! ଆପଣଙ୍କର ତ କୌଣସି ଏକ ନିର୍ଦ୍ଦିଷ୍ଟ ଆକାର ନାହିଁ। ଆପଣ ତ ନିର୍ଗୁଣ ନିରାକାର। ସାଧକ ଆପଣଙ୍କର ପୂଜା କେଉଁଠାରେ କରିବ ?''

ଭଗବାନ୍ କହିଲେ, ''ହେ ଉଦ୍ଧବ! ମୁଁ ତ ସର୍ବବ୍ୟାପକ। ସାଧକ ପ୍ରେମର ସହିତ ମୋତେ ଯେ କୌଣସି ଠାରେ ଡାକିଲେ ମୁଁ ସେଠାରେ ତତ୍‌କାଳ ପ୍ରକଟ ହୋଇଯାଏ। ମୋର ଭକ୍ତ ପ୍ରହ୍ଲାଦ ଖୁମ୍ବକୁ ଦେଖାଇ କହିଲା– 'ଏଥିରେ ମୋ ଭଗବାନ୍!' ଅଛନ୍ତି, ସେତେବେଳେ ତତ୍‌କାଳ ମୁଁ ସେହି ଖୁମ୍ବରେ ପ୍ରକଟ ହେବାକୁ ବାଧ୍ୟ ହୋଇଗଲି। ଯେ କୌଣସି ବସ୍ତୁରେ ବିଶ୍ୱାସ ଦୃଢ଼ ରଖି ମୋତେ ପୂଜା କରବା ଉଚିତ।''

ଉଦ୍ଧବ କହିଲେ, ''ତେବେ ବି ହେ ଭଗବନ୍! କେତେକ ନିର୍ଦ୍ଦିଷ୍ଟ ସ୍ଥାନ ତ ନିଶ୍ଚୟ ଥିବ।''

ଭଗବାନ୍ କହିଲେ, ''ମୋର ପ୍ରତିମାରେ ପୂଜା କରାଯାଇପାରେ। ପ୍ରତିମା ନ ମିଳିଲେ ଭୂମିରେ ଖାତଟିଏ ଖୋଳି ସେଠାରେ ପୂଜା କରାଯାଇ ପାରେ। ଅଗ୍ନିରେ, ସୂର୍ଯ୍ୟରେ, ଜଳରେ,

ହୃଦୟରେ, ଅତିଥି ତଥା ବ୍ରାହ୍ମଣଙ୍କ ଶରୀରରେ ମୋତେ ଭାବନା କରି ସେମାନଙ୍କୁ ଶ୍ରଦ୍ଧା-ଭକ୍ତିର ସହିତ ପୂଜା କରିବା ଉଚିତ। ଗୁରୁଦେବଙ୍କୁ ସାକ୍ଷାତ ପରଂବ୍ରହ୍ମ ମନେକରି ତାଙ୍କୁ ଯଥୋଚିତ ସାମଗ୍ରୀରେ ପୂଜା କରିବା ଉଚିତ।''

ଉଦ୍ଧବ କହିଲେ, ''ଭଗବନ୍! ପୂଜାରେ ପ୍ରଥମେ କେଉଁ କେଉଁ କୃତ୍ୟ କରାଯିବା ଉଚିତ।''

ଭଗବାନ୍ କହିଲେ, ''ଆହେ ଉଦ୍ଧବ! ନିତ୍ୟକର୍ମ ସାରି ପୂଜା କରାଯାଏ। ପ୍ରାତଃକାଳର ବ୍ରହ୍ମ ମୁହୂର୍ତ୍ତରେ ଉଠିବ। ଲଘୁଶଂକା ଆଦି ସାରି ମୁହଁ ହାତ ଧୋଇ କୁଳୁକୁଞ୍ଚା କରିବ। ଏହାପରେ ପ୍ରାତଃକାଳୀନ ମୋତେ ସ୍ମରଣ କରିବ। ଶାସ୍ତ୍ରୋକ୍ତ ବିଧିରେ ଶୌଚ ହେବ, ହାତ ଗୋଡ଼ ଆଦିରେ ମାଟି ଲଗାଇ ଶୁଦ୍ଧ ହେବ, ଶୁଦ୍ଧ ବୃତ୍ତିର ଦନ୍ତ ମଜ୍ଜନ କରିବ। ଏହାପରେ ସ୍ନାନ କରିବ। ସ୍ନାନ ପୂର୍ବରୁ ସ୍ନାନର ଯେଉଁ ବୈଦିକ ତାନ୍ତ୍ରିକ ମନ୍ତ୍ର ଅଛି ତାହାକୁ ଉଚ୍ଚାରଣ କରିବ। ଏହାପରେ ମନ୍ତ୍ର ପଢ଼ି ଶରୀରରେ ମାଟି ଲଗାଇ ସଂକଳ୍ପ ପୂର୍ବକ ସ୍ନାନ କରିବ। ସନ୍ଧ୍ୟା-ବନ୍ଦନ ଆଦି ଯେଉଁ ସବୁ ବୈଦିକ ନିତ୍ୟକର୍ମ ଅଛି ତାହା ପ୍ରଥମେ କରିନେବା ଉଚିତ। ସନ୍ଧ୍ୟା ତର୍ପଣ ଆଦି କରି ସାରିବା ପରେ କର୍ମକୁ ପବିତ୍ର ତଥା କଲ୍ୟାଣକାରୀ ପ୍ରତିମା ଆଦିରେ ମୋର ପୂଜା କରିବା ଉଚିତ।''

ଉଦ୍ଧବ ପଚାରିଲେ, ''ଭଗବାନ୍! ଆପଣଙ୍କର ପ୍ରତିମା କେଉଁଥିରେ ହୋଇଥିବା ଉଚିତ ?''

ଭଗବାନ୍ କହିଲେ, ''ମୋର କ'ଣ ଗୋଟିଏ ମାତ୍ର ପ୍ରତିମା ଅଛି! ପ୍ରତିମା ତ ଅନେକ ପ୍ରକାରର ହୋଇପାରେ। ତେବେ ସେଗୁଡ଼ିକ ମଧ୍ୟରୁ ଆଠ ପ୍ରକାର ମୁଖ୍ୟତଃ ଗ୍ରହଣଯୋଗ୍ୟ।

(୧) ପାଷାଣ ପ୍ରତିମା :— ପଥରକୁ କାଟି ମୋର ଯେଉଁ କମନୀୟ ପ୍ରତିମା କରାଯାଏ ତାହାକୁ ଶୈଳୀ ପ୍ରତିମା କୁହାଯାଏ। ପଥର ନାଳି, ଧଳା, କଳା ଅଥବା ଶଙ୍ଖମଲ୍‌ମଲ୍ ହୋଇପାରେ। ପଥରକୁ କାଟି ତିଆରି କରାଯାଇ ପାରେ ଅଥବା ତିଆରି ହୋଇଥିବା ପ୍ରତିମା କିଣି ଆଣି ପୂଜା କରାଯାଇ ପାରେ।

(୨) ଦାରୁମୟୀ ପ୍ରତିମା :— ଚନ୍ଦନ, ନିମ ତଥା ଅନ୍ୟ ଶାସ୍ତ୍ରୋକ୍ତ ବୃକ୍ଷର କାଠରେ ପ୍ରତିମା ତିଆରି କଲେ ତାହା ଦାରୁମୟୀ ପ୍ରତିମା ହୋଇଥାଏ। ମୋର ଶ୍ରୀଜଗନ୍ନାଥ ପ୍ରତିମା ହେଉଛି ପ୍ରସିଦ୍ଧ ଦାରୁମୟୀ ପ୍ରତିମା।

(୩)ଧାତୁ ପ୍ରତିମା :— ସୁନା, ଚାନ୍ଦି, ପିତଳ, ଲୁହା, ଅଷ୍ଟଧାତୁ ତଥା ଅନ୍ୟାନ୍ୟ ଧାତୁରେ ପ୍ରତିମା ତିଆରି କରାଯାଏ। ଏହି ପ୍ରତିମାଗୁଡ଼ିକ ଛାଞ୍ଚରେ ଧାତୁକୁ ତରଳାଇ ତିଆରି କରାଯାଏ।

(୪)ଲେପ୍ୟା ପ୍ରତିମା :— ଚନ୍ଦନ ଘୋରି ତଥା ଅଟା ଆଦିର ଲେପରେ ଯେଉଁ ପ୍ରତିମା କରାଯାଏ ତାକୁ ଲେପ୍ୟା ପ୍ରତିମା କୁହାଯାଏ। ଏଭଳି ପ୍ରତିମା କିନ୍ତୁ ଅନେକ ଦିନ ପର୍ଯ୍ୟନ୍ତ ରହେନାହିଁ।

(୫)ଲେଖ୍ୟ :— ଭୋଜପତ୍ର ଅଥବା କାଗଜରେ ଗେରୁ ଆଦି ରଙ୍ଗିନ୍ ତରଳରେ ଯେଉଁ ଚିତ୍ର କରାଯାଏ ସେହି ଚିତ୍ରିତ ପ୍ରତିମାକୁ ଲେଖ୍ୟ ପ୍ରତିମା କୁହାଯାଏ। କାଗଜ ଆଦିରେ ଚିତ୍ରିତ ହୋଇଥିଲେ ତାହାର ସୁରକ୍ଷା ପାଇଁ କାଚରେ ବନ୍ଧାଇଦେବା ଠିକ୍ ହୁଏ।

(୬) ସୌକତୀ ପ୍ରତିମା :– ମାଟି ଅଥବା ବାଲି ଆଦିରେ ଯେଉଁ ପ୍ରତିମା କରାଯାଏ ତାହାକୁ ସୌକତୀ ପ୍ରତିମା କୁହାଯାଏ । ରାମାବତାରରେ ମୁଁ ରାମେଶ୍ୱରଠାରେ ଶିବଙ୍କର ବାଲୁକାମୟୀ ପିଣ୍ଡି ସ୍ଥାପନା କରିଥିଲି ।

(୭)ମଣିମୟୀ :– ଇନ୍ଦ୍ରନୀଳ ମଣି ତଥା ଅନ୍ୟାନ୍ୟ ମଣିରେ ବି ମୋ ପ୍ରତିମା କରାଯାଏ । ଚିଦାମ୍ବରମ୍‌ରେ ଶିବଙ୍କ ପ୍ରତିମା ମଣିମୟୀ ପ୍ରତିମା ।

(୮)ମନୋମୟୀ ପ୍ରତିମା : ମନରେ ମୋର ଇଚ୍ଛାନୁସାର ମୂର୍ତ୍ତି କଳ୍ପନା କରି ମାନସିକ ପୂଜା କରାଯାଏ ।

ଏହିଭଳି ମୋର ପ୍ରତିମା ଆଠ ପ୍ରକାରର ହୋଇଥାଏ । ଏଗୁଡ଼ିକରେ ଯେ ପର୍ଯ୍ୟନ୍ତ ପ୍ରାଣପ୍ରତିଷ୍ଠା ହୋଇ ନଥାଏ ସେ ପର୍ଯ୍ୟନ୍ତ ସେଗୁଡ଼ିକ ପୂଜା ନିମନ୍ତେ ଯୋଗ୍ୟ ହୋଇ ନଥାନ୍ତି ।''

ଉଦ୍ଧବ ପଚାରିଲେ, ''ଭଗବନ୍ ! ପ୍ରାଣ ପ୍ରତିଷ୍ଠା କ'ଣ ?''

ଭଗବାନ୍ କହିଲେ, ''ପ୍ରତିମା ହୋଇଯିବା ପରେ ଶାସ୍ତ୍ରୋକ୍ତ ବିଧିରେ ପ୍ରାଣପ୍ରତିଷ୍ଠା କରିବା ଉଚିତ । ଏପରି କହିବ– 'ଏହି ପ୍ରତିମାରେ ପ୍ରାଣ ପ୍ରତିଷ୍ଠିତ ।' ଯଦି ଆଉ କିଛି କରିପାରିବ ନାହିଁ ତେବେ ମୋର ନାମ ନେଇ ନେଇ ପ୍ରତିମାର ସର୍ବାଙ୍ଗକୁ ସ୍ପର୍ଶ କରିବା ଉଚିତ । ଏବଂ ସେତେବେଳେ ଭାବନା କରୁଥିବା ଉଚିତ ଯେ ଏହି ପ୍ରତିମା ଜୀବନ୍ତ ହୋଇଗଲେ । ଶାଳଗ୍ରାମ ଶିଳାରେ ପ୍ରାଣପ୍ରତିଷ୍ଠା କରିବାର ଆବଶ୍ୟକତା ନ ଥାଏ । ତାହା ତ ସବୁବେଳେ ସଜୀବ । ବୃନ୍ଦାଙ୍କ ଅଭିଶାପରେ ମୁଁ ହିଁ ଶାଳଗ୍ରାମ ହୋଇଯାଇଛି । ପ୍ରାଣପ୍ରତିଷ୍ଠା ହେବାପରେ ମୂର୍ତ୍ତି ସ୍ଥାପିତ ହୋଇଥାଏ ।''

ଉଦ୍ଧବ କହିଲେ, ''ତେବେ କ'ଣ ପ୍ରାଣପ୍ରତିଷ୍ଠା ହୋଇଯିବା ପରେ ମୂର୍ତ୍ତିକୁ ସେହି ସ୍ଥାନରୁ ଆଉ ସ୍ଥାନାନ୍ତରିତ କରାଯାଏ ନାହିଁ ?''

ଭଗବାନ୍ କହିଲେ, ''ପ୍ରତିଷ୍ଠା ଦୁଇ ପ୍ରକାରର ହୋଇଥାଏ । ଗୋଟିଏ ଚଳନ୍ତି ପ୍ରତିଷ୍ଠା, ଅନ୍ୟଟି ଅଚଳନ୍ତି ପ୍ରତିଷ୍ଠା । ଅଚଳା ପ୍ରତିଷ୍ଠାରେ ପ୍ରତିମାଙ୍କୁ ସ୍ଥାନାନ୍ତର କରାଯାଏ ନାହିଁ । କିନ୍ତୁ ଚଳନ୍ତି ପ୍ରତିମାକୁ ଚାରିଆଡ଼େ ନିଆଯାଇ ହୁଏ । ଉଭୟଙ୍କର ପୂଜା ପଦ୍ଧତି କିନ୍ତୁ ଏକାପ୍ରକାରର । ପ୍ରଥମେ ଆବାହନ କରାଯାଏ । କିନ୍ତୁ ମୋର ଅଚଳା ପ୍ରତିମାକୁ ପ୍ରତିଦିନ ଆବାହନ କରାଯାଏ ନାହିଁ । ପ୍ରତିଷ୍ଠା ସମୟରେ କେବଳ ଥରେ ମାତ୍ର ଆବାହନ କରାଯାଇ ଥାଏ । ଏହାପରେ ତାହା ହୋଇଯାଏ ମୋର ନିତ୍ୟ ନିବାସ ସ୍ଥଳୀ । ଏହାକୁ ବିସର୍ଜନ ମଧ କରାଯାଏ ନାହିଁ । କିନ୍ତୁ ଚଳନ୍ତି ପ୍ରତିମା ବା ସାମୟିକ ପୂଜା ସମୟରେ ମୃତ୍ତିକା ଆଦି ପ୍ରତିମାକୁ ଆବାହନ ଓ ବିସର୍ଜନ ଉଭୟ କରିବାକୁ ହୋଇଥାଏ । ଚିତ୍ର ପ୍ରତିମାକୁ ଆବହନ ଓ ବିସର୍ଜନ କରିବା ସାଧକର ଇଚ୍ଛା ଉପରେ ନିର୍ଭର କରେ । ପୂଜା ନିମନ୍ତେ ପୂଜା ସାମଗ୍ରୀ ଏକକାଳୀନ ଏକାଠି କରିନେବା ଉଚିତ ।

ଉଦ୍ଧବ କହିଲେ, ''କୌଣସି ସମୟରେ ଯଦି କେଉଁଠାରେ ପୂଜା ଦ୍ରବ୍ୟ ନ ମିଳେ ତେବେ ପୂଜା କିପରି କରାଯାଇ ପାରିବ ?''

ଭଗବାନ୍ କହିଲେ, '' ନ ମିଳିଲେ ନାଇଁ । ଯାହା ମିଳିଲା ନାହିଁ ତାହା ପାଇଁ ଦୁଃଖ କରିବା ଦରକାର ନାହିଁ । ଆରେ ଭାଇ ! ମୁଁ କେବେ ବି କୌଣସି ସାମଗ୍ରୀ ଚାହେଁ ନାହିଁ ।

ମୁଁ କ'ଣ ତୁମର ନୈବେଦ୍ୟ ଆଦି ପାଇଁ ଭୋକିଲା ରହିଥାଏ କି? ମୁଁ ତ ଭାବର ଭୋକିଲା। ମୋର ଯିଏ ପ୍ରକୃତ ଭକ୍ତ, ସେ ଭକ୍ତ ଭାବରେ ମୋତେ ମୁନ୍ଦିଏ ଜଳ ଦେଲେ, ତାହା ମୋତେ ଅମୃତଠାରୁ ଅଧିକ ଆନନ୍ଦ ଦେଇଥାଏ। କିନ୍ତୁ ଯିଏ ମୋର ଭକ୍ତ ନୁହେଁ, କେବଳ ଲୋକଦେଖାଣିଆ ଭାବରେ ନିଜର ବୈଭବ ପ୍ରଦର୍ଶନ କରିବାପାଇଁ ବି ଅନେକ ବହୁମୂଲ୍ୟ ଦ୍ରବ୍ୟରେ ପୂଜାକରେ, ସେହି ଦ୍ରବ୍ୟ ମୋତେ ସେତେ ଭଲଲାଗେନାହିଁ, ଯେତେ ଭକ୍ତ ଦେଇଥିବା ଜଳ ମୁନ୍ଦାକ ଭଲ ଲାଗେ। ଭାବଭକ୍ତି ନ ଥିବା କେହି ଯଦି ଚନ୍ଦନକାଠ ଧୂପ ଦୀପ, ପୁଷ୍ପ ନୈବେଦ୍ୟ ଆଦିରେ ମୋତେ ପାଇବାକୁ ଚାହେଁ ବଶ କରିବାକୁ ଭାବେ, ତାହା ଅସମ୍ଭବ ହୋଇଥାଏ।

ଉଦ୍ଧବ କହିଲେ, ''ପ୍ରଭୁ! ଆପଣ ମୋତେ ପୂଜାର ପ୍ରକ୍ରିୟା ବତାନ୍ତୁ।''

ଭଗବାନ୍ କହିଲେ, ''ସ୍ନାନ ଶୌଚାଦି ସାରି ପୂଜା କରିବା ପାଇଁ ସୁନ୍ଦର କୁଶାସନରେ ବସିବ। ସେହି ଆସନସ୍ଥ କୁଶର ଅଗ୍ରଭାଗ ପୂର୍ବଦିଗକୁ ରହିଥିବ। ତା' ଉପରେ ମୃଗଚର୍ମ ବସ୍ତ୍ର ପକାଇ ପୂର୍ବାଭିମୁଖ ଅଥବା ଉତ୍ତରାଭିମୁଖ ହୋଇ ମୂର୍ତ୍ତିର ସମ୍ମୁଖରେ ବସିବ। ମୂର୍ତ୍ତିର ସମ୍ମୁଖରେ ବସିଲେ ଦିଗ ନିରୂପଣ କରିବା ଦରକାର ନାହିଁ। ଯେପରି ପ୍ରତିମା ବା ମୂର୍ତ୍ତି ଉତ୍ତରାଭିମୁଖ ହୋଇଥିଲେ ପୂଜକ ସମ୍ମୁଖରେ ବସିବା ଅର୍ଥ ଦକ୍ଷିଣାଭିମୁଖ ବସିବା, ଆଉ ଦକ୍ଷିଣାଭିମୁଖ ବସି ପୂଜା କରିବା ସେତେ ଉଚିତ ନୁହେଁ। କିନ୍ତୁ ମୂର୍ତ୍ତିର ସମ୍ମୁଖରେ ବସିଲେ ସେହି ଦୋଷ ଲାଗେନାହିଁ।

''ପୂଜାର ସମସ୍ତ ସାମଗ୍ରୀ ଏକାଠି କରି କୌଣସି ବଡ଼ ପାତ୍ର ଅଥବା ପିଢ଼ାରେ ନିଜର ଦକ୍ଷିଣ ପାଖରେ ରଖିବ। ଯେଉଁଠାରେ ପୂଜାକରିବାକୁ ଇଚ୍ଛା ପ୍ରଥମେ ସେହି ମନ୍ତ୍ରରେ ନିଜର ଶରୀରର ଅଙ୍ଗନ୍ୟାସ କରନ୍ୟାସ କରିବ। ଯେଉଁମନ୍ତ୍ରରେ ପୂଜା କରିବ ସେହି ମନ୍ତ୍ରର ଋଷିଙ୍କୁ ଶିରରେ ନ୍ୟାସ କରିବ, ଛନ୍ଦକୁ ମୁଖରେ ଆଉ ଦେବତାଙ୍କୁ ହୃଦୟରେ। ଯେପରି ଗାୟତ୍ରୀ ମନ୍ତ୍ର। ଏହାର ଋଷି ବିଶ୍ୱାମିତ୍ର, ଛନ୍ଦ ଗାୟତ୍ରୀ, ଆଉ ଦେବତା ସୂର୍ଯ୍ୟ। ତେବେ ଏହାକୁ କ୍ରମଶଃ ଶିର, ମୁଖ ଆଉ ହୃଦୟରେ ନ୍ୟାସ କରିବ। ନିଜେ ଅଙ୍ଗନ୍ୟାସ, କରନ୍ୟାସ କରି ମୂର୍ତ୍ତିରେ ବି ସେପରି କରିବ। କାରଣ ନିଜେ ଦେବତା ହୋଇ ଦେବତାଙ୍କୁ ପୂଜା କରିବା ଉଚିତ। ମନ୍ତ୍ରନ୍ୟାସ କରିବା ପରେ ପ୍ରତିମା ଉପରୁ ପୂର୍ବଦିନର ବାସିଫୁଲ ବାହାରକରି ଗୋଟିଏ ପାତ୍ରରେ ରଖିବ। ପ୍ରତିମାଙ୍କ ସିଂହାସନ ଆଦିକୁ ସ୍ୱଚ୍ଛ କରିବ। ଯେଉଁ ପାତ୍ରରେ ଜଳ ଆଣିବ ତଥା ପ୍ରୋକ୍ଷିଣୀପାତ୍ରକୁ ଯଥାବତ୍ ସଂସ୍କାର କରିବ। ଏହାପରେ କଳସ ପୂଜା କରିବ। ସେହି କଳସସ୍ଥ ଜଳକୁ ପ୍ରତ୍ୟେକ ପୂଜା ସାମଗ୍ରୀରେ ଛିଞ୍ଚିଦେବ। ନିଜର ଶରୀରକୁ ତଥା ପୂଜା ସ୍ଥାନକୁ ପ୍ରୋକ୍ଷଣ କରିବ। ଏ ସବୁ ଯାହା ହେଉଛି ତାହା ପୂଜାର ପ୍ରସ୍ତୁତି ପର୍ବ। ଏହାପରେ ପୂଜା ଆରମ୍ଭ କରିବ। ହଁ ଗୋଟିଏ କଥା ଭୁଲିଯାଇଛି। ପଞ୍ଚପାତ୍ରକୁ କ୍ରମାନୁସାରେ ଦକ୍ଷିଣ ପଟେ ସଜାଇ ଜଳ ପୂରଣକରି ଲଗାଲଗି ରଖିଥିବ।

ଉଦ୍ଧବ କହିଲେ, ''ଭଗବନ୍! ପଞ୍ଚପାତ୍ର କ'ଣ?''

ଭଗବାନ୍ କହିଲେ, ''ଗୋଟିଏ ବଡ଼ ଥାଳିରେ ପାଞ୍ଚଟି ଛୋଟ ଛୋଟ ଗିନା ରଖିବ। ମଝିରେ ଗୋଟିଏ ଓ ଏହାର ଚାରିପାଖରେ ଚାରିଟି- ଯେପରି ଚାରିଦଳ ବିଶିଷ୍ଟ କମଳ ପୁଷ୍ପ। ଏହି ପାଞ୍ଚଟି ପାତ୍ରର ନାମ ପଞ୍ଚପାତ୍ର। ଗୋଟିଏ ଲେଖା ଛୋଟ ଚାମଚ ସେଥିରେ

ପକାଇବ। ପଞ୍ଚପାତ୍ରରେ ପାଣି ଭର୍ତ୍ତି କରିଦେବ। ପାତ୍ରଗୁଡ଼ିକ ସୁନାର, ତମ୍ବାର ଅଥବା ଚାନ୍ଦିର ହୋଇପାରେ। ପ୍ରତ୍ୟେକରେ କେଶର ଚନ୍ଦନ ଆଦି ପକାଇବ। କିନ୍ତୁ ମଝିରେ ଥିବା ପାତ୍ରରେ ଶୁଦ୍ଧ ଜଳ ଥିବ। ଗୋଟିଏ ପାଦ୍ୟ, ଗୋଟିଏ ଅର୍ଘ୍ୟ, ଗୋଟିଏ ଆଚମନୀୟ ଜଳ ଓ ଅନ୍ୟଟି ସ୍ନାନୀୟ ଜଳର ପାତ୍ର। ସେ ସବୁଥିରେ ଶାସ୍ତ୍ର ବିହିତ ବସ୍ତୁ ପକାଇଦେବ। ଯେପରି ପାଦ୍ୟ-ପାଦ ଧୋଇବା ସୁମାଁ, ଦୁର୍ବା, ବିଷ୍ଣୁକାନ୍ତା ତଥା ତୁଳସୀଦଳ ଓ ଗନ୍ଧ। ଅର୍ଘ୍ୟର ପାତ୍ରରେ ଗନ୍ଧ, ପୁଷ୍ପ, ଅକ୍ଷତ (ବିଷ୍ଣୁ ପୂଜାପାଇଁ ଶ୍ୱେତ ତିଳ ବା ଜଳ); ସୋରିଷ, ଦୁବ, କୁଶ ତଥା କ୍ଷୀର, ଦହି ବି ପକାଇବ। ଆଚମନୀୟ ଜଳରେ ଲବଙ୍ଗ, ଜାଇଫଳ, କର୍ପୂର, ଆଦି ସୁଗନ୍ଧିତ ବସ୍ତୁ ପକାଇବ। ତା' ନ ହେଲେ ସବୁଥିରେ ତୁଳସୀ ଜଳ ପକାଇଦେବ। ଏହାପରେ ତ୍ରିପଦା ଗାୟତ୍ରୀର ତିନି ପାଦରେ- ହୃନ୍ମନ୍ତ୍ର, ଶିରୋମନ୍ତ୍ର ଆଉ ଶିଖମନ୍ତ୍ରରେ କ୍ରମଶଃ ପାଦ୍ୟ, ଅର୍ଘ୍ୟ ଆଉ ଆଚମନୀୟ ପାତ୍ରଗୁଡ଼ିକୁ ଅଭିମନ୍ତ୍ରିତ କରିବ। ଏହାପରେ ପୂରା ଗାୟତ୍ରୀ ମନ୍ତ୍ରରେ ପଞ୍ଚପାତ୍ରକୁ ଅଭିମନ୍ତ୍ରିତ କରିବ। ଏହାପରେ କୋଷ୍ଠ ଶୁଦ୍ଧି କରିବ।

ଉଦ୍ଧବ କହିଲେ, ''ପ୍ରଭୁ! କୋଷ୍ଠ ଶୁଦ୍ଧି କାହାକୁ କୁହନ୍ତି ?

ଭଗବାନ୍ କହିଲେ, ''ସମଗ୍ର ଶରୀରରେ ପ୍ରାଣବାୟୁ ବ୍ୟାପ୍ତ ହୋଇ ରହିଛି। ସେଥିପାଇଁ ଜୀବନ ରହିଛି। ଜଠରରେ ଥିବା ଅଗ୍ନି ସକଳ ପ୍ରକାର ଧାତୁକୁ ପାକ କରିଥାଏ। ଏପରି ଭାବନା କରିବା ଉଚିତ ଯେ ଏହି ସମ୍ପୂର୍ଣ୍ଣ ଶରୀର ପ୍ରାଣବାୟୁ ଓ ଜଠରାଗ୍ନି ଦ୍ୱାରା ଠିକ୍ ସେହିଭଳି ଶୁଦ୍ଧ ହୋଇ ରହିଥାଏ, ଯେପରି ଅଗ୍ନି ତପ୍ତ କରାହୋଇଥିବା ସୁନା ଫୁଙ୍କନଳୀର ବାୟୁରେ ତପ୍ତ ହୋଇ ଶୁଦ୍ଧ ଓ ନିର୍ମଳ ହୋଇଯାଏ। ପିଣ୍ଡ ଶୁଦ୍ଧି ହୋଇଯିବା ପରେ ହୃଦୟରେ ସ୍ଥିତ ଅଷ୍ଟଦଳ କମଳରେ ରହିଥିବା ମୋର ଏହି ପରମ ସୂକ୍ଷ୍ମ ଓ ଉତ୍ତମ ଜୀବକଳାର ଧ୍ୟାନ କରିବ ଯାହାକୁ ସିଦ୍ଧିଗଣ ନାଦର ଅନ୍ତରେ ଭାବନାଦ୍ୱାରା ଧ୍ୟାନ କରନ୍ତି।''

ଉଦ୍ଧବ ପଚାରିଲେ, ''ନାଦର ଅନ୍ତରେ ସିଦ୍ଧଗଣ କେଉଁ ଜୀବକଳାକୁ ଧ୍ୟାନ କରନ୍ତି ପ୍ରଭୁ।''

ଭଗବାନ୍ କହିଲେ,''ମୁଁ ହେଉଛି ବାଚ୍ୟ, ପ୍ରାଣ ହେଉଛି ମୋର ବାଚକ। ପ୍ରଣବର ପାଞ୍ଚକଳା ଅଛି। ଅକାର, ଉକାର, ମକାର, ବିନ୍ଦୁ ଆଉ ନାଦ। ନାଦର ପଛରେ 'ମୁଁ' ପରାତ୍ପରର ବ୍ରହ୍ମ ଥାଏ । ଏଣୁ ମୋତେ ହିଁ ଧ୍ୟାନ କରୁଥିବା ଉଚିତ। ମୁଁ ଅନ୍ତର୍ଯ୍ୟାମୀ ରୂପରେ ପ୍ରତ୍ୟେକ ଘଟରେ ବ୍ୟାପ୍ତ ଥାଏ। ଯେତେ ସବୁ ଶରୀର ଅଛି, ସେ ସମସ୍ତ ମୋର ହେଉଛି ଘର। ସମସ୍ତ ମୋର ମନ୍ଦିର। ମୁଁ ଆତ୍ମରୂପ ଜୀବକଳା ରୂପରେ ପ୍ରତ୍ୟେକରେ ପ୍ରତିଷ୍ଠିତ। ଏଣୁ ସର୍ବପ୍ରଥମ ମାନସିକ ଉପଚାରରେ ପିଣ୍ଡରେ ମୋର ପୂଜା କରିଦେବା ଉଚିତ। କାରଣ ଯାହା ପିଣ୍ଡରେ ଥାଏ ତାହା ବ୍ରହ୍ମାଣ୍ଡରେ ଥାଏ। ଯାହାକୁ ପିଣ୍ଡରେ ମାନସିକ ପୂଜା କରାଯାଏ, ତାହାର ପ୍ରତିମା ରୂପରେ ନାନା ସାମଗ୍ରୀ ଦ୍ୱାରା ବାହ୍ୟ ପୂଜା ହୋଇଥାଏ। ଏଣୁ ଭିତରେ ମାନସିକ ପୂଜା କରି ତାହାର ପ୍ରତିମା ଆଦିରେ ଆବାହନ କରି ସ୍ଥାପିତ କରିବ। ଏହାପରେ ମନ୍ତ୍ରଦ୍ୱାରା ଯଥାବିଧି ଅଙ୍ଗନ୍ୟାସ କରିବା ପରେ ପୂଜା ଆରମ୍ଭ କରିବ। ଆବାହନ ପରେ ପରେ ଆସନ ପ୍ରଦାନ କରିବ। ଆସନ ଅଷ୍ଟଦଳ କମଳର ବୋଲି ଭାବନା କରିବ। ତାହାର ଅଷ୍ଟ ଦିଗର ଅଷ୍ଟ ଦଳ ଉପରେ ଅଷ୍ଟ-ଶକ୍ତି ଥାଏ ଆଉ ମଝିରେ କର୍ଣ୍ଣିକା ଉପରେ ନବମ ଶକ୍ତି ସ୍ଥିତ ଥାଏ। ସେହି ନବ ଶକ୍ତିର ଆସନକୁ ମୋତେ ବସିବା ପାଇଁ ଦେବ।''

ଉଦ୍ଧବ ପଚାରିଲେ, ''ଭଗବନ୍! ସେହି ନବଶକ୍ତି କିଏ କିଏ ?''

ଭଗବାନ୍ କହିଲେ, ''ବିମଳା, ଉତ୍କର୍ଷିଣୀ, ଜ୍ଞାନା, କ୍ରିୟା, ଯୋଗ, ପ୍ରହ୍ମୀ, ସତ୍ୟ, ଇଶାନୀ ଆଉ ଅନୁଗ୍ରହା ହେଉଛି ନବଶକ୍ତିର ନାମ। ମୋ ଆସନର ପୀଠକୁ ପଲଙ୍କ ରୂପରେ ଭାବନା କରିବ। ସେହି ପର୍ଯ୍ୟଙ୍କପୀଠରେ ଧର୍ମ, ଜ୍ଞାନ, ବୈରାଗ୍ୟ, ଆଉ ଐଶ୍ୱର୍ଯ୍ୟ ହେଉଛି ଚାରି ପାଦ। ଅଧର୍ମ, ଅଜ୍ଞାନ, ଅବୈରାଗ୍ୟ ଆଉ ଅନୈଶ୍ୱର୍ଯ୍ୟ– ଏଗୁଡ଼ିକ ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ଏହି ଚାରିଦିଗର ଦଣ୍ଡ। ପିଠରେ ଯେଉଁ ଆଉଜିବା ପାଇଁ ଥିବା ପୃଷ୍ଠଭାଗରେ ସତ୍ୱ,ରଜ ଆଉ ତମ ଏହି ତିନିଗୁଣ ଥାଏ। ଏପରି ଏହି ଦିବ୍ୟ ଆସନକୁ କଳ୍ପନା କରି ତା' ଉପରେ ମୋତେ ବସାଇବ। ଏହାପରେ ପାଦ୍ୟାଦିରେ ମୋର ପୂଜା ଆରମ୍ଭ କରିବ। ପୂଜାରେ ପ୍ରଥମେ ଯଥାସ୍ଥାନରେ ମୋର ଅସ୍ତ୍ର, ଆୟୁଧ ଆଉ ପାର୍ଷଦଙ୍କୁ ସ୍ଥାପନ କରିବ।

ଉଦ୍ଧବ ପଚାରିଲେ, ''ପ୍ରଭୁ! ଆପଣଙ୍କର ଅସ୍ତ୍ର, ଆୟୁଧ ଓ ପାର୍ଷଦଗୁଡ଼ିକ କ'ଣ କ'ଣ ?''

ଭଗବାନ୍ କହିଲେ, ''ସୁଦର୍ଶନ ଚକ୍ର, ପାଞ୍ଚଜନ୍ୟ ଶଙ୍ଖ, କୌମୋଦକୀ ଗଦା, ଖଡ୍ଗ, ବାଣ, ଧନୁ, ହଳ, ମୂଷଳ– ଏହି ଆଠଟି ଆୟୁଧ। ଏଗୁଡ଼ିକୁ ଯଥାସ୍ଥାନରେ ସ୍ଥାପନ କରିବ। ଏହାପରେ କୌସ୍ତୁଭମଣି, ବୈଜୟନ୍ତୀ ମାଳା, ତଥା ଶ୍ରୀବତ୍ସ ଚିହ୍ନ, ଏଗୁଡ଼ିକ ବି ମୋର ନିତ୍ୟ ଅଙ୍ଗ। ନନ୍ଦ, ସୁନନ୍ଦ, ଗରୁଡ଼, ଚଣ୍ଡ, ପ୍ରଚଣ୍ଡ, ବଳ, ମହାବଳ, କୁମୁଦ, କୁମୁଦେକ୍ଷଣ, ଦୁର୍ଗା, ବିନାୟକ, ବ୍ୟାସ, ବିଷ୍ୱକ୍ସେନ, ଗୁରୁଗଣ ତଥା ଦେବତାଗଣଙ୍କୁ ବି ଯଥାସ୍ଥାନରେ ସ୍ଥାପିତ କରିବ। ସେମାନଙ୍କର ବି ପ୍ରୋକ୍ଷଣ କରି ପୂଜା କରିବ। ପାର୍ଷଦଙ୍କ ପୂଜା ପ୍ରଥମେ କରିବା ପରେ ମୋର ପୂଜା କରିବ। ଅଥବା ସାଙ୍ଗାୟ ସପରିବାରାୟ କହି ପୂଜା କରୁଥିବ।

''ଆବାହନ, ଆସନ ପରେ ପାଦ୍ୟ, ଅର୍ଘ୍ୟ, ଆଚମନ ପ୍ରଦାନକରି ସ୍ନାନ କରିବ। ସାମର୍ଥ୍ୟ ଥିଲେ ପ୍ରତିଦିନ ପଞ୍ଚାମୃତରେ ସ୍ନାନ କରାଇବା ଉଚିତ। ଚନ୍ଦନ, ଉଶୀର, କର୍ପୂର, କୁଙ୍କୁମ ଆଉ ଅଗୁରୁ ଦ୍ୱାରା ସୁଗନ୍ଧିତ ଜଳରେ ସ୍ନାନ କରାଇବ। ଅଭିଷେକର ଯେଉଁ ବୈଦିକ ମନ୍ତ୍ର ଅଛି-ଯେପରି ସ୍ୱର୍ଣ୍ଣ ଧର୍ମାନୁବାକ, ମହାପୁରୁଷ ବିଦ୍ୟା, ପୁରୁଷ ସୂକ୍ତ ଅଥବା ସାମବେଦୋକ୍ତ ରାଜନାଦି ମନ୍ତ୍ର- ଆଦି ପାଠ କରୁଥିବା ସମୟରେ ମୋତେ ସ୍ନାନ କରିବ।''

ଉଦ୍ଧବ ପଚାରିଲେ, ''ଭଗବନ୍! ଧାତୁ ଅଥବା ପାଷାଣର ପ୍ରତିମାକୁ ଧୁଆ ଯାଇହୁଏ। ମାତ୍ର କାଗଜ ବା ଅନ୍ୟ କୌଣସିଥିରେ ଅଙ୍କନ କରଯାଇଥିବା ପ୍ରତିମାକୁ ଯଦି ଧୁଆଯିବ ତେବେ ତା ନଷ୍ଟ ତ ହୋଇଯିବ। ଏଗୁଡ଼ିକ କ୍ଷେତ୍ରରେ କ'ଣ କରାଯିବ ?''

ଭଗବାନ୍ କହିଲେ, ''ଧାତୁ ଅଥବା ପାଷାଣ ପ୍ରତିମାକୁ ହିଁ ସ୍ନାନ କରାଯାଏ। କାଗଜ ଆଦିରେ ଅଙ୍କନ ହୋଇଥିବା ପ୍ରତିମାରେ ଜଳ ଟିକିଏ ଛିଞ୍ଚାଡ଼ି ଦେବ। ଅଥବା ଓଦା ବସ୍ତ୍ରରେ ପୋଛି ଦେବ। ବସ୍ତ୍ର ଓ ଅଳଙ୍କାର ଆଦି କ୍ଷେତ୍ରରେ ବି ଏହିପରି ହୋଇଥାଏ। ପାଷାଣ ଅଥବା ଧାତୁର ପ୍ରତିମାକୁ ବସ୍ତ୍ର ପିନ୍ଧାଯାଏ ତଥା ଅଳଙ୍କାରାଦି ପିନ୍ଧାଯାଏ। କିନ୍ତୁ ଚିତ୍ରପଟରେ ଅଳଙ୍କାର କିପରି ପିନ୍ଧା ଯାଆନ୍ତା।''

ସ୍ନାନ ପରେ ମୋ ପ୍ରତିମାକୁ ବସ୍ତ୍ର ପିନ୍ଧାହୁଏ, ଅଳଙ୍କାର ପିନ୍ଧାହୁଏ, ଚନ୍ଦନ ଲଗାହୁଏ, ପତ୍ର ପୁଷ୍ପ ଆଗରେ ରଖିବ, ଫୁଲମାଳ ପିନ୍ଧାହେବ, ଅତର ଅଗୁରୁ ଆଦି ସୁଗନ୍ଧିତ ଦ୍ରବ୍ୟ

ଲଗାଇବ। ଏହିଭଳି ଯଥୋଚିତ ଭାବରେ ମୋ ପ୍ରତିମାର ସୁନ୍ଦର ଶୃଙ୍ଗାର କରିବ। ଏହିଭଳି ଆସନ, ପାଦ୍ୟ,ଅର୍ଘ୍ୟ, ଆଚମନୀୟ, ସ୍ନାନୀୟ, ବସ୍ତ୍ର ଆଭୂଷଣ ଯଜ୍ଞୋପବୀତ, ଚନ୍ଦନ,ପୁଷ୍ପ, ମାଳା, ଅତର ଧୂପ, ଦୀପ ଆଦିରେ ପୂଜା କରି ନୈବେଦ୍ୟ କରିବ।''

ଉଦ୍ଧବ ପଚାରିଲେ, ''ପ୍ରଭୁ! କେଉଁଭଳି ଜିନିଷ ନୈବେଦ୍ୟ କରାଯାଏ ?''

ଭଗବାନ୍ କହିଲେ, ''ଆରେ ଭାଇ! ନୈବେଦ୍ୟର ସେପରି କୌଣସି ନିର୍ଦ୍ଦିଷ୍ଟତା ନ ଥାଏ। ନିଜର ଶକ୍ତି ସାମର୍ଥ୍ୟ ଅନୁସାରେ ନୈବେଦ୍ୟ ଦିଆହୁଏ। ସୁନ୍ଦର ସ୍ୱାଦିଷ୍ଟ ମନୋହର ପରମାନ୍ନକୁ ଭୋଗ କରିପାରିଲେ ଭଲ। ଗୁଡ଼, ମିଶ୍ରି,ଆଦିର ବିବିଧ ପ୍ରକାର ମିଠା, ବାଦାମ, ପିସ୍ତା, କିସ୍‌ମିସ୍, ଦୁଧ କ୍ଷୀର ମାଲପୁଆ, ମହନଭୋଗ, ଦହି, ଶ୍ରୀଖଣ୍ଡି ଆଦି ଛପନ ପ୍ରକାର ଭୋଗ ବି ଲଗାଯାଏ। ପ୍ରତିଦିନ ସମ୍ଭବ ନ ହେଲେ ବି ପର୍ବ ଦିନମାନଙ୍କରେ ଛପନ ଭୋଗ ଲଗାଇପାରିଲେ ଭଲ। ପର୍ବଦିନମାନଙ୍କରେ ସୁନ୍ଦର ସୁନ୍ଦର ମୂଲ୍ୟବାନ୍ ବସ୍ତ୍ରାଳଙ୍କାର ଆଦି ପିନ୍ଧାଇବା ଦରକାର। ବାଜା ବଜାଇ ନାଚ ଗୀତ ବୋଲିବା, ନାଟକ ଅଭିନୟ କରିବା ଦରକାର। ସାରକଥା ହେଉଛି, ମହାରାଜାମାନଙ୍କର ବିଭୂତିରେ ମୋର ଅର୍ଚ୍ଚନା କରିବା ଉଚିତ। ଏବେ ତୁମେ ଆଉ କ'ଣ ଶୁଣିବାକୁ ଚାହୁଁଛ ?

ଉଦ୍ଧବ କହିଲେ, ''ଭଗବନ୍! ଆପଣ କହିଥିଲେ ଯେ ଆପଣଙ୍କର ପୂଜା ଜଳ, ସ୍ଥଳ, ଅଗ୍ନି, ହୃଦୟ, ବ୍ରାହ୍ମଣ ତଥା ପ୍ରତିମାରେ କରାଯିବା ଉଚିତ। ଆପଣ ବର୍ତ୍ତମାନ ପ୍ରତିମା ପୂଜା ବିଧି କହିଲେ। ଏବେ ଜଳରେ, ସ୍ଥଳରେ, ଅଗ୍ନିରେ ତଥା ହୃଦୟ ଆଦିରେ ଆପଣଙ୍କର ପୂଜା କିପରି କରାଯାଏ ତାହା କୃପାକରି କହିବା ହୁଅନ୍ତୁ।''

ଭଗବାନ୍ କହିଲେ,''ଦେଖ ଭାଇ! ସବୁଥିରେ ପୂଜା ଏକାଭଳି ହୋଇଥାଏ। ତେବେ ଜଳ, ସ୍ଥଳ ଅଗ୍ନି ଆଦିରେ ମୋତେ ଭାବନାକରି ପୂଜା କରିବାରେ କିଛି ପାର୍ଥକ୍ୟ ରହିଛି। ମୁଁ ତୁମକୁ ତାହା ଅତି ସଂକ୍ଷେପରେ କହୁଛି।''

ମହାପ୍ରାଜ୍ଞ ସୂତ କହୁଛନ୍ତି, ''ହେ ମୁନିଗଣ! ଭଗବାନ ଉଦ୍ଧବଙ୍କୁ ଅଗ୍ନି ଆଦି ପୂଜାବିଧି ଯେଉଁଭଳି କହିଥିଲେ ତାହା ଆପଣମାନଙ୍କୁ କହୁଛି। ଆପଣମାନେ ଦତ୍ତଚିତ୍ତ ହୋଇ ତାହା ଶ୍ରବଣ କରନ୍ତୁ।''

### ଛପ୍‌ପୟ

ଜୋ ମିଲି ଜାବେଁ ବସ୍ତୁ ଅଲ୍ପ ବା ବହୁ ପୂଜନ କୀ।
ସାଙ୍ଗ ସହିତ ପରିବାର କରୈ ପୂଜା ଇନ ସବ କୀ॥
ପାଦ୍ୟ ଅରଘ ଇସ୍ନାନ,ଧୂପ ଦୀପାଦିକ ଦୈ କେ।
ନାନାବିଧି ନୈବେଦ୍ୟ ଧରୈ, ଅତି ହରଷିତ ହ୍ୱୈ କେ॥
ଦୈ ମୁଖ ଶୁଦ୍ଧୀ, ପ୍ରଦକ୍ଷିନ, କ୍ଷମାୟାଚନା ବହୁ କରୈ।
ଭୋଗ ଲେହି, ନିଜ ଶୀଶ ପୈ, ଚନ୍ଦନ ଚରନାମୃତ ଧରୈ॥



# ଅଗ୍ନି ଆଦିର ପୂଜାବିଧି

**ଅର୍ଚାଦିଷୁ ଯଦା ଯତ୍ର ଶ୍ରଦ୍ଧା ମାଂ ତତ୍ର ଚାର୍ଚୟେତ୍ ।**
**ସର୍ବଭୂତେଷ୍ୱାତ୍ମନି ଚ ସର୍ବାତ୍ମାହମବସ୍ଥିତଃ ॥ ★**

[ଶ୍ରୀଭା.୧୧ ସ୍କ ୨୭ ଅ.୪୮ ଶ୍ଳୋକ]

**ଛପ୍ପୟ**

ବେଦୀ ସୁଧର ବନାଇ ଅଗିନ ମହଁ ପୂଜୈ ବିଧିବତ ।
କରି ପୁନି ମୋରୋ ଧ୍ୟାନ ସମିଧ ଆହୁତି ଦେ ଧୃତୟତ ॥
ଆଜ୍ୟଭାଗ ଆଧାର ଦେହି ଶାକଲ୍ୟ ଆଜ୍ୟମୟ ।
ମୂଲ ମନ୍ତ୍ର ପଢ଼ି ଦେହି ସ୍ୱିଷ୍ଟକୃଦ୍ କରୈ ସଦାଶୟ॥
ରବି ଉପାସନ ଅରଘ ଦୈ, ଜଲମହଁ ଜଲ ତରପନ କରୈ ।
ଅତିଥି ବିପ୍ର ନୈବେଦ୍ୟ ଦୈ, ପୂଜୈ ଯୋ କରମନି କରୈ॥

ଅଗ୍ନିରେ ହବନ କର, ଜଳରେ ତର୍ପଣ କର, ବିପ୍ରଙ୍କ ମୁଖରେ ଅନ୍ନର ଆହୁତି ଦିଅ, ଗୋରୁଙ୍କୁ ଘାସ ଖୁଆଅ ଅଥବା ସକଳ ଭୂତଙ୍କୁ ଭଗବାନ ବୋଲି ମନେକରି ସମସ୍ତଙ୍କୁ ଶ୍ରଦ୍ଧା ଭକ୍ତି ସହିତ ଆଦର ସତ୍କାର କର– ଏ ସମସ୍ତ ହିଁ ହୋଇଥାଏ ଭଗବାନଙ୍କର ପୂଜା । ସର୍ବବ୍ୟାପକ ଭଗବାନଙ୍କୁ ଯେଉଁଠି ଯେଉଁଭଳି ବି ଭଜନ କରିବା, ପୂଜା କରିବା– ସେ ସେହି ଭାବନାରେ ପ୍ରକଟ ହୋଇ ପୂଜା ଗ୍ରହଣ କରିଥାଆନ୍ତି । ସେହି ସର୍ବାତ୍ମା ସର୍ବେଶ୍ୱର ଭାବରେ ହିଁ ସନ୍ତୁଷ୍ଟ ହୋଇଥାଆନ୍ତି । ଯାହାକୁ ଯେପରି ପୂଜା ସୁବିଧା ଲାଗେ ସେ ସେହି ପୂଜା କରିପାରେ । ସେ ପରା ଭାବବିନୋଦିଆ ।

ମହାପ୍ରାଜ୍ଞ ସୂତ କହୁଛନ୍ତି, 'ହେ ମୁନିଗଣ ! ଉଦ୍ଧବ ଯେତେବେଳେ ପ୍ରତିମା ବ୍ୟତୀତ ଅନ୍ୟ ସ୍ଥାନର ପୂଜା ବିଧି ସମ୍ବନ୍ଧରେ ପଚାରିଲେ ଭଗବାନ୍ ତାଙ୍କୁ କହିଲେ, "ହେ ଉଦ୍ଧବ ! ପ୍ରତିମାରେ ମୋର ଯେପରି ପୂଜା କରାଯାଏ, ଅଗ୍ନିରେ ବି ସେହିଭଳି ପୂଜା କରାଯାଏ ।"

ଉଦ୍ଧବ ପଚାରିଲେ, "ଭଗବନ୍ ! ଅଗ୍ନିରେ ଆପଣଙ୍କର ପୂଜା ବିଧି କ'ଣ ?"

ଭଗବାନ୍ କହିଲେ, "ଅଗ୍ନିରେ ଯେଉଁମାନେ ମୋତେ ପୂଜା କରିବାକୁ ଚାହାନ୍ତି, ସେମାନେ ପ୍ରଥମେ ଏକ ହବନ ବେଦି କରିବେ । ସେହି ବେଦି ମେଖଳା ଓ ଗର୍ତ୍ତ ଯୁକ୍ତ ହୋଇଥିବ । ଏହି ହବନ କୁଣ୍ଡ ଗର୍ତ୍ତ ଖୋଳି କରାଯାଇ ପାରେ ବା ସାଧାରଣ ଭାବରେ । ଏହାପରେ

---



ଶୁଣ ମୋ ପୂଜା ବିଧି ଯେତେ । ଭାବେ କହିବା ତୋ ଅଗ୍ରତେ ॥
ପ୍ରତିମା ସ୍ଥାପି ଭୂମିତଳେ । ଅଥବା ସ୍ଥଣ୍ଡିଳେ ଅନଳେ ॥
ସୂର୍ଯ୍ୟ ପୂଜିବ କିବା ଜଳେ । ଅଥବା ହୃଦୟ କମଳେ ॥
ଗୁରୁ ଚରଣେ ଜୀବେ ଭଜି । ମୋତେ ପୂଜିବ ମାୟା ତେଜି ॥

[ଭାଗବତ : ଜଗନ୍ନାଥ ଦାସ : ୧୧ ସ୍କନ୍ଧ, ୨୮ଅ]

ସେହି କୁଣ୍ଡରେ ବିଧିବଦ୍ ଅଗ୍ନି ସଂଯୋଗ କରିବାକୁ ହୁଏ ଏବଂ ଅଗ୍ନିକୁ ପ୍ରଜ୍ୱଳିତ କରାଯାଏ। ଅଗ୍ନି ପ୍ରଜ୍ୱଳିତ ହୋଇଯିବା ପରେ କୁଣ୍ଡକୁ କୁଶକଣ୍ଡିକା କରାଯିବା ଉଚିତ। ଅର୍ଥାତ୍ ବେଦିରେ ଚାରି ପାର୍ଶ୍ୱରେ କୁଶ ବିଛାଇବ। କୁଶ ବିଛାଇବାବେଳେ ଏହାର ଅଗ୍ରଭାଗ ଦକ୍ଷିଣ ଦିଗକୁ ନ ରହିବା ଉଚିତ। କୁଶ ବିଛାଇବା ପରେ ପ୍ରୋକ୍ଷଣ କରିବାକୁ ହୁଏ। ଏହାପରେ ସମିଧା ଏକତ୍ରିକୃତ କରିବ ଏବଂ ହବନୀୟ ଅଗ୍ନିର ଉତ୍ତର ପାର୍ଶ୍ୱରେ ରଖିବ। ଉତ୍ତର ପାଖରେ ହିଁ ହବନୀୟ ସମସ୍ତ ସାମଗ୍ରୀ ରଖିବା ଉଚିତ। ପାତ୍ରଗୁଡ଼ିକୁ ଧୋଇ ସ୍ୱଚ୍ଛ କରିବ। ଏହାପରେ ପ୍ରୋକ୍ଷିଣୀ ପାତ୍ରରେ ହୋମୋପଯୋଗୀ ସମସ୍ତ ସାମଗ୍ରୀକୁ ପ୍ରେକ୍ଷଣ କରିବ। ଆଚମନ କରିବ, ପ୍ରାଣାୟାମ କରିବ ଏବଂ ଏହାପରେ ଅଗ୍ନିରେ ମୋର ଚତୁର୍ଭୁଜ ରୂପକୁ ଧ୍ୟାନ କରିବ।''

ଉଦ୍ଧବ ପଚାରିଲେ, ''ଧ୍ୟାନ କିପରି କରାଯାଏ ପ୍ରଭୁ!''

ଭଗବାନ୍ କହିଲେ, ''ତପ୍ତ ସୁବର୍ଣ୍ଣ ସଦୃଶ ମୋର ହେଉଛି ତେଜୋମୟ ବର୍ଣ୍ଣ। ଶଙ୍ଖ, ଚକ୍ର, ଗଦା, ପଦ୍ମ ସୁଶୋଭିତ ଚାରି ବିଶାଳ ଭୁଜ। ମୋର ସୁନ୍ଦର ସୁକୁମାର ଶାନ୍ତ ଶରୀରରେ ପୀତାମ୍ବର ଅଧିକ ଶୋଭାବର୍ଦ୍ଧନ କରୁଥାଏ। ମନୋମୟ ଦିବ୍ୟ ଅଙ୍ଗରେ ମଣିମୟ ଦିବ୍ୟ ଆଭୂଷଣ ବିଭୂଷିତ। ମସ୍ତକରେ କିରୀଟ, କାନରେ କୁଣ୍ଡଳ, ନାକରେ ନାକଚଣା, କଣ୍ଠରେ ହାର ତଥା ବନମାଳା, କରରେ କଙ୍କଣ, ଭୁଜରେ ବାଜୁବନ୍ଧ, ବକ୍ଷସ୍ଥଳରେ ଶ୍ରୀବତ୍ସ ଆଉ କମନୀୟ କାନ୍ତିଯୁକ୍ତ କୌସ୍ତୁଭମଣି, କଟିରେ ଅଣ୍ଟାସୂତା ତଥା ପାଦରେ ନୂପୁର ଶୋଭାୟମାନ ହେଉଥାଏ। ମୋର ଏହି ତ୍ରୈଲୋକ୍ୟ ମୋହନ ରୂପକୁ ଧ୍ୟାନ କରିବାକୁ ହୁଏ। ଏହାପରେ ପୂଜାର ବାର ବାର ଅଙ୍ଗୁଳି ଲମ୍ବର ତିନିଟି ସମିଧାକୁ ଘୃତରେ ବୁଡ଼ାଇ ଆହୁତି ଦେବାକୁ ହୁଏ। ଏହାପରେ ପ୍ରଜାପତି, ଇନ୍ଦ୍ରଙ୍କ ପାଇଁ ତଥା ଅଗ୍ନି ଓ ସୋମଙ୍କ ପାଇଁ ଆଧାର ଓ ଆଜ୍ୟଭାଗ ନାମରେ ଦୁଇ ଦୁଇଟି ଆହୁତି ଦେବ। ଏହାପରେ ଶାକଲ୍ୟକୁ ଆହୁତିରେ ଦେବ।।

ଉଦ୍ଧବ ପଚାରିଲେ, ''ଭଗବନ୍! ଆହୁତି କେଉଁ ମନ୍ତ୍ରରେ ଦିଆହୁଏ ?''

ଭଗବାନ୍ କହିଲେ, ''ଯାହାର ମନ୍ତ୍ର ଯେଉଁଭଳି ତାହାର ମୂଳମନ୍ତ୍ରରେ ଆହୁତି ଦେବାକୁ ହୋଇଥାଏ। ଅଷ୍ଟାକ୍ଷର, ଦ୍ୱାଦଶକ୍ଷର, ଗାୟତ୍ରୀ ଅଥବା ପୁରୁଷସୂକ୍ତର ସ୍ୱାହା ଅନ୍ତରେ ଲଗାଇ ହବନ କରିବାକୁ ହୁଏ। ଏହାପରେ ଶାସ୍ତ୍ରରେ କୁହାଯାଇଥିବା କ୍ରମରେ ଧର୍ମାଦି ଦେବତାଙ୍କ ଉଦ୍ଦେଶ୍ୟରେ ସେହି ସେହି ମନ୍ତ୍ରରେ ଆହୁତି ଦେବ। ପରିଶେଷରେ ସ୍ୱିଷ୍ଟକୃତ୍ ହବନ କରିବ। ସ୍ରୁବରେ ଘୃତାହୁତି ଦେବାପରେ ଯାହା ବଳକା ରହିବ ତାକୁ– 'ଏହା ଅମୁକ ଦେବତାଙ୍କର ଭାଗ, ମୋର ନୁହେଁ' କହି ଜଳ ପାତ୍ରରେ ଢାଳିଦେବ।

''ଏହିଭଳି ହବନକରି ପୂର୍ଣ୍ଣାହୁତି ଦେବାକୁ ହୋଇଥାଏ। ପୂଜା ଆଉ ନମସ୍କାର ପରେ ନନ୍ଦ ସୁନନ୍ଦାଦି ଭଗବତ୍ ପାର୍ଷଦଙ୍କୁ ବଳି ଦାନ କରିବ। ଏହାପରେ ଭଗବାନ୍‌ଙ୍କୁ ସ୍ମରଣ କରି କରି ମୂଳ ମନ୍ତ୍ରକୁ କିଛି ସମୟ ଜପ କରିବା ଉଚିତ। ଭଗବାନ୍‌ଙ୍କ ପାର୍ଷଦଙ୍କ ଭିତରେ ଯେଉଁ ବିଶ୍ୱକସେନ ଅଛନ୍ତି ସେ ଭଗବାନଙ୍କର ପ୍ରସାଦ ପାଆନ୍ତି। ଏଣୁ ଭଗବାନଙ୍କ ଭୋଗକୁ ଆଣି, ଆଚମନ କରାଇ- ଭଗବତ୍ ପ୍ରସାଦକୁ ବିଶ୍ୱକ୍‌ସେନଙ୍କୁ ନିବେଦନ କରିବା ଉଚିତ। ମୁଖ ଶୁଦ୍ଧି ନିମନ୍ତେ ତାମ୍ବୁଳ ଆଦି ଦେଇ ପୁଣି ଆଳତୀ କରିବ ଓ ପୁଷ୍ପାଞ୍ଜଳି ଦେବ। ଏହାପରେ ମୋର ନାମ ଆଉ ଗୁଣ ଗାନ କରିବ। ମୋର କଥା ଶୁଣିବ, ମୋର ଚରିତ୍ରକୁ ଅଭିନୟ କରିବ। ଏହିଭଳି ସବୁ ପୂଜାପାଠ ନୃତ୍ୟ ଗୀତ ଆଦି କରିବା ପରେ, କିଛି ସମୟ ବିଶ୍ରାମ ନେବ।

ସବୁ ପ୍ରକାର ଆଳତୀ, ପ୍ରଦକ୍ଷିଣ, ପୁଷ୍ପାଞ୍ଜଳି, କ୍ଷମାପାର୍ଥନା ଏକାଭଳି। ବେଦ ମନ୍ତ୍ରରେ ହେଉ, ପୁରାଣ ମନ୍ତ୍ରରେ ହେଉ ଅଥବା ପ୍ରାକୃତ ମନ୍ତ୍ରରେ ହେଉ ମୋର ସ୍ତୁତିଗାନ କରିବ। ମୋ ପାଖରେ ବିନୟ ପୂର୍ଣ୍ଣ କଣ୍ଠରେ ସ୍ତୁତି ଗାନକରି ଗଦ୍‌ଗଦ୍ କଣ୍ଠରେ କହିବ– 'ହେ ପ୍ରଭୁ! ଆପଣ ଏହି ପାମର ପ୍ରାଣପ୍ରତି ସଦୟ ହୁଅନ୍ତୁ। ହେ ପରମାତ୍ମନ୍! ମୋର ସମସ୍ତ ଅପରାଧ କ୍ଷମା କରନ୍ତୁ।' ଏହିଭଳି ବିନତି କରି ତଳେ ପଡ଼ି ସାଷ୍ଟାଙ୍ଗ ପ୍ରଣାମ କରିବ। ନିଜର ମୁଣ୍ଡକୁ ମୋ ପାଦରେ ଲଗାଇ, ଦକ୍ଷିଣ ହସ୍ତକୁ ମୋର ଦକ୍ଷିଣ ପାଦରେ ଓ ବାମ ହସ୍ତକୁ ବାମ ପାଦରେ ଧରି ବିନୟର ସହିତ କହିବ– 'ହେ ପ୍ରଭୁ! ମୃତ୍ୟୁରୂପୀ ଗ୍ରାହଯୁକ୍ତ ଏହି ସଂସାର ସାଗରରେ ଭୟଭୀତ ହେବାରେ ଲାଗିଛି। ଶରଣାଗତବତ୍ସଳ, ମୁଁ ଶରଣାଗତ। ଆପଣ ମୋତେ କ୍ଷମା କରନ୍ତୁ।''

ଏହି ଭଳି ସାଷ୍ଟାଙ୍ଗ ପ୍ରଣାମ କରି ମୋର ନିଳ୍ୟ ନୈବେଦ୍ୟ, ଚରଣାମୃତ ନେବ। ମୋତେ ଲାଗି ହୋଇଥିବା ମାଳାକୁ ଶ୍ରଦ୍ଧାଭକ୍ତି ପୂର୍ବକ ମୋର ପ୍ରସାଦ ବୋଲି ମନେକରି, ମସ୍ତକରେ ସ୍ପର୍ଶକରି ଧାରଣ କରିନେବ। ପ୍ରସାଦ ଚରଣାମୃତ ନେବ। ଯଦି ପ୍ରତିମା ବିସର୍ଜନୀୟ ହୋଇଥାଏ ତେବେ ଉତ୍ତର ପୂଜନ କରି ତାଙ୍କୁ କହିଦେବ– 'ହେ ସୁରଶ୍ରେଷ୍ଠ! ଆପଣ ଏବେ ଆପଣଙ୍କ ସ୍ଥାନକୁ ଯାଆନ୍ତୁ। ମୋର ଇଷ୍ଟ ବସ୍ତୁ ତଥା ମନୋକାମନା ପୂରଣ କରନ୍ତୁ ଏବଂ ମୁଁ ପୁଣି ଆପଣଙ୍କୁ ଆବାହନ କରିବାବେଳେ ଆପଣ ପୁଣି ଆସନ୍ତୁ।'' ପ୍ରତିମା ବିସର୍ଜନୀୟ ନ ହୋଇ ଥିଲେ ତାଙ୍କୁ ପ୍ରଣାମ କରି ଶୟନ କରାଇ ଦେବ।

ଏହିଭଳି ଅଗ୍ନିଙ୍କୁ ଆହୁତି ଦ୍ୱାରା, ସୂର୍ଯ୍ୟନାରାୟଣଙ୍କୁ ଅର୍ଘ୍ୟ ଆଦିରେ, ଜଳରେ ତର୍ପଣ ଆଦିରେ ତଥା ପ୍ରତିମାଦିରେ ସବିଧି ପୂଜନାଦି ମାଧ୍ୟମରେ ମୋତେ ପୂଜା କରିବାକୁ ହୁଏ। ଉପାସକର ଯେଉଁ ସମୟରେ ଯେଉଁଠାରେ ଯେପରି ଶ୍ରଦ୍ଧା ହେବ, ସେହି ସମୟରେ, ସେହି ସ୍ଥାନରେ ସେପରି ପୂଜା କରିବ। କାରଣ ମୁଁ ତ ସଦାସର୍ବଦା ସବୁଠାରେ ସମାନ ଭାବରେ ବିରାଜମାନ କରୁଥାଏ। ଏହିଭଳି ନିଜର ଶକ୍ତି ଅନୁସାରେ ବୈଦିକ ତାନ୍ତ୍ରିକ ଅଥବା ମିଶ୍ରିତ ବିଧିରେ ମୋର ପୂଜା କରୁଥିବା ସାଧକ ଲୌକିକ ତଥା ପାରଲୌକିକ ଉଭୟ ପ୍ରକାରର ସିଦ୍ଧି ପାଇପାରେ। ମୁଁ ଅତି ସଂକ୍ଷେପରେ ପ୍ରତିମାଦି ପୂଜାର ବିଧି କହିଲି। ଏବେ ତୁମେ ଆଉ କ'ଣ ଶୁଣିବାକୁ ଚାହୁଁଛ ?''

ଉଦ୍ଧବ କହିଲେ, ''ଭଗବାନ୍! ପ୍ରତିମାକୁ କ'ଣ ଘରେ ସ୍ଥାପିତ କରି ପୂଜା କରିବା ?''

ଭଗବନ୍ କହିଲେ, ''ଏଇ କଥା ନିଜର ସାମର୍ଥ୍ୟ ଉପରେ ନିର୍ଭର କରେ। ମନ୍ଦିର ନିର୍ମାଣ କରି ମୋତେ ସ୍ଥାପିତ କରିବା ପାଇଁ ସାମର୍ଥ୍ୟ ନ ଥିଲେ ଘରେ ରଖି ପୂଜା କରାଯାଇ ପାରେ। ସାମର୍ଥ୍ୟବାନ୍ ଯେତେ ସମ୍ଭବ ବୈଭବ ଓ ଆଡ଼ମ୍ବରରେ ମୋ ପୂଜା କରିପାରେ। ସଂସାରର ସମସ୍ତ ସାମଗ୍ରୀ ଯେତେବେଳେ ମୋ ପୂଜା ନିମନ୍ତେ ଉପଯୋଗ କରାଯାଏ, ସେ ସମସ୍ତ ସାର୍ଥକ ହୋଇଯାଏ। ଧନ ଥାଇ ଯିଏ ବିତ୍ତ-ଶଠ୍ୟ କରେ, ମୋ ସେବା ପୂଜାରେ ଧନକୁ ଉପଯୋଗ କରେନାହିଁ ତାକୁ କୃପଣ କୁହାଯାଏ। ତା'ର ଧନ ବ୍ୟର୍ଥ ହୋଇଥାଏ। ସେ ସେହି ଧନକୁ ଚୋରି କରି ଆଣିଥିବା ବସ୍ତୁ ଭଳି, ବିଧବାର ଗର୍ଭ ଭଳି ସବୁବେଳେ ଲୁଚାଇ ରଖିଥାଏ। ଆଉ ଏପରି ପାପ ଯୋଗୁ ସେ ନର୍କକୁ ହିଁ ଯାଏ। କହିଲ, ଆଜିଯାଏ କେହି ଧନକୁ ସାଙ୍ଗରେ ନେଇ ପାରିଛି କି? ପରମାର୍ଥ କାର୍ଯ୍ୟରେ ଯେତିକି ବ୍ୟୟ ହୋଇଥାଏ ସେତିକି ମାତ୍ର ସାଙ୍ଗରେ ଯାଇଥାଏ। ଏଠାରେ ଯେତେ ଅଧିକ ସଂଚିତ ହୋଇ ଜମା ହେଉଥିବ

ସେତେ ଅଧିକ ଅନର୍ଥ ହିଁ କରିଥାଏ । ଏଣୁ ନିଜକୁ ଜଣେ ଧନ ସଂରକ୍ଷକ ବୋଲି ମନେକରି ତାକୁ ଭଗବାନ୍‌ଙ୍କ ପୂଜା ସମ୍ବନ୍ଧୀ କାର୍ଯ୍ୟରେ ଅତି ଉଲ୍ଲାସର ସହିତ ଓ ପ୍ରମୋଦର ସହିତ କରୁଥିବା ଉଚିତ ।''

ଉଦ୍ଧବ ପଚାରିଲେ, ''ଧନ ହେଲେ, ପ୍ରଭୁ ! ଲୋକମାନେ କି କି କାର୍ଯ୍ୟ କରିବା ଉଚିତ ?''

ଭଗବାନ୍ କହିଲେ, ''ଭାଗ୍ୟବଶତଃ ଯଦି ଧନ ମିଳିଯାଏ ତେବେ ତାକୁ ନିଜର ବୋଲି ମନେକରିବା ଠିକ୍ ନୁହେଁ । ନିଜକୁ କେବଳ ହାତରେ ଧରିଥିବା, ଆଣି ପାଖରେ ରଖିଥିବା ଓ ହିସାବ କିତାବ ରଖୁଥିବା ସେବକ ବୋଲି ମନେ କରିବା ଉଚିତ । ସେହି ଧନରେ ସୁନ୍ଦର ସୁନ୍ଦର ପଥର, ସଂଗ୍ରହ କରି ଅତ୍ୟନ୍ତ ଦିବ୍ୟ ଦେବାଳୟ ତିଆରି କରିବା ଉଚିତ । ସେହି ଦେବାଳୟକୁ ଅତି ମନୋରମ କାରୁକାର୍ଯ୍ୟ ଖଚିତ କରିବା ଉଚିତ । ପାଖରେ ପୁଷ୍ପୋଦ୍ୟାନ, ବିଦ୍ୟାର୍ଥୀଙ୍କ ନିମନ୍ତେ ପାଠଶାଳା, ପୁଷ୍କରିଣୀ ଆଦି କରିବା ଉଚିତ । ମୋର ନିତ୍ୟ ଦୁଇ ପ୍ରକାରର ପୂଜା ନିମନ୍ତେ ସୁବନ୍ଦୋବସ୍ତ କରିବା ଉଚିତ । ପ୍ରତିଦିନ ଦିବ୍ୟ ଭୋଗ କରାଇବା ଉଚିତ । ସାଧୁ, ମହାତ୍ମା, ଅତିଥି ଅଭ୍ୟାଗତ, ବିଦ୍ୟାର୍ଥୀ ତଥା କର୍ମଚାରୀମାନେ ଭଗବାନଙ୍କ ପ୍ରସାଦ ପାଇବାର ବ୍ୟବସ୍ଥା କରିବା ଉଚିତ । ନିତ୍ୟ ଆଳତୀ ଅତି ଧୂମଧାମ୍‌ରେ ହେଉଥିବା ଉଚିତ । ଫଳ ପୁଷ୍ପ ବୃକ୍ଷଲତା ରୋପଣ କରିବା ଉଚିତ । ଉଚ୍ଚସ୍ୱରରେ ନିତ୍ୟ ବେଦାଧ୍ୟୟନ ଓ କୀର୍ତ୍ତନ ମଣ୍ଡଳୀ ଦ୍ୱାରା ନାମ କୀର୍ତ୍ତନ ହେଉଥିବା ଉଚିତ । ନିତ୍ୟ ପୂଜା ସବିଧି ହୋଇ ଚନ୍ଦନ, ତୁଳସୀ, ଚରଣାମୃତ ଆଦି ବଣ୍ଟନର ବ୍ୟବସ୍ଥା କରିବା ଉଚିତ । ନିତ୍ୟ ପୂଜା ବ୍ୟତୀତ ମଝିରେ ମଝିରେ ନୈମିତ୍ତିକ ପୂଜା ବି କରୁଥିବା ଉଚିତ ।''

ଉଦ୍ଧବ ପଚାରିଲେ, ''ପ୍ରଭୁ ! ନୈମିତ୍ତିକ ପୂଜା କାହାକୁ କୁହନ୍ତି ?'

ଭଗବାନ କହିଲେ, ''ବିଶେଷ ପର୍ବ ତଥା ଉତ୍ସବ ଦିବସର ପୂଜାକୁ ନୈମିତ୍ତିକ ପୂଜା କୁହାଯାଏ । ରାମନବମୀ, ଜନ୍ମାଷ୍ଟମୀ, ନୃସିଂହ ଚତୁର୍ଦ୍ଦଶୀ, ବାମନ ଦ୍ୱାଦଶୀ, ରଥଯାତ୍ରା, ଦୋଳୋତ୍ସବ, ଦୀପାବଳୀ, ଦଶହରା ଆଦି ବିଶେଷ ପର୍ବ ଉତ୍ସବ ଦିବସ । ଏହି ଦିନମାନଙ୍କରେ ମୋର ପୂଜା ବିଶେଷ ଧୂମ୍‌ଧାମ୍‌ରେ, ନୃତ୍ୟ, ବାଦ୍ୟ, ଗୀତ ଆଦିର ସହିତ ବିମାନାଦି ପଟୁଆର ସହିତ କରିବା ଉଚିତ । ଏହି ନୈମିତ୍ତିକ ଉତ୍ସବ ଅତି ଉଲ୍ଲାସର ସହିତ କରୁଥିବା ଉଚିତ । ଏପରି ଉତ୍ସବ ନିୟମକ୍ରମାନୁସାରେ ସବୁବେଳେ ଚାଲୁ ରଖିବା ପାଇଁ ବ୍ୟବସ୍ଥା କରୁଥିବା ଉଚିତ ।''

ଉଦ୍ଧବ କହିଲେ, ''ପ୍ରଭୁ ! ସବୁବେଳେ ଉତ୍ସବ ଲାଗିରହିବା ପାଇଁ କ'ଣ କରିବାକୁ ହୋଇଥାଏ ?''

ଭଗବାନ୍ କହିଲେ, ''ମୋ ପୂଜା ନିମନ୍ତେ ପୃଥକ୍ ନିଧି ରଖିବା ଦରକାର । ସରକାରଙ୍କ ପାଖରେ ଏଥିପାଇଁ ପଡ଼ି ବ୍ୟବସ୍ଥା କରିଦେବା ଦରକାର । କେତେକ ଗାଁ ଓ ନଗରକୁ ଠାକୁରଙ୍କ ନାମରେ କରିଦେବା, କେତେକ ଫଳପୁଷ୍ପ ଉପବନ, ବଗିଚା, ତୋଟାକୁ ଠାକୁରଙ୍କ ନାମରେ କରିଦେବା, ଠାକୁରଙ୍କ ନାମରେ କେତେକ ଭଡ଼ା ରହିବା ଓ ଦୋକାନ ଘର କରିଦେବା ଦ୍ୱାରା ନିୟମିତ ଆୟର ବ୍ୟବସ୍ଥା ହୋଇଯାଏ । ଏପରି ବ୍ୟବସ୍ଥା କରିବା ଉଚିତ ଯାହା ଫଳରେ ଉତ୍ସବରେ ଖର୍ଚ୍ଚ ହେଉଥିବା ଅର୍ଥ ମାସିକ, ବାର୍ଷିକ ସୂତ୍ରରେ ସହଜରେ ଆୟ ହୋଇ ପାରୁଥିବ । ଯେଉଁମାନେ ଏହି ଲୋକରେ ମୋ ନାମରେ ଏପରି ଐଶ୍ୱର୍ଯ୍ୟ ବଢ଼ାଇଥାନ୍ତି ସେମାନେ ପରିଶେଷରେ ମୋ ଭଳି ଐଶ୍ୱର୍ଯ୍ୟ ହିଁ ଲାଭ କରନ୍ତି ।''

ଉଦ୍ଧବ ପଚାରିଲେ, ''ପ୍ରଭୁ ! କେଉଁ ପୂଜା ଦ୍ୱାରା କି କି ପ୍ରକାର ଐଶ୍ୱର୍ଯ୍ୟ ମିଳେ ?''

ଭଗବାନ୍ କହିଲେ, ''ଗୋଟିଏ ପୁରୁଣା ମନ୍ଦିର ଅଛି, ମନ୍ଦିରର ପ୍ରତିମା ଭାଙ୍ଗି ଯାଇଛି ; ଅଥବା କେହି ମନ୍ଦିରଟିଏ କରିଦେଇ ଯାଇଛି, ହେଲେ ପ୍ରତିମା ସ୍ଥାପିତ କରିପାରି ନାହିଁ– ଏପରି ମନ୍ଦିରରେ ପ୍ରତିମା ଯଦି କେହି ସ୍ଥାପନ କରେ ତେବେ ଏପରି କର୍ମର ଫଳସ୍ୱରୂପ ସେ ସ୍ୱର୍ଗକୁ ଯାଏ । ସ୍ୱର୍ଗସୁଖ ଭୋଗ ପରେ ଏଠାକୁ ଆସି ସାର୍ବଭୌମ ରାଜ୍ୟ ପାଏ ।

''ମନ୍ଦିରଟିଏ ଭାଙ୍ଗିଯାଇଛି, ଜୀର୍ଣ୍ଣ ହୋଇଯାଇଛି– କେହି ଜୀର୍ଣ୍ଣୋଦ୍ଧର କଲେ ସେହି ଲୋକ ତିନିଲୋକର ଆଧିପତ୍ୟ ପାଇଯାଏ, ସେ ସ୍ୱର୍ଗକୁ ଯାଇ ଦେବତାଙ୍କ ରାଜା ଇନ୍ଦ୍ର ହୋଇଯାଏ ।

''ମନ୍ଦିର ଅଛି। ସୁନ୍ଦର ମନ୍ଦିର। ସୁନ୍ଦର ପ୍ରତିମା ବି ଅଛି। ମାତ୍ର ସେବା ପୂଜା ହେଉନାହିଁ। ଏପରି ମନ୍ଦିର ଓ ପ୍ରତିମାଙ୍କର ଯିଏ ନିତ୍ୟ ନୈମିତ୍ତିକ ସେବା ପୂଜା ଓ ଉତ୍ସବର ସୁବନ୍ଦୋବସ୍ତ କରିଦିଏ, ସେ ବ୍ରହ୍ମଲୋକ ପ୍ରାପ୍ତ ହୁଏ ।

''ଯଦି କେହି ନିଜେ ମନ୍ଦିର କରେ, ନିଜେ ଅତି ଶ୍ରଦ୍ଧାଭକ୍ତିର ସହିତ ପ୍ରତିମା ପ୍ରତିଷ୍ଠା କରେ, ନିଜେ ସମୁଚିତ ସେବା ପୂଜାର ସୁବ୍ୟବସ୍ଥା କରିଦିଏ– ଏପରି ତିନୋଟିଯାକ ପରମ ପୁଣ୍ୟ କାର୍ଯ୍ୟ କରିଥିବା ଲୋକ ବିଷୟରେ ଆଉ ଅଧିକ କ'ଣ କହିବା ! ସେ ତ ମୋ ଭଳି ଐଶ୍ୱର୍ଯ୍ୟ ସମ୍ପନ୍ନ ହୋଇଯାଏ । ଯିଏ କୌଣସି ପ୍ରକାର କାମନା ନ ରଖି ନିଷ୍କାମ ଭାବରେ ଭକ୍ତିଯୋଗରେ ମୋର ସେବାପୂଜା କରେ, ସେ ନିସନ୍ଦେହରେ ମୋତେ ହିଁ ପ୍ରାପ୍ତ ହୁଏ । ଭକ୍ତି ଇଚ୍ଛାରେ ଯିଏ ବିଧିପୂର୍ବକ ମୋତେ ପୂଜାକରେ ତାକୁ ମୋର ଭକ୍ତିଯୋଗ ପ୍ରାପ୍ତ ହୁଏ ।''

ଉଦ୍ଧବ ପଚାରିଲେ, ''ହେ ଭଗବନ୍ ! ଏପରି ଲୋକ ଥିବେ ଯିଏ ଆପଣଙ୍କ ନିମିତ୍ତ ମନ୍ଦିର ନାମରେ ତା'ର ସବୁ ଖଟେଇ ଦେଇଥିବ, ତା'ର ବାଡ଼ି ବଗିଚା, ଜମି, ଗାଁ ତଥା ଦୋକାନ ଆଦି ଲେଖିଦେଇଥିବ। କିନ୍ତୁ ପରବର୍ତ୍ତୀ କାଳରେ ତାର ପୁଅ ପୁତୁରାମାନେ ସେ ସମସ୍ତକୁ ମନ୍ଦିରରୁ ଛଡ଼ାଇ ନେଇଯିବେ, ମନ୍ଦିର କାମରେ ସେଥିରୁ ମିଳୁଥିବା ଅର୍ଥ ଆଦୌ ବ୍ୟୟ ନ କରି ନିଜ କାମରେ ସବୁ ବ୍ୟୟ କରୁଥିବେ- ତେବେ ମନ୍ଦିରକୁ ଦେଇଦେଇଥିବା ଲୋକକୁ କିଛି ଦୋଷ ଲାଗିବ ନା ନାହିଁ।''

ଭଗବାନ୍ କହିଲେ, ''ଯିଏ ଦେଇ ଦେଇଥାଏ ତାକୁ କାହିଁକି ଦୋଷ ଲାଗିବ ! ସେ ତ ଶୁଦ୍ଧ ମନରେ ଦାନ କରିଦେଇଛି। କିନ୍ତୁ ସେହି ଦେବୋତ୍ତର ସମ୍ପତ୍ତିକୁ ଯେଉଁମାନେ ହରଣ କରନ୍ତି ସେମାନଙ୍କୁ ଦୋଷ ଲାଗେ ।''

ଉଦ୍ଧବ ପଚାରିଲେ, ''ସେମାନଙ୍କୁ କି ପ୍ରକାର ଦୋଷ ଲାଗେ ?''

ଭଗବାନ୍ କହିଲେ, ''ଉଦ୍ଧବ ! ସେମାନଙ୍କର ଦୋଷ କଥା ପଚାରନି। ସେମାନେ ତ ଲକ୍ଷେ ବର୍ଷ ପର୍ଯ୍ୟନ୍ତ ବିଷ୍ଠା କୀଟ ହୁଅନ୍ତି। ଦେବତା ଓ ବ୍ରାହ୍ମଣଙ୍କୁ ପ୍ରଦାନ କରା ହୋଇଥିବା ବୃତ୍ତିକୁ ଯିଏ ହରଣ କରେ–ସେହି ବୃତ୍ତି ନିଜେ ଦେଇଥାଇପାରେ, ନିଜର ପୂର୍ବଜ ଦେଇଥାଇ ପାରନ୍ତି, ଅଥବା ଅନ୍ୟ କେହି ଦେଇଥାଇ ପାରନ୍ତି– ସେପରି ବୃତ୍ତି ଯେ ହରଣ କରେ ସେ ରୌରବ ନର୍କରେ ପଡ଼େ।

ଏଣୁ ବ୍ରାହ୍ମଣଙ୍କୁ ଦାନ କରାହୋଇଥିବା କୌଣସି ବସ୍ତୁ ଅଥବା ଦେବୋତ୍ତର ସମ୍ପତ୍ତିକୁ ଭୁଲ୍‌ରେ ବି କଦାପି ନେବନାହିଁ। ଏପରି କର୍ମ ଯେ କରେ, ଏବଂ ଯିଏ ସହାୟତା ବି କରେ, ଅନୁମୋଦନ କରେ, ଏପରି କର୍ମ ପାଇଁ ପ୍ରବର୍ତ୍ତାଏ–ଏମାନେ ସମସ୍ତେ ସେହି ହରଣକାରୀର ଦୋଷରେ ସମାନ ଦୋଷୀ ହୋଇଥାନ୍ତି। ସମାନ ପାପର ଅଧିକାରୀ ହୋଇଥାନ୍ତି। ଅପରପକ୍ଷରେ ଯିଏ ଦାନ କରିବାଭଳି ପୁଣ୍ୟ କାର୍ଯ୍ୟ କରନ୍ତି, ଏପରି କାର୍ଯ୍ୟରେ ଯେଉଁମାନେ ସର୍ବତୋଭାବେ ସହାୟତା କରନ୍ତି, ପ୍ରେରଣା ଦିଅନ୍ତି, ଅନୁମୋଦନ କରନ୍ତି, ଉତ୍ସାହିତ କରନ୍ତି– ସମସ୍ତେ ଏକା ଭଳି ପୁଣ୍ୟର ଅଧିକାରୀ ହୋଇଥାନ୍ତି। ସମାନ ପୁଣ୍ୟ ଫଳ ପାଆନ୍ତି। ତେଣୁ ଏପରି କର୍ମପାଇଁ ସବୁବେଳେ ଅନୁମୋଦନ କରୁଥିବା ଉଚିତ।''

ଉଦ୍ଧବ କହିଲେ, ''ଭଗବନ୍! ପୂଜା ବିଧି ଆପଣଙ୍କଠାରୁ ଶୁଣିଲି। ଏବେ ମୋତେ ଆପଣ ସାରାଦିସାର ଉପଦେଶ ଦେବା ହୁଅନ୍ତୁ। ସଂସାରରେ ପରମାର୍ଥ ନାମକ ବସ୍ତୁ କ'ଣ? ଜଣେ ପରମାର୍ଥ ପଥର ପଥିକ ବୋଲି ଆମେ ଜାଣିବା କିପରି? ଆଉ ପରମାର୍ଥ ପ୍ରାପ୍ତ ହୋଇଯାଇଛି ବୋଲି ଆମେ ଜାଣିବା କିପରି?''

ଉଦ୍ଧବଙ୍କଠାରୁ ଏପରି କଥା ଶୁଣି ଭଗବାନ୍ ଖୁବ୍ ଖୁସୀ ହୋଇଗଲେ। ଆଉ କହିଲେ ଉଦ୍ଧବ! ତୁମର ପ୍ରଶ୍ନ ଅତି ଉତ୍ତମ। ମୁଁ ତୁମକୁ ସାରାତିସାର ପରମାର୍ଥ ତତ୍ତ୍ୱର ଉପଦେଶ ଦେଉଛି ଶୁଣ।''

ମହାପ୍ରାଜ୍ଞ ସୂତ କହିଲେ, '' ହେ ମୁନିଗଣ! ଭଗବାନ୍ ପରମାର୍ଥ ତତ୍ତ୍ୱର ନିରୂପଣ ଯେପରି କଲେ ତାହା ମୁଁ ଆପଣମାନଙ୍କୁ କହିବି। ''

**ଛପ୍ପୟ**

ଧନ କା ସତ ଉପୟୋଗ ଜହା ମମ ପୂଜା ହୋବୈ।
ଧରମ ହୀନ ଧନ ଜୋରି ବ୍ୟରଥ ନର ଆୟୁଷ ଖୋବୈ।
ମନ୍ଦିର ସୁନ୍ଦର ବନାଇ ଭୋଗ ନିତ ନବ ଲଗ ବାବୈ।
ବାଁଟେ ପ୍ରଭୁ ପରସାଦ ସ୍ୱୟଂ ବନ୍ଧୁନି ସଂଗ ପାବୈ॥
ଖେତ ନଗର ଆଜୀବିକା, ପୂଜା ହିତ ଅପରନ କରୈ।
କରି ଧନ ବ୍ୟୟ ସେବା ନିମିତ, ଭବସାଗର ନର ଧ୍ରୁବ ତରୈ॥



[ପରବର୍ତ୍ତୀ କଥା ପ୍ରସଙ୍ଗ ୫୮ ଖଣ୍ଡରେ ପ୍ରକାଶିତ]